# ଜୀବନର ସନ୍ଧ୍ୟା

ରାଜକିଶୋର ପଟ୍ଟନାୟକ

ପ୍ରଥମ ମୁଦ୍ରଣ—୧୯୮୪

ମୂଲ୍ୟ କୋଡ଼ିଏ ଟଙ୍କା

**ଜୀବନର ସନ୍ଧ୍ୟା**
ଆତ୍ମ-ଜୀବନୀର ଉପନ୍ୟାସ

**Jibanar Sandhya**
Life's dusk
Oriya fiction with
biographical matter

ଡିସେମ୍ବର ଚଉରାଅଶିରେ
ଛପା ଏଗାର ଶହ

Published—**December-84**

ପ୍ରକାଶକ—
**ରାଜକିଶୋର ପଟ୍ଟନାୟକ**
ତେଲେଙ୍ଗାବଜାର, କଟକ-୯

Published by :
**Rajkishor Patnaik**
Telenga Bazar,
Cuttack-753009

ମୁଦ୍ରଣ :
**ଗୀତାଞ୍ଜଳି ପ୍ରେସ୍,**
କଟକ-୨

Printed at :
**Gitanjali Press**
Cuttack-2

ମୂଲ୍ୟ :
**କୋଡ଼ିଏ ଟଙ୍କା**

Price :
**Rupees Twenty only**

କଟକର ଡିଷ୍ଟ୍ରିକ୍ଟ ବାର ଆସୋସିଏସନର ଗୋଟିଏ ଶ୍ରେଷ୍ଠ କୋଠରୀରେ ମାତ୍ର ଛଅ ଖଣ୍ଡ ଚଉକି । କିନ୍ତୁ ସେହି ଚଉକିରେ ବସୁଥିବା ପ୍ରତ୍ୟେକ ଆଡ଼ଭୋକେଟ ଜଣେ ଜଣେ ସାହିତ୍ୟିକ । ସେମାନେ ବୟସ ଅନୁସାରେ ହେଲେ—

ଶ୍ରୀ ଭୂପେନ୍ଦ୍ର କୁମାର ବସୁ, ଗୋପାଳଜୀଉ ଲେନ୍ ।
ଶ୍ରୀ ଗୋପାଳ ପ୍ରସାଦ ଘୋଷ, ସାହାବଜାଦା ବଜାର ।
ଶ୍ରୀ ଧ୍ରୁବ ଚରଣ ସାହୁ, ପ୍ରଫେସର ପଡ଼ା ।
କୁମାର ଶ୍ରୀ ପ୍ରତାପ ଚନ୍ଦ୍ର ଦେବ, ଚାଲଚେର କୋଠି ।
ଶ୍ରୀ ଶୈଳେନ ଭଟ୍ଟାଚାର୍ଯ୍ୟ, ବୁଢ଼ୀ ଠାକୁରାଣୀ ।

ଏଇ ପାଞ୍ଚଜଣଙ୍କୁ ମୋର ଜୀବନର ସନ୍ଧ୍ୟାଟି ଯଥାଯୋଗ୍ୟ ଭକ୍ତି ଓ ଶ୍ରଦ୍ଧା ସହିତ ନିବେଦନ କଲି ।

ରାଜକିଶୋର ପଟ୍ଟନାୟକ

ତା ୧ । ୧୨ । ୧୯୮୪

ଜୀବନର ସନ୍ଧ୍ୟା ବର୍ଷର ଷଷ୍ଠୀ ଉପରେ ପ୍ରତ୍ୟେକ ବର୍ଷକୁ ଏକ ଟଙ୍କା କରି ମୋଟ ହଜାରେ ଟଙ୍କା ମୋର ବୋହୂ ଅମିତା ଦେବୀଙ୍କର ସ୍ମୃତିରେ ଦାନ ଦିଆଯିବ । ୧୬।୮।୮୫ ସୁଦ୍ଧା ଏହି ହିସାବ ଛିଣ୍ଡିବ ।

ଲେଖକ ଓ ପ୍ରକାଶକ

* * * * *

ପଢ଼ିବା ବ୍ୟକ୍ତିଙ୍କର ମତାମତ ପୃ ୨୦୭ ଦେଖନ୍ତୁ

ବଙ୍ଗଳା ସାହିତ୍ୟର ଗୋଟିଏ ଶ୍ରେଷ୍ଠ ଉପନ୍ୟାସ "ଶେଷ ପ୍ରଶ୍ନ" ବହିରେ ଲେଖା ଅଛି ମଣିଷ ବିଷୟରେ । ଲେଖିଛନ୍ତି ଶରତ ଚନ୍ଦ୍ର ଚଟର୍ଜୀ ।

କେହି କାହାର ବନ୍ଧୁ ନୁହେଁ । କେହି କାହାର ଶତ୍ରୁ ନୁହେଁ । ଘଟଣାର ସ୍ରୋତରେ କେହି ପାଖକୁ ଚାଲିଆସେ । କେହି ମଧ୍ୟ ସେମିତି ଦୂରକୁ ଚାଲିଯାଏ ।

ଆମେ ସେଇ କଥା କହିଥାଉ—ଯେତେ ଭାଇ ସେତେ ଘର । ଯେତେ କନିଆଁ ସେତେ ବର ।

ଯେତେବେଳେ ମଣିଷ ଗାଈଗୋଠ ଅବା ଧାନ ଜମିକୁ ବର୍ଷା ଖରା ଶୀତକୁ ଜଗି ଚାଷ କରି ଚଳୁଥିଲା ସେତେବେଳେ ମଧ୍ୟ ଯେତେ ଭାଇ ସେତେ ଘର ହେଉଥିଲା । ଗୋଟିଏ ଭାଇ ତାହାର ହିଂସା ନେଇ ଅଲଗା ହାଣ୍ଡି କରୁଥିଲା ।

ଏବେ ପଚିଶ ବର୍ଷ ହେଲାଣି ଯେଉଁ ଓଡ଼ିଆ ଇଂରେଜ ପାଠ ପଢ଼ି ଚାକିରି ପାଇଛି ସେତେବେଳେ ତାହାର ଅର୍ଜନକୁ ନିଜର ଅର୍ଜନ କହି ମୌରୁଷୀ ଭିଟାମାଟିକୁ ଦୁଇଟି ଗୋଇଠା ଓ ପାଞ୍ଚପଦ ଗାଳି ଦେଇ ଚାଲି ଯାଇଛି ସହରକୁ—ସେଠି ତାହାର ଚାକିରି ।

ଘରଣୀ ମଧ୍ୟ ଚାଲି ଯାଇଛି ସାଙ୍ଗରେ । ପିଲାଏ ସେଇଠି ଜନ୍ମ ହେଇ ମଣିଷ ହେଇଛନ୍ତି । ପୁରୁଣା ଘରକୁ ଖାଲି ସ୍ମୃତି ହିସାବରେ ରଖିଛନ୍ତି ପୁରୁଷେ ଅବା ଦେଢ଼ ପୁରୁଷ ।

ଇଏ ବି ସେମିତି ଗୋଟିଏ ଘରର ଛୋଟିଆ କଥାଟିଏ । ବାପା କରିଥିଲା ପାଞ୍ଚ ବଖରା ଘର, ଦଶଗୁଣ୍ଠ ଜାଗା, ଆଉ ତାକୁ ସଜେଇଲା ପରି ଆଗ ଓ ପଛ ଅଗଣା ଓ ପିଣ୍ଡା ।

ପିଲମାନେ ମଣିଷ ହୋଇ ନଥିଲେ ବାପାର ମାଟି ଖଣ୍ଡକୁ ସୁନା ଭାବ ଟାଣ କର ଧରଥାନ୍ତେ । କିନ୍ତୁ ସେମାନେ ହେଲେ ଯେ ଯାହା ହାତରେ ଚଉଦ ପାଆ ।

ତେଣିକ ସେମାନେ ଅଲଗା ମନ ନେଇ ରହିଲେ । ପାଞ୍ଚଟିରୁ ଛଟୋଟି ବୋହୂ ଆଣିଲେ । ଯୋଡ଼ଏ ବୋହୂ ଆଣିଲେ ନାହିଁ ।

ଘର ଓ ଘରର ମତ ହୋଇଗଲ ଦୁଇ ଭାଗ—ଭଲ ଓ ଖରାପ । ଭଲ ଭାଗଟି ହେଲେ ସେଇମାନେ ଯେଉଁମାନଙ୍କର ଅର୍ଜନରେ ଭାଗ ବସିବାକୁ ସଂସାର ନାହିଁ । ସ୍ତ୍ରୀ ପିଲ ନାହାନ୍ତି । ତେଣୁ ସେମାନେ ହୋଇଗଲେ ସାଧୁ ସନ୍ଥ ।

ଆଉ ଯେଉଁ ଛଟୋଟି ଘରକୁ ବୋହୂ ଆଣିଲେ ସେମାନେ ହେଲେ ଖରାପ । ତାଙ୍କର ଅର୍ଜନ ଯେତିକ ବଡ଼େ ତହିଁରୁ ସଂସାର ଚଳାଇବା ଖର୍ଚ୍ଚ ଅଧିକ ହୁଏ । ବାଧ୍ୟରେ ସେମାନେ ହୋଇଗଲେ ଗରିବ —ଆକାଶର ଉଜାଳ ପଟର ପହିଲ ଅଧିକ ପଡ଼ । ତାଙ୍କର ଆଲୁଅ ଅଳ୍ପ ଓ ତାହାର ସମ୍ପ୍ରୁ ମଧ୍ୟ ଅଳ୍ପ ।

ସଂସାରର ମତରେ ଗରିବ ଲୋକ ମନରେ ମଧ୍ୟ ଗରିବ । ଦେବ କମ୍ ଓ ନେବ ବେଶି । ଭଗବାନଙ୍କର ନାମ ନଏ ଖାଲି ପାଇବାକୁ । ନଇବ ଭାବରେ ଅନାଇ ଥାଏ କିଛି ପାଇଯିବା ଆଶାରେ ।

ଫଳରେ ସେଇ ପାଞ୍ଚ ଭାଇ ଦୁଇ ଦଳ ହୋଇଗଲେ—ପାପୀ ଓ ପୁଣ୍ୟାତ୍ମା ।

କିନ୍ତୁ ଦଳ ହେଲା ବେଳକୁ ଦେଖାଗଲା ଯେ ଗୋଟିଏ ବାହାରିଲ ସାଧୁ । ଦୁଇଟା ବାହାରିଲେ ଅସାଧୁ । ଆଉ ଯୋଡ଼ଏ ରହିଗଲେ ମିଶା ମିଶି ଶ୍ରେଣୀରେ । ସାଧୁ ଯାହାକୁ ଯେତେଦିନ ଭଲ ସାର୍ଟିଫିକେଟ ଦବ ସିଏ ସେତେଦିନ ସାଧୁ ଶ୍ରେଣୀରେ ରହିବ ।

ସେଥିପାଇଁ ଦୁଇଟି ଭାଗ ନ ହୋଇ ତିନ ଭାଗ ହେଲା—ଦିନ, ରାତି ଓ ଗୋଧୂଳି ଅବା ରାତି, ଦିନ ଓ ପାହାନ୍ତା । କଳା, ଧଳା ଓ କହରା ।

ସାଧୁ ଓ ଅସାଧୁ ଏକାଠି ରହି ପାରିବେ ନାହିଁ । ତେଣୁ ଅଲଗା ହେବା ଦରକାର ପଡ଼ିଲା । ଅଲଗା ହୋଇଗଲେ । ଦରକାର ଅନୁସାରେ

ଭାଗେ ଭାଗେ ଧରି ନେଇ ଭାରି ଖୁସି ହେଲେ ଯେ ଏଥର ବଞ୍ଚିବାର ସ୍ୱାଧୀନତା ମିଳିଗଲା ।

ଏକାଠି ରହିବା ହେଉଛି ପରାଧୀନତା—କାରଣ ସମସ୍ତେ ସମସ୍ତଙ୍କର ମତାମତକୁ ଚାହିଁବେ । ସ୍ୱାଧୀନ ଅର୍ଥ ଯାହା ଚାହିଁବି ଓ ଯେମିତି ଚାହିଁବି ସେମିତି ହେବ ଓ ସେପରି କରିବି । ମୁଁ ହେବି ଜଣେ ଅଜଲ୍ କପମର ଲୋକ ।

ଏଇ ସଂସାରଟାରେ ଅଧେ ପୁରୁଷ ଓ ଅଧେ ନାରୀ । ତେଣୁ ନାରୀମାନଙ୍କ ମଧ୍ୟରେ ଭଲ ଓ ମନ୍ଦ ଦୁଇଟି ଭାଗ ରହିବା ଦରକାର । ଭାଗ ମଧ୍ୟ ହେଲା ସେମିତି ।

ପାଞ୍ଚ ଭାଇଙ୍କର ଚାରି ଭଉଣୀ । ବଡ ଓ ସାନ ଭଉଣୀଙ୍କ ଭିତରେ କୋଡ଼ିଏ ବର୍ଷ ବୟସର ପ୍ରଭେଦ । ବଡ଼ ଭଉଣୀ ବଡ଼ ହେଲା ବେଳକୁ ସାନକୁ ତିନ ବର୍ଷ । ସେଥିପାଇଁ ଭଲ ଓ ଖରାପ ଭାଗ ପଡ଼ିଲା ବେଳକୁ ବଡ଼ଟି ହେଲା ପାପୀ ଓ ଶ୍ରେଷ୍ଠ ତିନୋଟି ହେଲେ ସାଧ୍ୱୀ ।

ସମସ୍ତ କ୍ରମେ ଯୋଡ଼ିଏ ବଡ଼ ହେଇ ଗଲେ ଓ ଜଣେ ବଡ଼ହେଲେ ନାହିଁ । ଯେଉଁ ଜଣକ ଅଭିଆଡ଼ୀ ରହିଲେ ସେ ହେଲେ ସାଧ୍ୱୀ । ତାଙ୍କର ଦୁଇଟି ପାଲଆ ରହିଲେ ସାନ ଭଉଣୀ ଦୁଇଟି ।

ଏମିତରେ ଘରର ନଅଟି ପିଲାଙ୍କ ମଧ୍ୟରେ ଭାଗ ହେଲା ଯେ ପୂରା ଭଲ ତିନୋଟି । ଦୁଇ ଭାଇ ଓ ଗୋଟିଏ ଭଉଣୀ ।

ଏକଦମ୍ ଖରାପ ହେଲେ ଦୁଇ ଭାଇ ଓ ଗୋଟିଏ ଭଉଣୀ ।

ମିଶାମିଶି ଶ୍ରେଣୀରେ ରହିଲେ ଗୋଟିଏ ଭାଇ ଓ ଦିଓଟି ଭଉଣୀ । ଏମାନେ ହେଲେ ସାଧ୍ୱୀ ସନ୍ଥଙ୍କର ବୋଲକରା ।

ସାଧ୍ୱୀମାନଙ୍କ ପାଖରେ ଚଳିଲେ ରାନ୍ଧିବା ଲୋକ, ଗୋଡ଼ ଘସିବା ଲୋକ ଓ ଭାଙ୍ଗ ବାଟିବା ଲୋକ ବି କେବଳ ସତ୍ସଙ୍ଗ କରି କରି କାଳକ୍ରମେ ସାଧ୍ୱୀ ହେଇଯାଏ ।

ସେହି କାରଣରୁ ପାଲଆ ତିନୋଟି ପୂରା ସନ୍ଥ ହେଇ ନ ପାରି ଟ୍ରେନଂରେ ଥିବା ପରି ପାର୍ଲିଆମେଣ୍ଟର ଶିକ୍ଷାନବୀଶ ପରି ପଡ଼ିଥାନ୍ତି—ନା, ହୁଅନ୍ତି ପୂରା ସାଧ୍ୱୀ ଅବା ପୂରା ଅସାଧ୍ୱୀ ।

ଇଏ ହେଲା ନଅ ଜଣଙ୍କର କଥା । ଆଉ ଗୋଟିଏ ପୁଅ ଜନ୍ମର ଚଉଦ ଦିନରେ ଚାଲି ଯାଇଥିଲା । ସେ ସାଧୁ କି ଅସାଧୁ ବା ଲୋକଙ୍କୁ ବୁଝା କିଛି ହୋଇ ପାରିଲା ନାହିଁ ।

ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀରୁ ଅଧିକ ଚଉଠ ସମୟ ମଧ୍ୟରେ ଏହି-ପରି ଗୋଟିଏ ଶ୍ରେଷ୍ଠ ପରିବାରରେ କାଳକ୍ରମେ ଧର୍ମ ଓ ଅର୍ଥ ତାହାର ପ୍ରଭାବ ବିସ୍ତାର କରିଛି ।

ଆଜିର ପେନସନପ୍ରାପ୍ତ ସରକାରୀ କର୍ମଚାରୀଙ୍କର ଶେଷ ଜୀବନରେ ଦେଖା ଦେଉଥିବା ଧର୍ମଭାବ ପରି ।

ଏ ସବୁ ମୁଁ ଭଲ କରି ଦେଖିଛି । କାରଣ କେବେହେଲେ ମୋ' ଉପରେ ସେପରି ଗୁରୁତର ଦାୟିତ୍ୱ ନ ଥିଲା ଓ ଏସବୁ ବାଜେ କଥା ଦେଖିବା ଓ ଠଉରେଇବା ପାଇଁ ସମୟର ଅସୁବିଧା ହେଉ ନ ଥିଲା ।

ପ୍ରାୟ ପଚିଶ ବର୍ଷ ହେଲାଣି ମୁଁ ଜଣେ ଶ୍ରେଷ୍ଠ କାଠିଆ ଓକିଲ ଓ ସେଇ କାଠର ଲେଖକ ଓ ସେଇ ଶ୍ରେଣୀର କଠିନ ନାଗରିକ ।

ପ୍ରତ୍ୟେକ କାମରେ ପ୍ରାପ୍ତି କମ୍, ପରିଶ୍ରମ କମ୍ ଓ ବଳିବା ସମୟ ବେଶି । ବାଧରେ ପାଣି ମଡ଼ା ପଥରରେ ଶିଉଳ ବସିଲା ପରି ଅନେକ ସୁବିଧା ଅସୁବିଧା କଥା ଜମାଟ ବାନ୍ଧି ରହି ଯାଇଛି ।

ଶିଉଳଘେରା ପଥର ବା ପାହାଚ ଅବା ରାସ୍ତାକୁ ସମସ୍ତେ ଡରନ୍ତି । ତେଣୁ ମୁଁ ସମସ୍ତଙ୍କଠାରୁ ଦୂରରେ ରହି ଆସିଛି । ଏହି ଲକ୍ଷ୍ୟରେ ମୋର କରଣି ଯେତିକ ଅନ୍ୟମାନଙ୍କର ମଧ୍ୟ ସହଯୋଗ ସେତିକ ।

ସେଇଟା ତା'ର ଭୁକ ଭୁକ ଆପେ ଆପେ ମରିଯିବ । କାହାର କଥା ସେ ମାନି ନାହିଁ । କାହାର କଥା ଶୁଣି ନାହିଁ । କାହାର ମୁହଁ ରଖି ନାହିଁ ।

ଇଏ ଆମର ନୁହେଁ ଓ ଆମ ସମାଜର ନୁହେଁ ।

ତେଣୁ ମୁଁ ମୋର କରଣ ସମାଜରୁ ଏକଘରିଆ ହୋଇ ରହି ଯାଇଛି । ବହୁତ ବର୍ଷ ହୋଇଗଲାଣି । ମରି ନାହିଁ ।

ସଂସାରର ବଡ଼ ବିପଦ ହେଉଛି—ଏକ ଘରିଆ ହେବା । ଗୋଟାଏ ବାଳରେ ମୁଣ୍ଡ ବାନ୍ଧି ହୁଏ ନାହିଁ । ଜଣିକିଆ ହେଲେ ଚଳି ହୁଏ ନାହିଁ ।

ଏଇ ଜୀବନର ଅଠଷଠୀ ବର୍ଷ କଟିଗଲା । ଏହା ଭିତରେ ଯେତେ ଅନୁଭୂତି ଆସିଛି ସବୁଗୁଡ଼ିକ ଏକୁଟିଆ ବାଆରି ହେବା ପାଇଁ ପ୍ରେରଣା ଦେଉଛି ।

ହିନ୍ଦୁ ଧର୍ମର ସଂସ୍କାରକ ରାଜା ରାମମୋହନ ରାୟ ଓ ଗୀତା ଜ୍ଞାନେଶ୍ୱରୀ ଲେଖକଙ୍କର ପିତା ମଧ୍ୟ ଏକଘରିଆ ହୋଇଥିଲେ ।

ଯୋଗ୍ୟତା ସାଙ୍ଗରେ ଏହି ଅବସ୍ଥାର କିଛି ସମ୍ବନ୍ଧ ନାହିଁ ।

କୌଣସି ବଡ଼ ପଦାର୍ଥକୁ ନଷ୍ଟ କରାଯାଇ ପାରିବ ନାହିଁ । ତେବେ ଛୋଟିଆ ପଦାର୍ଥ ବଡ଼ ପଦାର୍ଥକୁ ଢାଙ୍କିଦେବା ପାଇଁ ସମର୍ଥ । ଏମିତିରେ ଆକାଶରେ ସୂର୍ଯ୍ୟ ଢାଙ୍କି ହୋଇଯାନ୍ତି । ଚନ୍ଦ୍ର ଓ ତାରା ଲୁଚି ଯାଇ-ପାରନ୍ତି କଳା ବଉଦର ପରଦା ଭିତରେ ।

ସଂସାରରେ ସେମିତି ମଣିଷ ଲୁଚିଯାଏ । ପାଠକ ହଟିଯାଏ । ଜାତି ବି ମ୍ଳାନ ହୋଇଯାଏ । ସଭ୍ୟତା ପାଶୋରି ଯାଏ । ଠାକୁର ବି ହଜିଯାନ୍ତି । ତାଙ୍କର ଆରାଧନା ମନ୍ତ୍ର ବି ଲୋପ ପାଏ ।

ବେଦ ପୂର୍ବରୁ ଆମର ଠାକୁରଥିଲେ ଆକାଶ ଓ ପୃଥିବୀର ଦେବତା । ଶୂନ୍ୟ ଆକାଶର ଦେବତା ହେଲେ ଇନ୍ଦ୍ର । ତଳକୁ ପୃଥିବୀର କେନ୍ଦ୍ରବିନ୍ଦୁ ଉପ୍ରରର ଦେବତା ହେଲେ ଅଗ୍ନି । ଆଉ ବିସ୍ତୀର୍ଣ୍ଣ ଜଳସାଗରର ଦେବତା ହେଲେ ବରୁଣ ।

ଏଇ ଇନ୍ଦ୍ର, ଅଗ୍ନି ଓ ବରୁଣ କାଳକ୍ରମେ ନିଷ୍ପ୍ରଭ ହୋଇଗଲେ । ବଦଳରେ ଆସିଲେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ।

ସେମିତି କିଛି ନା କିଛି କାରଣରୁ ଶ୍ରୀମଦ ଭଗବତ୍ ଗୀତାର ଚତୁରବର୍ଣ୍ଣ—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଭିତରେ ସୃଷ୍ଟି ହେଲେ ପାଠକ—ଡାକ୍ତରଖାନାର ସର୍ଜରୀ ଓ ମେଡ଼ିସିନ ବିଭାଗର ଅସଂଖ୍ୟ ବିଶେଷଜ୍ଞଙ୍କ ପରି ।

ଏଥି ଭିତରେ କରଣ ପାଠକ ବା କାୟସ୍ଥ ଗୋଷ୍ଠୀ ଗୋଟିଏ । ସାରା ଭାରତରେ କାଶ୍ମୀରରୁ କେପ୍ କାମୋରିନ ଯାଏ ଏମାନେ ଅଳ୍ପ ସଂଖ୍ୟାରେ ଅର୍ଥାତ୍ ତିନିଶହ ଲୋକରେ ଗୋଟିଏ ବୋଲି ଗଣାହୋଇ ତାଙ୍କର ବଂଶ ବିସ୍ତାର କରି ରହିଛନ୍ତି ।

ଓଡ଼ିଶାର କରଣ ସମାଜ ଏଇ ଗୋଷ୍ଠୀର ଲୋକ । ଏମାନଙ୍କର ଗୁଣ ଦୋଷ ମଧ୍ୟ ସମାନ । ବିଶେଷ ଗୁଣ ହେଲା ଯେ ତାଙ୍କର ସ୍ୱାର୍ଥ ପାଖରେ ବିବେକ ହାର ମାନିଥାଏ ।

କିଏ ମଧ୍ୟ ଈଶ୍ୱରଙ୍କର ଉଆଡ଼ି । କାହାକୁ ବଳବାନ ବିବେକ ଦେଇଥାନ୍ତି । ସେଥିପାଇଁ ସେ ନିଜର ସ୍ୱାର୍ଥକୁ ବଡ଼ ନଭାବି ନିଜର ମଣିଷ ପଦବୀକୁ ବଡ଼ ବୋଲି ଭାବି ପାରୁଥାଏ । ଆଉ ଯେଉଁମାନଙ୍କର ବିବେକ ଦୁର୍ବଳ ସେମାନେ ନିଜର ସ୍ୱାର୍ଥକୁ ନିଜର ମଣିଷପଣିଆକୁ ବଡ଼ ବୋଲି ଭାବନ୍ତି ।

କରଣ କହିଲେ ମୁଁ ଏତିକି ବୁଝିଥାଏ । କାରଣ ଭାବଧାରା କହିଲେ ମୋର ମନେହୁଏ ଯେଉଁମାନେ ନିଜର ବଡ଼ପଣ ପାଇଁ ସବୁ ଧର୍ମ କର୍ମ ଆଚାର ବ୍ୟବହାରକୁ ଆଖିପିଛୁଳାକେ ବିସର୍ଜନ ଦେଇପାରନ୍ତି ସେହିମାନେ ଏହି ଭାବଧାରାର ଉପାସକ ।

ତେଣୁ ଧୋକାବାଜି ଏମାନଙ୍କର ପ୍ରଧାନ ହତିଆର । ଇଏ ଦୋଷ ନୁହେଁ—ଗୋଟିଏ ଗୁଣ ବୋଲି ଧରାଯାଇପାରେ ।

ଭାରତର ରାଜଧାନୀ ଦିଲ୍ଲୀ ସହରର ଗ୍ରାଉଣ୍ଡପାଖରେ ଶହେ ମାଇଲ ବା ଦେଢ଼ଶହ କିଲୋମିଟରରେ ଗୋଟିଏ ବୃତ୍ତ ଟାଣିଲେ ସେଠି ଏଇ କରଣ ଭାବଧାରାକୁ ପ୍ରକୃତରେ ବୁଝିହେବ ।

ଆକାଶର ଅଗ୍ନିଗୋଲକ ସୂର୍ଯ୍ୟଙ୍କ କଥା ବହିରୁ ପଢ଼ି ବୁଝିବା ଆଉ ନିଦାଘ ଖରାରେ ଗ୍ରୀଷ୍ମବହୁଳ ସ୍ଥାନରେ ଠିଆ ହୋଇ ବୁଝିବା ମଧ୍ୟରେ ବହୁତ ପ୍ରଭେଦ ରହିଛି ।

ମନେ ରହିବା ଉଚିତ ଯେ ବଙ୍ଗଳାର ଘୋଷ, ବୋଷ ଅବା ବିହାରର ସିନ୍‌ହା, ସହାୟ ଅବା ଓଡ଼ିଶାର କାନଗୋଇ, ମହାନ୍ତି ପଟ୍ଟନାୟକଙ୍କୁ ବୁଝି ଧୋକାବାଜି କ'ଣ ଭଲ ବୁଝି ହୁଏ ନାହିଁ ।

ଏହାକୁ ବୁଝିବା ପାଇଁ ଉତ୍ତର ଭାରତର ଶ୍ରୀବାସ୍ତବ, ନିଗମ୍, ଆସ୍ଥାନା ଓ ଦକ୍ଷିଣ ଭାରତର ମେନନ, ପିଲେ, ମଦାନା ଆଦିଙ୍କୁ ଭଲ କରି ଠଉରେଇବାକୁ ପଡ଼ିବ । ସେମାନଙ୍କର ଏଇ ଗୁଣଟି ଏତେ ପ୍ରଖର ଓ ଶୃଙ୍ଖଳିତ ଯେ ଏମାନଙ୍କ ପାଖରେ ଓଡ଼ିଶାର କରଣମାନେ ତାରି ଆଗରେ ଜୁଳୁଜୁଳିଆ ପୋକ ।

ଏହିପରି ଗୋଟିଏ କରଣ ସମାଜର କଥା ।

ଏଇ କରଣ ସମାଜଟି ମାତ୍ର ଭାରତରେ ବୁଦ୍ଧିରେ ଚଳେ । ଏହା ବହି ପଢ଼ା ବୁଦ୍ଧି ନୁହେଁ—ନିଜର ଜାତିଗତ ସଂସ୍କାରର ବୁଦ୍ଧି । ପୁଲିସର ଚୋରଧରା କୁକୁରର ବୁଦ୍ଧି ପରି । ଏଇ ହେଉଛି ଉପସ୍ଥିତ ବୁଦ୍ଧି ।

ଓଡ଼ିଶାର ଏଇ ବୁଦ୍ଧିର ଉଜ୍ଜଳ ଆଲୋକ ଦେଖିବାକୁ ଚାହିଁଲେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବିନୋଦ କାନନଗୋଙ୍କୁ ଦେଖିବାକୁ ପଡ଼ିବ । ସେମିତି ପ୍ରୋଜେକ୍ଟ ଗୁହ୍ନରକୁ ଦେଖି ତାଙ୍କୁ ମନ୍ତ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହିତ ତୁଳନା କଲେ ଉପସ୍ଥିତ ବୁଦ୍ଧି ବା ସଂସ୍କାରଗତ ପ୍ରଜ୍ଞାକୁ ଜାଣି ହେବ ।

ଭାରତର ପ୍ରତିରକ୍ଷା ମନ୍ତ୍ରୀ ମିଷ୍ଟର ମେନନ୍ ନ୍ୟୁୟର୍କ ଯାଇଥାନ୍ତି । ପଣ୍ଡିତ ଜବାହାରଲାଲ ଓ ମିଷ୍ଟର ମେନନ୍ ରୁଷ ଆଡ଼କୁ ଢଳି ଥିବାର ଅଭିଯୋଗ ଭୁହାଇ ଭୁହାଇ ଚାଲିଥାଏ । ଅସ୍ତ୍ର ବଳରେ ନୂ୍ୟନ ଭାରତ-ବର୍ଷ ମଝି ବାଡ଼ ଉପରେ ଏଣ୍ଡୁଅ ପରି ନିର୍ପେକ୍ଷବାଦୀ ହୋଇ ରହିବା ଉଚିତ ବୋଲି ଅନେକ ବୁଝିଆ କହୁଥାନ୍ତି ।

ନ୍ୟୁୟର୍କରେ ମିଷ୍ଟର ମେନନଙ୍କୁ ଟେଲିଭିଜନରେ ସାକ୍ଷାତକାର ମଗାହୋଇଥିଲା ଯେ ଭାରତର ପ୍ରତିରକ୍ଷାମନ୍ତ୍ରୀଙ୍କର ରୁଷର ସପକ୍ଷ ବିପକ୍ଷ ମତ ଆମେରିକାବାସୀ ଜାଣିବେ । ଏଇ ସାକ୍ଷାତକାର ଆମେରିକାର ସମକାଳୀନ ବିଶିଷ୍ଟ ରାଜନୀତିଜ୍ଞ ଜଣେ କରଉଥାନ୍ତି ।

ଟେଲିଭିଜନରେ ସେ ମିଷ୍ଟର ମେନନଙ୍କର ପରିଚୟ ଦେଲେ ଯେ ସେ କେରଳର ଦରିଦ୍ର ଗୁହାଳ ଘରୁ ଉଠି ୟୁରୋପୀୟ ମହିଳାଙ୍କର ମଦିଚ୍ଛା ଓ ସହଯୋଗରେ ଭାରତର ଶୀର୍ଷରେ ଓ ନିଖିଳ ବିଶ୍ୱର ଜଣେ ଶସ୍ତାନାୟକଙ୍କର ସ୍ଥାନ ନେଇ ପାରିଛନ୍ତି । ନିଜର ଯୋଗ୍ୟତା ବଳରେ

ସେ ଭାରତର ପ୍ରଧାନ ମନ୍ତ୍ରୀଙ୍କୁ ମଧ୍ୟ ଗୌଣ କରି ପାରିଛନ୍ତି ।······ଆଚ୍ଛା କହିଲ, ତୁମେ କ'ଣ ଜଣେ କମ୍ୟୁନିଷ୍ଟ ?

ଏହାର ଉତ୍ତର ମିଳିବା କଥା ।

କିନ୍ତୁ ମିଷ୍ଟର ମେନନ୍ ଚୁପ୍ ରହିଲେ । ଟିକିଏ ପରେ କହିଲେ ତୁମର ଏଇ ସଦିଚ୍ଛାର ଉତ୍ତର ମୁଁ ଦେବାକୁ ବାଧ୍ୟ ।

ସେଇଠୁ ମିଷ୍ଟର ମେନନ୍ ତାଙ୍କର ପରିଚୟ ଦାତାଙ୍କର ବିଶେଷ ଯୋଗ୍ୟତା ଜଣାଇ ଚାଲିଲେ । ସେ କିପରି ରାସ୍ତାର ଫୁଟ୍ ପାଥରୁ ଉଠି ଖବର କାଗଜ ବିକି, ବୋଲହାକ କରି ଦେଶର ଶୀର୍ଷସ୍ଥାନକୁ ଯାଇଛନ୍ତି । ଏପରି କି ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟଙ୍କ ଠାରୁ ଅଧିକ ଟଙ୍କା ପାଉଛନ୍ତି ।

ସେତେବେଳକୁ ଉପସ୍ଥିତ ଲୋକେ ବଡ଼ ବ୍ୟସ୍ତ ବିବ୍ରତ ହେଇ ଗଲେଣି । କଥାଟା କୁଆଡ଼କୁ ଯାଉଛି କେଜାଣି ?

ମିଷ୍ଟର ମେନନ୍ ତାଙ୍କର ପ୍ରତିପକ୍ଷକୁ ଅପଲକ ଆଖିରେ ଚାହିଁ ପଚାରିଲେ—ଆଚ୍ଛା, କୁହନି ତୁମେ କ'ଣ ଗୋଟିଏ ବେଧୁଆ—ବାଷ୍ଟାର୍ଡ଼ ?

ସେତିକିରେ ଟେଲିଭିଜନ ସାକ୍ଷାତକାର ଶେଷ ହେଲା । ମିଷ୍ଟର ମେନନ୍ ଚିରଦିନ ପାଇଁ ଗୋଟିଏ ପ୍ରବାଦ ଓ ପ୍ରବଚନ ହେଇଗଲେ ।

ଏହାକୁ କୁହାଯାଏ ବୁଦ୍ଧି—ସଂସ୍କାରଗତ ବୁଦ୍ଧି ।

ସେହିପରି ଗୋଟିଏ ଘଟଣା ଘଟିଥିଲା କଟକର ରେଭେନ୍ସା କଲେଜରେ ।

ବଳିତ ଫେରନ୍ତା ଗଣିତଜ୍ଞ ଅଧ୍ୟାପକ ପି. ଏନ୍. ଦେ ବ୍ଲାକବୋର୍ଡ଼ ଉପରେ ଗଣିତ ଲେଖୁଥାନ୍ତି । ଅଧ୍ୟାପକ ଦେ ବ୍ଲାକ୍‌ବୋର୍ଡରେ ଚକ ଖଣ୍ଡେ ଧରି ଅତ୍ୟନ୍ତ କ୍ଷିପ୍ର ଗତିରେ ଲେଖି ଚାଲନ୍ତି । ଲୋକେ କହନ୍ତି ଯେ ସେ କାଲ ହେଇଥିବାରୁ ହାତରେ ଏଇ ଅସାଧାରଣ କ୍ଷିପ୍ରତାର ଅଧିକାରୀ ।

କ୍ଲାସକୁ ଚାହିଁ ପଚାରିଲେ—କିଛି ପଚାରିବ ?

ଓଡ଼ିଶାର ପରବର୍ତ୍ତୀ ଚିଫ୍ ସେକ୍ରେଟେରୀ ଶ୍ରୀ ରତ୍ନାକର ଷଡ଼ଙ୍ଗୀ ଠିଆ ହୋଇ କହିଲେ ଯେ ନାକକୁ ସିଧା ନ ଦେଖାଇ ମୁଣ୍ଡ ପଛଆଡ଼ୁ ହାତ ବୁଲାଇ ଦେଖାଇଲି ପରି ହେଲା ।

—କ'ଣ ? ତୁମେ ସିଧା ଦେଖାଇ ପାରିବ ?

—ହଁ ।

—ତାହାହେଲେ ଖାତାରେ କରି ଦିଅ ।

ରତ୍ନାକର ବାବୁଙ୍କର କାମ ଅଳ୍ପ ସମୟରେ ସରିଗଲା । ସେ ଖାତା ବଢ଼ାଇ ଦେଲେ ଅଧ୍ୟାପକଙ୍କ ହାତକୁ ।

ଖାତାକୁ ଓଲଟାଇ ଦେଇ ଅଧ୍ୟାପକ ଦେ ବ୍ଲାକବୋର୍ଡ ଲିଭାଇ ଦେଇ ପୁଣି ସେମିତି ତାଙ୍କର ସ୍ୱାଭାବିକ କ୍ଷିପ୍ରତାରେ ସେଇ ସମାଧାନ ଲେଖି ଗଲେ ।

ଶେଷ ହେବା ପରେ ରତ୍ନାକର ବାବୁଙ୍କର ଖାତାକୁ ପରୀକ୍ଷା କରି ଦେଖି କ୍ଲାସକୁ କହିଲେ—ରତ୍ନାକର ଠିକ୍ କରିଥିଲେ । ମୁଁ ବୁଲାଣି ବାଟରେ ଯାଇଥିଲି......ବୁଝିବ ଯେ ଯାହାକୁ କୁହାଯାଏ ବୁଦ୍ଧି—ଇଣ୍ଟେଲିଜେନ୍ସ ।

ଏଇ ବୁଦ୍ଧି କାହାର ଏକଚାଟିଆ ନୁହେଁ । ଅଧ୍ୟାପକ ଦେ ଓ ଶ୍ରୀଯୁକ୍ତ ଷଡ଼ଙ୍ଗୀ ଉଭୟେ ତୁଳନୀୟ ।

ଏମିତି ବୁଦ୍ଧି ଥିଲା ଡାକ୍ତର ବିଧାନଚନ୍ଦ୍ର ରାୟଙ୍କର । ସେ ସବୁବେଳେ ବିଭିନ୍ନ ଆସେମ୍ବ୍ଲିର ମୁଖିଆ ଲୋକଙ୍କର ଦିଲ୍ଲୀ ଦରବାର ଯିବାଟାକୁ ଆପତ୍ତି କରୁଥିଲେ ।

—ଓହେ, ଯାତ ଦିଲ୍ଲୀ ଯାଅ କେନ ? ଅସୁବିଧେ ହବେ ।

ସେଇ ଉପଦେଶ ବଙ୍ଗଳା ଓ ଆସାମ ମାନୁଥିଲେ । ତେଣୁ ନିଜର ଅଞ୍ଚଳରେ ସେମାନେ ତାଙ୍କର ପ୍ରଭାବ ଅତୁଟ ରଖିପାରୁଥିଲେ ।

କିନ୍ତୁ ଓଡ଼ିଶା ସେତେବେଳେ ଧୋକାବାଜମାନଙ୍କର ଅକତିଆରକୁ ଆସିଯାଇଥିବାରୁ ଦିଲ୍ଲୀ ଦରବାର ଆବଶ୍ୟକ ପଡ଼ୁଥିଲା । କାରଣ ଧୋକାବାଜ ଅର୍ଥ ଚୁଗୁଲି ବା ଚରିତ୍ର ସଂହାର । ଏଇ କାମଟି କରିବା

ପାଇଁ ଆଜି ଜଣକୁ ଖାଉନ୍ଦ ବନେଇବା ଦରକାର । ସେଥିପାଇଁ ଦଳୀ ଯାହା ଚାଲିଛି । ଆଜି ଅଧିକରୁ ଅଧିକ ଓଡ଼ିଆ କାୟସ୍ଥ ଓ କାୟସ୍ଥ-ଧର୍ମୀ ଲୋକ ଦଳୀକୁ ଯାଉଛନ୍ତି ଓ ସୁବିଧା ଅସୁବିଧା ବେଳରେ ଓଲଟି ବସୁଛନ୍ତି ।

କାୟସ୍ଥମାନଙ୍କର ବିଶେଷ ଯୋଗ୍ୟତା ଓ ଦକ୍ଷତା ଭିତରେ ଗୋଟିଏ ହେଲା ପ୍ରତିପକ୍ଷର ଚରିତ୍ର-ସଂହାର । ଏଇ ଅସ୍ତ୍ର ଦ୍ୱାରା ସେମାନେ ନିଜକୁ ଅପରଠାରୁ ବଡ଼ କରି ନିଜେ ଫଳ ଫସଲର ଅଧିକାରୀ ହୋଇଥାନ୍ତି ।

ଏଇଟା ହେଲା କାୟସ୍ଥ-ଧର୍ମ । ଚରିତ୍ର-ସଂହାର ଗୁଣ ଅନ୍ୟ-ମାନଙ୍କର ଅଳ୍ପ । କାରଣ ସେମାନଙ୍କର ବିବେକ ଅଧିକ ସ୍ୱାର୍ଥହୀନ । କିନ୍ତୁ ଏଇ ନିସ୍ୱାର୍ଥପରତା ଗୁଣ କରଣ ବା କାୟସ୍ଥମାନଙ୍କର ଅତି କମ୍ ।

ଈଶ୍ୱର ଦୋଷ ଦେଇଥିଲେ ଗୁଣ ମଧ୍ୟ ଦେଇଥାନ୍ତି । ଧର୍ମଶାସ୍ତ୍ର କହେ ଯେ ଲୁହା ଖଣ୍ଡିକରେ ଯେମିତି ଠାକୁରଙ୍କର ପ୍ରତିମା ଗଢ଼ା ଯାଇପାରେ ସେମିତି କଂସେଇ ଛୁରୀ ମଧ୍ୟ ତିଆରି ହୋଇପାରେ ।

କରଣମାନଙ୍କର ଏଇ ଚରିତ୍ର ସଂହାର ପ୍ରବୃତ୍ତି ସେମାନଙ୍କର ଲୋଭ, ସ୍ୱାର୍ଥପରତା ଓ ପରଦ୍ରବ୍ୟ ଲୋଭକୁ ବଢ଼ାଇଥାଏ । ନିଜ ପାଇଁ ସେମାନେ ପୁଅ ଓ ମାଈପକୁ ମଧ୍ୟ ମାରି ଦେଇ ପାରନ୍ତି ।

ଏମିତି ଘଟିଥିଲା ଜଣେ ପ୍ରତିଷ୍ଠିତ କରଣ ପୁଲିସ ଅଧିକାରୀଙ୍କ ଘରେ । ସେତେବେଳେ ବ୍ରିଟିଶ ସରକାରଙ୍କର ମୂଳୋତ୍ପାଟନ ପାଇଁ ଆନ୍ଦୋଳନ ଚାଲିଥାଏ । ସେଥିରେ ବହୁତ ଯୁବକ ଯୋଗ ଦେଇଥାନ୍ତି । ଧରପଗଡ଼ ଚାଲିଥାଏ । ଏହି କ୍ରାନ୍ତିକାରୀ ଦଳରେ ଥିଲେ ଜଣେ କରଣ ଯୁବକ । ତାଙ୍କର ପିତା ବ୍ରିଟିଶମାନଙ୍କର ଜଣେ ବିଶ୍ୱାସଭାଜନ ଅଧିକାରୀ ଅଫିସର ।

ଆନ୍ଦୋଳନ ଉଚ୍ଛୁଳୁ ଥାଏ । କିନ୍ତୁ କେନ୍ଦ୍ରବିନ୍ଦୁ ଧରାପଡ଼ୁ ନଥାଏ । କରଣ ଅଧିକାରୀ ନିଜକୁ ଶପଥ ଦେଇ ନିଜର ଯୋଗ୍ୟ ଚରିତ୍ର-ବାନ୍ ଶାସ୍ୟ ପୁଅଠାରୁ ତଥ୍ୟ ସଂଗ୍ରହ କରି ଯୋଗାଇଦେଲେ । କେତେକ ନେତା ଧରା ପଡ଼ିଲେ ।

ସେତେବେଳେ ଜଣା ପଡ଼ିଲା ଯେ କରଣ ଯୁବକର ବାହା ସେଥିପାଇଁ ଦାୟୀ । ପୁଅ ଆତ୍ମହତ୍ୟା କରିଦେଲେ କଲିକତା ମହାନଗରୀରେ ।

ଚାରିଆଡ଼େ ପ୍ରବାଦ ଖେଳିଗଲା ଯେ କରଣମାନେ ଅନ୍ତଃସାରରେ ଧୋକାବାଜ । ନିଜର ଉନ୍ନତି ଓ ପଦପଦବୀ ପାଇଁ ସେମାନେ କୌଣସି ପ୍ରିୟଜନକୁ ବଳିଦେଇ ପାରନ୍ତି ।

ଯେତେବେଳେ ସେଇ ଆତ୍ମହତ୍ୟା କରି ଛୁଟି ନେଇଥିବା ଯୁବକଙ୍କର ସାନ ଭାଇ ସେତେବେଳର ସମ୍ବାଦ ପତ୍ର ସମାଜ ଅଫିସକୁ ଚାଲି ଆସନ୍ତି ସେତେବେଳେ ଭାରପ୍ରାପ୍ତ ଅଫିସର ଆଜିର ସଂପାଦକ ଡକ୍ଟର ରାଧାନାଥ ରଥ ନିମିଚଉଡ଼ ଅଫିସରେ ସମସ୍ତ କାଗଜପତ୍ର ଲୁଚାଇବାକୁ ଚେଷ୍ଟା କରନ୍ତି ।

ରାଧାନାଥ ବାବୁ ସମସ୍ତଙ୍କୁ ସତର୍କ କରି କହନ୍ତି ଯେ ଏଇ ବାବୁଙ୍କୁ ବିଶେଷ ସାବଧାନ ରହୁଥିବ । କ'ଣ ସେ ଦେଖିଦେବେ ଓ କେତେ ଅଳ୍ପ ଦେଖି କେତେ ବେଶି ବୁଝିନେବେ ଆଉ ସେଥିରୁ ସେ କ'ଣ କେତେ ବଡ଼ ଭିଆଇ ଦେବେ ଭାବି ହୁଏ ନାହିଁ ।

ଇଏ ଥିଲା କରଣ ସମାଜର ଦୋଷର ତାଲିକା—ଏଇ ଓଡ଼ିଶାରେ ଆଜକୁ ଦୁଇ କୋଡ଼ି ବର୍ଷରୁ ଅଧିକ ବର୍ଷ ତଳେ ।

ଆଜି ମଧ୍ୟ ସମାଜ କାଗଜ ଅଛି । ରାଧାନାଥ ବାବୁ ସେଇଠି ଅଛନ୍ତି ।

ଏହାର କିଛିଦିନ ପୂର୍ବରୁ ତରଣୀ ମହିଳା ସ୍ୱାଧୀନତା ଆନ୍ଦୋଳନ ବେଳେ କଟକ ସହରର ପୁଲିସ ସାହେବଙ୍କୁ ଆନ୍ଦୋଳନକୁ ବିପର୍ଯ୍ୟସ୍ତ କରାଇ ଦେବାର ହୁକୁମ ଆସିଲା ।

ସେ ମଧ୍ୟ ସେଇ କରଣ ଅଫିସର ।

ସେ ଦେଖିଲେ ଯେ କଟକରେ ଦୁଇ ଚାରିଶହ ଚାଲି ଘରକୁ ଗୋଟାଏ ନାମକା ବାସ୍ତେ କୋଠା । ତେଣୁ ଲୋକଙ୍କର ଭିଟାମାଟି ଉଚ୍ଛନ୍ନ ହୋଇଗଲେ ଆନ୍ଦୋଳନ ଛିନ୍ନଛତ୍ର ହୋଇଯିବ ।

ସେଇଆ ମଧ୍ୟ କାର୍ଯ୍ୟକାରୀ ହେଲା ।

କାରଣ ଧନୀ ଲୋକ ଓ ଥିଲାବାଲା ସବୁବେଳେ ସବୁ ଦେଶରେ ଆନ୍ଦୋଳନ କରିଥାଏ । ଗରିବ ଲୋକ ତାହାର ପେଟ ଗୃଖଣ୍ଡିକ ପୋଡିବାରେ ସକାଳୁ ସଞ୍ଜଯାଏ ଖଟୁଥାଏ ।

ସନ୍ଧ୍ୟା ଆସେ ।

ନିଦ ଆସେ ।

କାଠ କବାଟ ନାହିଁ ଅନେକ ଘରେ । କୁଡ଼ିଆରେ ଥାଏ ତାଳପତ୍ର ବା ବରଡ଼ା ପତ୍ରର ଯାଁଳି ତାଟି କବାଟ ।

କାଠ କବାଟ ଡାହାଣ ଓ ବାଁ ଦୁଇ 'ଫାଳିଆ ହୋଇ ମୁଣ୍ଡେ ଉଚ୍ଚ । ତାଟି କବାଟ ଉପର ଓ ତଳ ହୋଇ ଅଣ୍ଟାଏ ଉଚ୍ଚ । ଦିନ ହେଲେ ବାଉଁଶ ଛିଗ ଦେଇ ଉପର ଅଧିକ ଟେକି ରଖା ହୁଏ । ତଳ ପାଖଟାକୁ ତେରି ରଖିବାକୁ ହୁଏ ।

ଘର ଭିତର ଅନ୍ଧାର । କାରଣ କିରୋସିନର ବିଶେଷ ପ୍ରଚ୍ୟୁର ନ ଥାଏ । ପୋଲଙ୍ଗ ଓ କରଞ୍ଜ ତେଲର ଦୀପ ଅବା କିରୋସିନ ଡିବିର ଦରର ଆଲୁଅ । ସିଏ ବା ଦରକାର କ'ଣ ?

ରାତି ହେଲେ ତ ଶୋଇବାକୁ ହେବ । ପଢ଼ାପଢ଼ି ଅବା ଅନ୍ୟ ଧନ୍ଦା ନାହିଁ । ଆଲୁଅ ହେଉଛି ଗିରସ୍ତ ଆଖିରେ ଭାରିଯାର ଦେହ ଓ ଭାରିଯା ଆଖିରେ ଗିରସ୍ତର ଦେହ ।

ଚ୍ଛରିଆଡ଼ର ଅନ୍ଧାର ନିଶ୍ଚୁନ ବାତାବରଣ ଭିତରେ ଚୁଲିଘରେ ନିଆଁ ଲାଗେ—ସିଏ ପୁଣି ଶୀତ ଦିନରେ । କାରଣ ଆନ୍ଦୋଳନ ଆରମ୍ଭ ହୋଇଥିଲା ମାଘ ମାସରେ ।

ଖରା ଦିନରେ ଲୋକ ଗ୍ରୀଷ୍ମ ପାଇଁ ପଦାରେ ବୁଲନ୍ତି । ରାତିରେ ମେଲେରିଆ ମଶାଙ୍କର ଉତ୍ପାତ ପାଇଁ ନିଆଁ ମଡ଼ଲା ନିଦ ଶୁଅନ୍ତି । ତେଣୁ ଘର ପୋଡ଼ିଯିବା ସଙ୍ଗଠନ ହୁଏ ଭାଦ୍ର ମାସରୁ ମାର୍ଗଶିର ମାସ ଯାଏ ।

ତରିଣି ମସିହାର ବର୍ଷକ ଆଗରୁ କଟକରେ ଘରପୋଡ଼ ଆରମ୍ଭ ହୋଇଗଲା ।

ଆମର ଥାଏ କଟକର ମଣ୍ଟି ବା ତଳ ତେଲଙ୍ଗା ବଜାରରେ ରାସ୍ତାକୁ ତିନି ବଖରା ଖୁଲଘର ଓ ଦୁଇ ବଖରା ଅନ୍ଧାରର ବଖରାଏ କୋଠା । ବାପା ରହୁଥାନ୍ତି ବିହାରର ଭାଗଲପୁରରେ ।

ଆମେ ଏଠି ମାଆ ଓ ପିଲା ଛ'ଜଣ । ମୁଁ ହେଉଛି ବଡ଼ । ମୋର ବୟସ ବାର । ପାଠ ପଢ଼ । କଲିଜିଏଟ୍ ସ୍କୁଲର ଅଷ୍ଟମ ଶ୍ରେଣୀ—ଏବେ ଯେଉଁଟି ସପ୍ତମ ବା ମାଇନର ଶେଷ ବର୍ଷ ।

ଆମକୁ ନିରାପଦ ହେବାକୁ ହେଲେ ଘର ଟିଣ ହେବା ଦରକାର । ତାହାଛଡ଼ା ଅନ୍ୟ କିଛି ପ୍ରସ୍ତାବ ସୁବିଧାଜନକ ହେଲା ନାହିଁ । ଗୁରୁଜିର ଦରମା ଛଡ଼ା ଆମର ଆଉ କିଛି ସ୍ୱଗତ ନ ଥାଏ ।

ଖାଉ ଡାଲି ଭାତ ଓ ଶ୍ରେଷ୍ଠ ଗୋଲ ଆଳୁ ଝୋଳ । କେଉଁଦିନ ତେନ୍ତୁଳି ପାଣି ଦିଆ ଝୋଳ ଓ କେଉଁଦିନ ସାଧା—ଭୁଜାଯାଏ ଆଳୁଦମ୍ ।

ଏମିତି ଖାଇ, ଖଣ୍ଡେ ଖଣ୍ଡେ ହାଫ୍ ପ୍ୟାଣ୍ଟ ଓ କମିଜ ପିନ୍ଧି ଖାଲି ଗୋଡ଼ରେ ନିଜକୁ ନିଜେ ମୁରବି ସାଜି ଆମେ ଚଳୁଥାଉ । ଗରିବ ଲୋକ—ଏହାଠାରୁ ଅଧିକା ସ୍ଥିତି ନ ଥାଏ ।

ଗରିବରେ ବଡ଼ଲୋକ ମଧ୍ୟ ସୁମାରି ହୁଅନ୍ତି । ଆମର ଗୋଟିଏ ଟିଣ ଘର ଓ ବଖରାଏ କୋଠାଘର ଥିବାରୁ ଆମେ ଆମର କଟକ ତଳ ତେଲଙ୍ଗା ବଜାର ସାହିରେ ଜଣେ ଥିଲାବାଲା ।

ବାପାଙ୍କର ଥାଏ ଗୋଟିଏ ଦୁଇ ହଜାର ଟଙ୍କାର ଜୀବନ ବୀମା ଓ ଡାକ ଘରେ ଟଙ୍କା ଶହେ ପାଞ୍ଚପାଆ ।

ଏହାପରେ ଗରିବ ଘରେ ଚଉତିରିଶି ମସିହାରେ ଗୋଟିଏ ଭଉଣୀ ତେଲଙ୍ଗା ବଜାରର କୋଠା ଘରେ ଜନ୍ମ ହେଲା ।

ତାହାର ନାମ ଶ୍ରୀମତୀ ପୁଣ୍ୟପ୍ରଭା ଓ ଡାକ ନାଁ । ହେମ । ଶେଷକୁ ସେଇ ହେଲା ଜଣେ ଏମ୍. ଏ. ପାସ୍ ଶିକ୍ଷିତା ତରୁଣୀ ଓ ବାହା ହୋଇ

ଶାଶୁଘର ଧନ ଓ ପଦମର୍ଯ୍ୟାଦା ବଳରେ ଜଣେ ଧନଗର୍ବୀ ମହିଳା । ଏହାଙ୍କୁ କଟକର ମାନ୍ୟବର ଶ୍ରୀଯୁକ୍ତ ଶାରଦା ପ୍ରସାଦ ନନ୍ଦ କହୁଛନ୍ତି ଇଂରାଜୀରେ ସୋଫିଷ୍ଟିକେଟେଡ୍ ।

ଓଡ଼ିଆ ସମାଜରେ ଓ ଏଇ ବସ୍ତି ଓ ଗଳି ଭରା ପୁରୁଣା ସହର କଟକରେ ଜଣେ ଆଉ ଜଣକୁ ବୁଝିବାକୁ ବା ବୁଝାଇବାକୁ ଏଇ ସବୁ କଷ୍ଟମଷ୍ଟିଆ ଇଂରାଜୀ ଶବ୍ଦ ବ୍ୟବହାର କାହିଁକି କରା ହେଉଛି କେହି ବୁଝିପାରୁ ନାହାନ୍ତି ।

କେନ୍ଦ୍ରାପଡ଼ାର ପୂର୍ବତନ ଆସେମ୍ବ୍‌ଲି ସଭ୍ୟ ଶ୍ରୀ ଧ୍ରୁବ ଚରଣ ସାହୁ ଓ ଟର୍ଚ୍ଚୋଳର ପୂର୍ବତନ ମନ୍ତ୍ରୀ ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ଇଂରାଜୀ ଶବ୍ଦ ବା ତାହାର ଅପଭ୍ରଷ୍ଟ ରୂପକୁ ଧରି ନିଜ କଥା ବୁଝାନ୍ତି ନାହିଁ । ସେଇପରି ଥିଲେ କବିଚନ୍ଦ୍ର କାଳିଚରଣ ।

ଖାଲି କଥା ନୁହେଁ ଯେ କଥାର ଠାଣି ଓ ଶବ୍ଦକଳ୍ପ ସବୁ ସେମାନଙ୍କର ଓଡ଼ିଆ ।

କିନ୍ତୁ ଓଡ଼ିଶାର ଶ୍ରେଷ୍ଠ ଓଡ଼ିଆ ସମ୍ପାଦକ ମଫସଲ ଅଞ୍ଚଳର ଲୋକ ହୋଇ ମଧ୍ୟ ମାନମାନ୍ୟ ଶାରଦା ବାବୁ ଏପରି ଇଂରାଜୀ ଶବ୍ଦ ପ୍ରୟୋଗ କରୁଛନ୍ତି ।

ଏଇ ଇଂରାଜୀ ଶବ୍ଦ ସୋଫିଷ୍ଟିକେଟେଡ୍ ମୋର ଏଇ ଅଠଷଠି ବର୍ଷରେ ମଧ୍ୟ ଅପରିଚିତ ଶବ୍ଦ । ଓଡ଼ିଆ ସାମାଜିକ ଧାରା ଏତେ ଆଗେଇ ଗଲଣି । ଏଣେ ଏହାର ପ୍ରୟୋଗକାରୀ ମୋ'ଠାରୁ ଜ୍ୟେଷ୍ଠ ।

ଇଂରାଜୀ ଅଭିଧାନ କହୁଛି ଯେ ଏହି ଇଂରାଜୀ ଶବ୍ଦର ଅର୍ଥ ହେଲା—ଲୋକଟି ସ୍ୱାଭାବିକ ନୁହେଁ ଅବା ସରଳ ନୁହେଁ । ସେ ମିଛକୁ ସତ କରି ତୋଳି ଆଣି କହିପାରେ ଓ ଲୁହାଇପାରେ ।

ତେବେ କ'ଣ ବୁଝିବାକୁ ହେବ କି ଯେ ଏଇ ଚଉରାଅଶୀ ମସିହାରେ ସାମ୍ବାଦିକତା ବୃତ୍ତି ଧରିଥିବା ବହୁଳ ଭାଷୀ ବ୍ୟକ୍ତି ଇଂରାଜୀ, ଓଡ଼ିଆ, ସଂସ୍କୃତ ଭାଷାରେ ମଧ୍ୟ ସୋଫିଷ୍ଟିକେଟେଡ୍ ।

ଅର୍ଥାତ୍ କଟକ ବଜାରର ମୂଲିଆଙ୍କ ପରି ଟେରିଲିନ ପିନ୍ଧି, ଝାଡ଼ ବାନ୍ଧି, ଓଲଟାମୋଲଟା ଭାଷା ବ୍ୟବହାର କରି କୋଠାବାଡ଼ି ପିଟିଲେଣି । ସତ ପଠ କିଛି କରି ଭାଷା—ଏତକ ଜାଣି ନାହାନ୍ତି ।

ଠିକ୍ ସେହି ସମୟରେ କଟକରେ ଦୈନିକ ସମ୍ବାଦପତ୍ର ସମାଜ କାଗଜରେ ମାନ ଚଉରିଆ ଦଶହରା ଆଗରୁ ସେପ୍ଟେମ୍ବର ତିରିଶି ତାରିଖ କାଗଜର ସାତ ପୃଷ୍ଠାରେ ତିର ବନ୍ଦମାସ୍ତ ସଂପାଦକ ଉକ୍ତର ରାଧାନାଥ ରଥ ଖଣ୍ଡେ ଚିଠିର ଫଟୋ ଛପାଇଥିଲେ ।

ଏହି ଇନଲାଣ୍ଡ ଚିଠିଟି ଶ୍ରୀ ଶାରଦା ପ୍ରସାଦ ନନ୍ଦ, କରେସପଣ୍ଡେଣ୍ଟ ସମାଜ, ଗୋପବନ୍ଧୁ ଭବନ, କଟକକୁ ଲେଖା ।

ଏଥିରେ ମାନମାସ୍ତ ସଂପାଦକ ଦେଇଛନ୍ତି ଦେଲେ ସମାଜ ସମ୍ପାଦକ ରାଧାନାଥ ରଥ ଓ ସାମ୍ବାଦିକ ଶାରଦା ପ୍ରସାଦ ନନ୍ଦଙ୍କ ଦୁର୍ନୀତି ।

"ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଉତ୍ତରାଧିକାରୀଙ୍କଠାରୁ ସମାଜ କାଗଜ ଛଡ଼ାଇ ଆଣି ରାଧାନାଥ ରଥ ତାଙ୍କୁ ପୈତୃକ ସମ୍ପତ୍ତି କରିଛନ୍ତି । ତାଙ୍କ ଭାଇ ସମାଜ ଅଫିସରେ ମୋଟା ଦରମା ପାଉଅଛନ୍ତି । ତାଙ୍କର ଜୋଇଁ ପଦ୍ମାରବିନ୍ଦ ମହାପାତ୍ର ଅନ୍ୟ ସିନିଅର ଅଫିସରଙ୍କୁ ଡେଇଁ ଚିଫ୍ କନଜରଭେଟର ହୋଇଛନ୍ତି । ରିଲିଫ ଫଣ୍ଡ ନାମରେ ଜନସାଧାରଣଙ୍କଠାରୁ ପଇସା ଆଦାୟ କରି ସେଥିରେ ଦୁର୍ନୀତି କରିଛନ୍ତି । ଉତ୍କଳ ଗୋ-ମଙ୍ଗଳ ସମିତି ନାମରେ ହଜାର ହଜାର ଟଙ୍କା ହରିଲୁଟ କରିଛନ୍ତି । ସେ ଓ ତାଙ୍କର ଗୁମୁଣ୍ଡ ସାମ୍ବାଦିକ ଶାରଦା ପ୍ରସାଦ ନନ୍ଦ ସମାଜକୁ ଖୋଳ କରି ସାରିଲେଣି । ହରିଲୁଟ ଟଙ୍କାରେ କୋଠା ପିଟୁଛନ୍ତି । ଜାତିଆଣ ଭାବ ସୃଷ୍ଟି କରି ନିଜର ସ୍ୱାର୍ଥ ଚରିତାର୍ଥ କରୁଛନ୍ତି । ଶାରଦା ପ୍ରସାଦ ନନ୍ଦ ଘୋଡ଼ା ମଦୁଆ । ସମାଜରୁ କେତେ-ଶହ ଟଙ୍କା ପାଇ ରଜାଙ୍କ ଭଳିଆ ଚଳୁଛନ୍ତି । ଧମକାଇ ପଇସା ଆଦାୟ କରିବା ହେଲା ତାଙ୍କର କାମ ।

ରାଧାନାଥ ବାବୁ ଏତେବର୍ଷ ସରକାରୀ କାମରେ ରହି କୌଣସି ଭଲ କାମ କରି ନାହାନ୍ତି । କେବଳ ଦୁର୍ନୀତି କରି ନିଜର ସମ୍ପଦ ବଢ଼ାଇ

ମୂଳଚନ୍ଦ୍ର ଓ ଶାରଦା ପ୍ରସନ୍ନ ନନ୍ଦଙ୍କ ଭଳି କେତେକ ଦୁର୍ନୀତିଗ୍ରସ୍ତ ସାମ୍ବାଦିକଙ୍କୁ ଧରି ଜୀବନ ଉପଭୋଗ କରୁଛନ୍ତି ।

ରାଧାନାଥ ବାବୁ ଓ ସାମ୍ବାଦିକ ନନ୍ଦେ ପ୍ରତି ରବିବାର ଜଟଣୀ ଯାଇ ମାଇକିନିଆ × × ।

ଆପଣମାନେ ଜଟଣୀରେ ଯାହାକୁ ପଚାରି ପାରନ୍ତି ।

ନରୋତ୍ତମ ଦାସ

ସେହିଦିନ କାଗଜରେ ଆଉ ଗୋଟି ଚିଠି ତଳେ ୩୦।୭।୮୪ ତାରିଖ ଦିଆ ଆଉ ଖଣ୍ଡେ ପୋଷ୍ଟ କାର୍ଡ଼ର ଫଟୋ ଛପା ଯାଇଛି । ଏହି କାର୍ଡ଼ଟି ଶ୍ରୀ ରାଧାନାଥ ରଥ, ସମ୍ପାଦକ ସମାଜ, ଗୋପବନ୍ଧୁ ଭବନ କଟକକୁ ଲେଖା ।

ରାଧାନାଥ ବାବୁ,

ଆପଣଙ୍କ ସମାଜ ପଢ଼ି ମୁଁ ନିମ୍ନଲିଖିତ ଚେତାବନୀ ଆପଣଙ୍କୁ ଦେବାକୁ ଉଚିତ ମନେ କରୁଛି । ଗତ କିଛିଦିନ ହେଲା ବ୍ରୁଲ୍ ଘଟଣାର ଅପପ୍ରଚାର କରି ଆମ ଦଳର ଭାବମୂର୍ତ୍ତିକୁ ନଷ୍ଟ କରୁଛନ୍ତି । ଆସନ୍ତା ନିର୍ବାଚନରେ ଶାସକ ଦଳକୁ ଗାଦିଚ୍ୟୁତ କରିବାକୁ ଯେଉଁ ଚକ୍ରାନ୍ତ ଆପଣ କରୁଛନ୍ତି ତାର ଠିକଣା ଜବାବ ଦିଆଯିବ ଠିକଣା ସମୟରେ । ଯେବେ ଯଦି ବ୍ରୁଲ୍ ଘଟଣାକୁ ରାଜନୈତିକ ରୂପ ନ ଦିଅନ୍ତି ତେବେ ଆମେ ଆପଣଙ୍କୁ ଛାଡ଼ିଦେବୁ । ବୃଦ୍ଧ ବୟସରେ ଆପଣଙ୍କର ବୁଦ୍ଧି ବାମ ହୋଇଛି । ଭାବନ୍ତୁ ନାହିଁ "ସମାଜ" ଆପଣଙ୍କର । ଏ ପତ୍ର ପାଇବାର ପାଞ୍ଚ ଦିନ ମଧ୍ୟରେ ଆମ ଦଳ ବିରୁଦ୍ଧରେ ପ୍ରଚାର ବନ୍ଦ ନ କରନ୍ତି ତେବେ ଆପଣଙ୍କର ମରା ଶରୀରକୁ ମଧ୍ୟ ଆପଣଙ୍କର ବଂଶଧରମାନେ ଦେଖିବାକୁ ପାଇବେ ନାହିଁ । ଏ ପ୍ରକାର ବ୍ୟବସ୍ଥା କରିବା ଆମ ପକ୍ଷରେ ଖୁବ୍ ସହଜ । ଆଶାକରେ ଏ ଚିଠିକୁ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରେ ଦେଖିବେ । ଆପଣଙ୍କ ପରି ବିଚାରବନ୍ତ ବ୍ୟକ୍ତି ଏ କାର୍ଯ୍ୟରୁ ଓହରିଯିବେ ବୋଲି ଆଶା କରୁଛି । ଇତି ।

ଆପଣଙ୍କର ଶୁଭେଚ୍ଛୁ

C. M. V. P.

ଅସ୍ପଷ୍ଟ ଇଂରାଜି ଦସ୍ତଖତ

ଏଇ ଚଉରାଅଶି ମସିହାର ଶେଷ ଭାଗରେ ଉତ୍କଳର ରାଧାନାଥ ରଥ ଓ ସାମ୍ବାଦିକ ଶାରଦା ବାବୁଙ୍କ ପରି ବ୍ୟକ୍ତିବିଶେଷଙ୍କର ଓଡ଼ିଶାର ସମାଜରେ ସ୍ଥାନ ଏଇଆ ।

ଏପରି ଅବସ୍ଥାରେ ଯେଉଁମାନେ ବଡ଼ହିତ ବଡ଼ହିତ ଥିଲେ ସେମାନେ ନିଶ୍ଚିତରେ ଅନାଥ । ଆକାଶର ଭେଦୁଅ କାଢ଼ ଓ ପବନ ଯେମିତି ବଡ଼ ସାନ, ଧନୀ ଦରିଦ୍ର, ମୂର୍ଖ ପଣ୍ଡିତର ବିଗୁର ରଖେ ନାହିଁ ସେମିତି ଚଉରାଅଶିର ଲୋକମତ କେବଳ ସୁବିଧା ପାଇଲେ ଯେ କୌଣସି ଅସମର୍ଥ ଉପରେ ଯାହା ଇଚ୍ଛା ତାହା ଅତ୍ୟାଗ୍ଦର କରିବ । ଏଇଆ ମଧ୍ୟ ଘଟୁଛି ।

ରାଜା ଅନ୍ଧ, ପ୍ରଜା ଅନ୍ଧ
ଯାହା କରିବେ ଅଚ୍ୟୁତାନନ୍ଦ ।

ଏଇ ଉକ୍ତି ଏବେ ସାରା ଓଡ଼ିଶାର ଜପାମାଳ । ଏଥିରେ ସର୍ବୋଚ୍ଚ ଲୋକ ଯେମିତି ନୀଚସ୍ଥ ଲୋକ ମଧ୍ୟ ସେମିତି । ଚୂଡ଼ାମଣି ଲୋପ ପାଇ ଯାଇଛି ।

ଏଇ ଶଠି ଛପା ଗଲା ପରେ କେହି ସ୍ୱଚ୍ଛ ମନରେ ପ୍ରକାଶ୍ୟ ବିବୃତ ଦେଇ ନାହିଁ । ଏଇ ଓଡ଼ିଶାର ଶନ୍ମାନାସ୍ପଦ ଓ ଲୋକଙ୍କର ନେତାମାନେ କେହି ପ୍ରକାଶ୍ୟରେ ପ୍ରତିବାଦ ଜଣାଇ ନାହାନ୍ତି । ଅଳ୍ପ କେତେ ଜଣ ନିଜର ଶୁଭଷା ଦେଖାଇବାକୁ ଗୋପନରେ ଏଇ ସନ୍ତପ୍ତ ଦୁଇ ଜଣଙ୍କୁ ଦେଖାକରି କାନକୁହାଳ ପରି ସଂକ୍ଷିପ୍ତ ମନ୍ତବ୍ୟ କରି ଦୋଷକୁ ନିଜ ନିଜର ନିର୍ଦ୍ଦିଷ୍ଟ ଦୁସମନ ନାଁରେ ବୋଳିଛନ୍ତି ।

ଏମାନେ ଓ ଶଠିର ଲେଖକଙ୍କ ମଧ୍ୟରେ ପ୍ରଭେଦ ନାହିଁ । ଏହି ପ୍ରକାରର ଅସତ୍ ବିଗୁରର ମଧ୍ୟ ସର୍ବ ସାଧାରଣରେ ମୂଲ୍ୟାୟନ ହେଉ ନାହିଁ । ସମସ୍ତଙ୍କ ହୃଦୟରେ ଆନନ୍ଦ ଯେ ସେମାନେ ପଟାଏ ପଟାଏ ପାଉଛନ୍ତି । ଯେମିତି ବିହପ ଓ ବଳ ଦେଖାଉ ଥିଲେ ତାହାର ପୁରସ୍କାର ପାଉଛନ୍ତି । ପାଇବା ମଧ୍ୟ ଦରକାର ।



ଏଇ ଚନ୍ଦ୍ରାଧାର ହେଉଛି ଦେଶର ଦୁର୍ଦ୍ଦିନ । ଓଡ଼ିଶାର ଦୁଃସମୟ । ଓଡ଼ିଆ ସମାଜର ଦୁଃଖପ୍ରଦ କର୍କଟ ରୋଗ । ଇଏ ହେଲା ସ୍ୱାଧୀନତାର ବ୍ୟବହାରିକ ପ୍ରୟୋଗ ।

ଅତୀତ ଲୋପ ପାଉଛି ।

ଭବିଷ୍ୟତ ଏବେ ଅନିର୍ଦ୍ଦିଷ୍ଟ

କିନ୍ତୁ ଏଇ ଦୁର୍ଦ୍ଦିନରେ ସମାଜ କାଗଜର ସମ୍ପାଦକ ନିଜର ଚରିତ୍ର ସଂହାର ହେଉ ବା ନ ହେଉ ଅସମ୍ଭବକୁ ସମ୍ଭବ କରି ସେଇ ଛଟି ଦୁଇ ଖଣ୍ଡିର ଫଟୋ ଛପାଇ ତାଙ୍କର ଲକ୍ଷାଧିକ ଗ୍ରାହକ ଓ ଦଶ ଲକ୍ଷାଧିକ ପାଠକଙ୍କୁ ଜଣାଇ ଦେଇଛନ୍ତି ଯେ ତାଙ୍କ ବିରୁଦ୍ଧରେ ଏଇ ପ୍ରକାରର ଅଭିଯୋଗ ଜଣେ କରୁଛି ।

ମୋର ଏଇ ଅର୍ଦ୍ଧଶତାବ୍ଦୀର ଜୀବନକାଳ ମଧ୍ୟରେ କୌଣସି ଇଂରାଜୀ ବା ଭାରତୀୟ ଭାଷାର ସମ୍ବାଦ ପତ୍ରରେ ଏହି ପ୍ରକାରର ନିର୍ଭୀକତା ଦେଖିବାକୁ ପାଇ ନାହିଁ ।

ଏହାର ଉଦାହରଣ ଥିଲେ ମହାତ୍ମା ଗାନ୍ଧୀ । ସେ ନିଜ ବିଷୟରେ ଓ ନିଜର ପରିବାର ବିଷୟରେ ସ୍ପଷ୍ଟ ଭାଷାରେ ତ୍ରୁଟି ବିଚ୍ୟୁତିର ସିଧା ସଳଖ ସମୀକ୍ଷା କରିଥିଲେ ହରିଜନ କାଗଜରେ ।

ରାଜକୋଟ ଅନଶନ କଥା ।

ମହାତ୍ମାଜୀ ରାଜକୋଟର ଠାକୁର ସାହେବଙ୍କ ପାଖରେ ପରାସ୍ତ ହୋଇଗଲେ । ତାଙ୍କର ଆନ୍ଦୋଳନ ବିଫଳ ହେଲା ।

ସେ ଲେଖିଥିଲେ ରାଜକୋଟ ମୋ ପାଇଁ ପ୍ରାଇସଲେସ ଗବେଷଣାଗାର (ଲାବରେଟରି) ହୋଇପଡ଼ିଛି ।

ମହାତ୍ମାଙ୍କୁ ନିର୍ଭୁଲ ବୋଲି ବୁଝାଇବାକୁ ଅନୁବାଦ କରି ଓଡ଼ିଆରେ ସମାଜ କାଗଜ ଛପାଇ ଥିଲା—

ରାଜକୋଟ ମୋ ପାଇଁ ମୂଲ୍ୟହୀନ ଗବେଷଣାଗାର ହୋଇ ପଡ଼ିଛି ।

ଏତିକ ସମୟ ମଧ୍ୟରେ ଚୂଚ ଅଭ୍ରୁଚ ତାହାର ଗତିର ମୋଡ଼ ବଦଳାଇଛି ।

ଶାରଦାବାବୁଙ୍କ ଭାଷାରେ ଲୋକେ ଏହିପରି ସୋଫିଷ୍ଟିକେଟେଡ଼ ହୋଇଗଲେଣି । ଏହି ପ୍ରୟୋଗ ସେ କରିଥିଲେ ତାଙ୍କର ରହଣି ସ୍ଥାନ ମଙ୍ଗଳାବାଗର ବେପାର ସାହିର ଦୁଇଶହ ମିଟର ଦୂରରେ ରହୁଥିବା ଗୋଟିଏ ଗୃହିଣୀ ଶ୍ରୀମତୀ ପୂଣ୍ୟପ୍ରଭା ପଟ୍ଟନାୟକଙ୍କ ସମ୍ବନ୍ଧରେ । ଥରେ ମଧ୍ୟ ସେଠି ସେ ତନଖି କରି ପାରିଲେ ନାହିଁ ।

କାରଣ ସମୟର ଅଭାବ । ନିଜର ବୁଦ୍ଧି ଓ କଳ୍ପନାରେ ଜଣେ ବିଶିଷ୍ଟ ସମ୍ପାଦକ ବିଶିଷ୍ଟ ଓକିଲଙ୍କ ପରି ସବୁ କଥା ଠିଆରି ପାରିବ ।

ଏପରି ଜଣେ ଥିଲେ ବିଶିଷ୍ଟ ବ୍ରିଟିସ ବାରିଷ୍ଟର ମିଷ୍ଟର ନର୍ଟନ । ସେ ଫୌଜଦାରୀ ମକଦ୍ଦମାରେ ଅତ୍ୟନ୍ତ ଦକ୍ଷ ଥିଲେ । କିନ୍ତୁ ତାଙ୍କ ନାମରେ ଦୁର୍ନାମ ଥିଲା ଯେ ସେ ଟଙ୍କା ନିଅନ୍ତି । ମହକିଲଙ୍କଠାରେ କାଗଜ ପଢ଼ନ୍ତି ନାହିଁ ।

ବାରିଷ୍ଟରମାନେ ସିଧା ସଳଖ ମକଦ୍ଦମା ନେଇ ପାରୁ ନ ଥିଲେ । ସଲିସିଟରଙ୍କ ଜରିଆରେ ଟଙ୍କା ପାଉଥିଲେ ଓ ମକଦ୍ଦମାର ନଥି ମଧ୍ୟ ପାଉଥିଲେ ।

ଥରେ ମିଷ୍ଟର ନର୍ଟନ ଗୋଟିଏ ମକଦ୍ଦମାର ସୁଆଲ ଜବାବ କଲି ମହକିଲର ଜିତାପଟ କରାଇ ଦେଲେ । ଟଙ୍କା ପାଇ ନ ଥିଲେ । ବାରିଷ୍ଟର ଟଙ୍କା ତାଙ୍କର ସଲିସିଟର ଠାରୁ ପାଇବ ।

ସେତେବେଳେ ମିଷ୍ଟର ନର୍ଟନ ଟଙ୍କା ମଗାଇଲେ ସଲିସିଟର କହିଲେ ଯେ ସେ ଟଙ୍କାକୁ ନଥି ସାଙ୍ଗରେ ଦେଇଛନ୍ତି ।

ନଥି ଆସିଲା ।

ନଥି ଭିତରେ ମଝିରେ ବାରିଷ୍ଟରଙ୍କର ସୁଆଲ ଜବାବ ଫିସ୍ ରଖା ହୋଇଛି । ବାରିଷ୍ଟର ନଥି ଖୋଲି ନାହାନ୍ତି । ଟଙ୍କା ଦେଖିବେ କିପରି ?

ଏବେ ଓଡ଼ିଶାର ଅଧିକାଂଶ ସାମ୍ବାଦିକ ମନକୁ ମନ ବିଚକ୍ଷଣ ବୋଲି ନିଜର ଅନୁମାନକୁ ବିଶ୍ବର ସତ ବୋଲି ଧରି ନେଇ କାମ ଚଳାଇ ଚାଲିଛନ୍ତି । ଏଣେ ପାଠକ ପ୍ରତିବାଦ ଜଣାଉଛି ଯେ ସତ କଥା ପ୍ରକାଶ ପାଉ ନାହିଁ । କିନ୍ତୁ ଶୁଣିବ କିଏ ? କାହାର ବେଳ ଅଛି ଏଇ ଯୁଦ୍ଧକାଳୀନ କାର୍ଯ୍ୟର ସମୀକ୍ଷା ପାଇଁ ।

ଯୁଦ୍ଧ କ୍ଷେତ୍ରରେ ଜୀଅନ୍ତାକୁ ମଲା ସାର୍ଟିଫିକେଟ ଦେଇଦେଲେ ଆଇନ ସିଦ୍ଧ ହୋଇଗଲା । ସେ ବଞ୍ଚିଥିଲେ ବି ପଚାରେ କିଏ ?

ଏମିତି ହୋଇଥିଲା କେନ୍ଦ୍ରାପଡ଼ା ଅଞ୍ଚଳର ଜଣେ ସୈନ୍ୟ ବିଷୟରେ ।

ଲଦାଖ ଯୁଦ୍ଧ କ୍ଷେତ୍ରରେ ଅନ୍ୟ ତିନି ଜଣଙ୍କ ମଧ୍ୟରେ ଓଡ଼ିଆ ଯୁବକଟି ଆଘାତ ପାଇ ଅଚେତ୍ ହୋଇଥିଲା । ଆଉ ଦୁଇ ଜଣ ଫେରି ଯାଇ ପାରିଲେ । ଓଡ଼ିଆ ଯୁବକ ମୃତ ବୋଲି କେନ୍ଦ୍ରାପଡ଼ାକୁ ସରକାରୀ ଖବର ଗଲା ।

ସ୍ତ୍ରୀ ବିଧବା ହେଲା । ଜ୍ଞାତିମାନେ ଶୁଦ୍ଧି ହେଲେ ।

ସମସ୍ତେ ଯାଇ ବାୟା ବାବାଙ୍କ ପାଖରେ କାନ୍ଦିଲେ ।

—ବାବା, ଆମର ଘର ଉଜୁଡ଼ି ଗଲା ।

—ଆରେ ଏମିତି କାହିଁକି ହେଉଛ ? ସେ ବଞ୍ଚିଛି । ଫେରି ଆସିବ ।

—ସରକାରୀ ଟେଲିଗ୍ରାମ ଖବର ନେଇ ଏସ୍. ଡ଼ି. ଓ. ଆସି କହିଗଲେ ବାବା ।

—ଆରେ, ସିଏ ଆସିବ ।

ଲୋକେ କହିଲେ ବାବା ଗୋଟାଏ ମିଛୁଆ । ଲୋକଙ୍କୁ ଧରି ନେଉଛି ଏମିତି ମନଗଢ଼ା କଥା କହି । ଘୋର ଜାଲିଆ—ଘୋର ବୁଦ୍ଧିଆ —ଘୋର ବଦମାସ । ସାବଧାନ ଥାଅ ।

ବାବା ବି ଏଣେ ବେଦମ୍ । ଲୋକ ଅପବାଦ ତେଜି ଉଠୁଥାଏ । ମଲା ଲୋକକୁ ବଞ୍ଚିଛି ବୋଲି ବାବା ବୟାନ ଦେଉଛି । ସମସ୍ତେ ଠକ— ସବୁ ବାବା, ଭଣ୍ଡ ।

ଏମିତିରେ କିଛି ଦୀର୍ଘ ସମୟ ଗଲା ପରେ ସୈନିକ ଫେରିଲେ ଡାକ୍ତରଖାନାରୁ । ପୁଲିସ ମଧ୍ୟ ମଲା ଲୋକକୁ ଜୀଅନ୍ତା କରି ପାରିବ ନାହିଁ । ପୁଲିସ ଉପରେ ପଲଟଣ । ପୁଲିସ ମଣାଟାଏ ହେଲେ ପଲଟଣ ଗୋଟାଏ ବଡ଼ ଡାଆଁଶ ।

ଜୀଅନ୍ତା ଲୋକ ଫେରିଲା । କିନ୍ତୁ ମିଲଟାରୀ ବହିରେ ସେ ଜୀଅନ୍ତା ଥିବାର ରେକର୍ଡ଼ ଦରଜ ହୋଇ ପାରିଲା ନାହିଁ ।

ଏମିତି ଚାଲେ ସଂସାର ।

ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ପୂର୍ବାଞ୍ଚଳର ପାଇଲଟ୍ ଶ୍ରୀ ସୁଭାଷ କେଶରୀ ରାୟ ନିଖୋଜ ହୋଇଗଲେ ।

ଶ୍ରୀଯୁକ୍ତ ଗିରିକିଶୋର ରାୟ ସେତେବେଳେ ସଂଖ୍ୟାଧିକ ଭବିଷ୍ୟତ ଦ୍ରଷ୍ଟା ଓ ସାଧକଙ୍କ ସହିତ ଯୋଗାଯୋଗ ରଖିଲେ । ଜାତକ କୁଣ୍ଡଳୀ ବହୁତ କୃତବିଦ୍ୟ ଲୋକଙ୍କ ଦ୍ୱାରା ବାରମ୍ବାର ସମୀକ୍ଷା କରା ହେଲା ।

ଜଣେ ବି କେହି କହିଲେ ନାହିଁ ଯେ ସୁଭାଷ ବାବୁ ମରି ଯାଇଛନ୍ତି । ବରଂ ସମସ୍ତେ ବିଭିନ୍ନ ପ୍ରକାରର ଦୃଢ଼ତା ସହିତ ଜଣାଇଲେ ଯେ ସୁଭାଷ ବାବୁ ନିଶ୍ଚିତରେ ବଞ୍ଚି ଥିବାର ସେମାନେ ଜାଣି ପାରୁଛନ୍ତି । ଏଥିରେ ଗିରିକିଶୋର ବାବୁ ବିଶ୍ୱାସ ରଖିଲେ । ସେ ଏହି ସାନ ପୁଅକୁ ଖୁବ୍ ଭଲ ପାଉଥିଲେ ।

ପୁଅ ସୁଭାଷ ବାବୁଙ୍କର ମଙ୍ଗଳ ପାଇଁ ଅସଂଖ୍ୟ ପ୍ରକାରର ପୂଜା, ହୋମ ଆଦି ହେଲା । ପ୍ରତିଦିନ ଗିରିକିଶୋରବାବୁ କିଛି ନା କିଛି ଉପବାସ କରୁଥାନ୍ତି । ସେତେବେଳେ ସେ ଜଣେ ଅତି ଉଚ୍ଚପଦସ୍ଥ ପଦାଧିକାରୀ । ଦେଶୀ ଓ ସାହେବ ହାକିମମାନେ ଗିରିବାବୁଙ୍କର ଅଗାଧ ବିଶ୍ୱାସ ଦେଖି ଯିଏ ଯେତେ ଯାହା ପାରିଲେ ସାହାଯ୍ୟ କରିଥିଲେ । ସୁଭାଷ ବାବୁ ନିଖୋଜ ରହିଗଲେ ଅଦ୍ୟାବଧି—ଜାପାନ ହାରି ପୁଣି ଉଠିଲା । କିନ୍ତୁ ପାଇଲଟ ସୁଭାଷ ମିଳିଲେ ନାହିଁ ।

ମୃତ ଶରୀର ସନାକ୍ତ ହୋଇନାହିଁ । ତେଣୁ ମରିଛନ୍ତି ବୋଲି କେଉଁ ଆଇନ କହିବ ? ପ୍ରମାଣ ଆଇନର ଯୁକ୍ତି ଅନୁସାରେ ସାତ ବର୍ଷ ନିଖୋଜ ରହିଲେ ମୃତ ବୋଲି ଧରାଯିବ ।

କିନ୍ତୁ ଏଇ ସାତ ବର୍ଷ ଭିତରେ ଏଣେ ପୃଥିବୀ ବଦଳି ଯାଉଛି । ମୃତ ଦେହ ମିଳିବା ଓ ମରଣର କାରଣ ଜଣା ଯିବା ପରେ ଜୀବନବୀମା ଓ ସରକାରୀ ଇତ୍ୟାଦି ସଂସ୍ଥାରେ ପ୍ରାପ୍ୟ ଦିଆ ଯିବାର ବ୍ୟବସ୍ଥା ରହିଛି । ଏହି କାରଣରୁ ପୋଷଣୀହୀନର ମରଣ ପରେ ଅନେକ ସ୍ଥାନରେ ଅତି ବଡ଼ ଦୁଃଖ ଦେଖାଦିଏ ।

ଏହି କାରଣରୁ ଆମେମାନେ ଅତି ଭାଗ୍ୟବାନ୍ । ଜଣେ ଭାଗ୍ୟବାନ ନୁହେଁ—ସମସ୍ତେ ଭାଗ୍ୟବାନ । କାରଣ ଖାଇବା ପାଇଁ ଚାଷ ଜମି ଅଛି । ଘରେ ଚାଷ କରିବାକୁ ଲୋକ ଅଛନ୍ତି । ଆଉ ଦାରିଦ୍ର୍ୟ ପାଇଁ ନିଜର ଖରଚ ମଧ୍ୟ କମ୍ ।

ସମସ୍ତଙ୍କର ପ୍ରାର୍ଥନା ଧନୀ ହେବା ପାଇଁ—ବଡ଼ ହେବା ପାଇଁ । କିନ୍ତୁ ଈଶ୍ୱରଙ୍କର ଆଶୀର୍ବାଦ ହେଉଛି ଦାରିଦ୍ର୍ୟ, ଶିକ୍ଷାହୀନତା ଓ ନିଜର ଗ୍ରେଟ୍ ସ୍ଥିତି ।

ଏହାକୁ କୁହାଯାଏ ଯୋଗ । ଆଉ ଯୋଗ ଯେତେବେଳେ ଆମକୁ କ୍ଷତିଗ୍ରସ୍ତ କରେ ସେତେବେଳେ ତା'କୁ କହୁ ଦୁର୍ଯୋଗ । ଆଉ ଯେତେବେଳେ ଡବଲ୍ ଲାଭ ହୁଏ—ତା'କୁ କହୁ ଆମର କାନ୍ତି ଆଗିର ।

ଯୋଗର ଗଣନା ଥାଏ ଗ୍ରହଚକ୍ରରେ । ଆମର ଗୀତା କହୁଛି ଯେ ଘଟଣାମାନ ଘଟି ରହିଛନ୍ତି । ତାହାର ସମୟ ଅନୁସାରେ ଘଟିଥିବା ଘଟଣାମାନ ଘଟୁଥିବା ଘଟଣାର ରୂପ ନେଇ ପହଞ୍ଚେ । ତାକୁ ଆମେ କହୁ—ଲାଭ ଓ କ୍ଷତି ବା ଫଳାଫଳ ।

ଏଇ ଫଳାଫଳ ମଣିଷ ହାତରେ ନାହିଁ । ସେ ହେଉଛି ନିମିତ୍ତ । ସେ କର୍ତ୍ତା ନୁହେଁ । କର୍ତ୍ତା ହେଉଛନ୍ତି ଈଶ୍ୱର । ସେ ତାଙ୍କର ବ୍ୟବସ୍ଥାରେ ବିଭିନ୍ନ ବିଷୟର କ୍ରମ ଓ ଧାରା ଇତ୍ୟାଦି ସଜାଡ଼ି ଦେଇଛନ୍ତି—ପ୍ରାରବ୍ଧ ଓ କ୍ରିୟମାଣ କର୍ମ ଜରିଆରେ ।

ସେ କର୍ମ ବନ୍ଧନ ଆମକୁ ବିଭିନ୍ନ ବ୍ୟକ୍ତିଙ୍କର କର୍ମ ସାଙ୍ଗରେ, ଗୁନ୍ଥି ଦେଇଛି—ଆମର ଦେଖିବାର ଟାଇମ ବୋମା ପରି । ନିର୍ଦ୍ଦିଷ୍ଟ

ସମସ୍ତରେ ଘଟିବ । ଏହାକୁ ବିଜ୍ଞାନର ଉପଯୋଗ କ୍ଷେତ୍ରରେ କୁହାଯାଏ—ଷ୍ଟିଆର ପଦାର୍ଥର କଂପାନୀ ଗାରେଣ୍ଟି ।

କିଏ ନ ଜାଣେ ଏ କଥା ? କପା ଲୁଗା ଛଅମାସ ଯିବ । ଧଳା ଖବରକାଗଜ ଏତିକ ଦିନରେ ନାଲି ପଡ଼ି ପାପର ହୋଇଯିବ । କାସେଟ ଏତିକ ଘଣ୍ଟା ଠିକ୍ ବାଜିବ । କାନ୍ଥର ଟିଉବ ଲାଇଟ ଏତିକ ଘଣ୍ଟା ଜଳିଲା ପରେ ଖରାପ ହୋଇ ଆସିବ ।

ସେମିତି ପ୍ରତ୍ୟେକ ମଣିଷର କର୍ମ ଗୋଟାଏ ପ୍ରକାରର ଯନ୍ତ୍ର ପରି । ସେ ମଧ୍ୟ ଅଏଲ୍‌ ଖୋଜେ । ମଣିଷ ନିଜ ଇଚ୍ଛାରେ କର୍ମ କରି ପାରିବ ନାହିଁ । ପଢ଼ିବାକୁ ବସିଲାବେଳେ ଯଦି ବିଜୁଳି ସରବରାହ ବ୍ୟାହତ ହୁଏ ତେବେ ବହି ପଢ଼ାଯାଇ ପାରିବ ନାହିଁ । ସେମିତି ଯଦି ବତାସ ବୋହିବା ଆରମ୍ଭ କରେ ତେବେ ମଧ୍ୟ ପଢ଼ା ହେବ ନାହିଁ । ଅତି ଆତ୍ମୀୟ ଲୋକ ଯଦି ପହଞ୍ଚେ ତେବେ ପଢ଼ା ହେବ ନାହିଁ ।

ତେଣୁ ଆମେ ସମସ୍ତେ ଜାଣୁ ଯେ ମଣିଷର ଜୀବନ ହେଉଛି ଯୋଗ, ଦୁର୍ଯୋଗ, ସୁଯୋଗ ଇତ୍ୟାଦିରେ ଗୁନ୍ଥା ହୋଇଥିବା ମାଳା । ସେଇ ମାଳାକୁ ଆମେ ଗୁନ୍ଥି ନାହୁଁ । ଈଶ୍ୱର ବା ବିଧାତା ତାଙ୍କର ବିଚାରରେ ମାଳାକୁ ଗୁନ୍ଥି ଦେଇ ଆମକୁ ପିନ୍ଧାଇ ଦେଇଛନ୍ତି ।

ମାଳା ଜପିବା ପରି ଗୋଟିକ ପରେ ଗୋଟିଏ ମାଳି ନେଇ ଅନୁଭବ କରି ଗଲେ ବାଧ୍ୟରେ ଶୈଶବ, ଯୌବନ ଓ ବାର୍ଦ୍ଧକ୍ୟ ଅବା ଗ୍ରୀଷ୍ମ, ବର୍ଷା, ଶିଶିର ସବୁଯାକ ଭୋଗ କରିବାକୁ ପଡ଼ିବ ।

ଏହି ମାଳାର ସମୀକ୍ଷାକୁ ଆମେ ଜ୍ୟୋତିଷ ଶାସ୍ତ୍ରରେ କରୁ । ଭବିଷ୍ୟତ ବା ଆଗତ କଥାର ମାଳାକୁ କହୁଥାଉ ମାଳିକା ।

ତତ୍ପର୍ଯ୍ୟ ହେଉଛି ଯେ ଜୀବନର ଘଟଣାର ମାଳାକୁ ଆମେ ଫଳିତ ଜ୍ୟୋତିଷ ବିଜ୍ଞାନ ଅନୁସାରେ ବୁଝୁ ଓ ମାଳିକାର କଥାର ମାଳାକୁ ନିଜର ବିଶ୍ୱାସ ଓ ଦିବ୍ୟଦୃଷ୍ଟିରେ ବୁଝୁ ।

ବୁଝିବା ଓ ଭୋଗିବା ଏକା କଥା ନୁହେଁ । ବୁଝିଲେ ବି ଭାଗ୍ୟକୁ ଡେଇଁ ଚାଲିଯିବା ସମ୍ଭବ ନୁହେଁ ।

ପ୍ରସିଦ୍ଧ ସୁନାମଧନ୍ୟ ଗଣକ ଶ୍ରୀ ହନୁମାନ ଶାସ୍ତ୍ରୀ ମୋର ଭଣଜା ବୋହୂ ଅମିତାର ଭାଗ୍ୟ ଗଣନା କରି ତାହାର ବିବାହ ଦିନ ସ୍ଥିର କରିଥିଲେ ଏଇ ଚଉରାଣି ମସିହାଠାରୁ ଅପ୍ରେଲ ବାଇଶି ତାରିଖକୁ ।

ପୁଅ ଆପତ୍ତି କରୁଥିଲା ଯେ ଯୋଡ଼ ସଂଖ୍ୟାର ଦିନ ତାକୁ ଶୁଭ ହୁଏ ନାହିଁ । ତେଣୁ ଏକୋଇଶି ବା ତେଇଶି ବା ଅନ୍ୟ ବିଯୋଡ଼ ଦିନରେ ହେଉ ।

ଯେତେ ଯିଏ ଯାହା କହିଲେ ବି ସବୁଠାରେ କିଛି ବ୍ୟବହାରିକ ଦିଗ ଥାଏ । ସେଇଟି ହେଲା ଯେ ଯେଉଁ ଦିନ ବେଶି ବାର ବେଳା ଓ କାଳ ବେଳା ଓ ବିବାହର ଲଗ୍ନ ସମୟ କମ୍ ସେହି ଦିନମାନଙ୍କରେ ଅନ୍ୟ ଜାଗାରୁ ବରକୁ ବରଣ କରି ଆଣିବା, ପହଞ୍ଚାଇ କରି ପାର୍ଟ୍ଟି ନେବା, ଆଉ ବିବାହର ଲଗ୍ନ ସମୟରେ କାମକୁ ଶେଷ କରିବା କଷ୍ଟକର ।

ଏହାଛଡ଼ା ଆଉ ଗୋଟିଏ ବ୍ୟବହାରିକ ଦିଗ ହେଲା ଲଗ୍ନର ସମୟ । ସେ ସମୟ ଯଦି ରାତି ଅଧ ପରେ ପଡ଼େ ତେବେ ବର କର୍ତ୍ତାଙ୍କର ଓ ଅନ୍ୟମାନଙ୍କର ବୟସ, ସ୍ୱାସ୍ଥ୍ୟ ଆଦି ବିଚାରର ବିଷୟ ।

ତେଣୁ ବିଯୋଡ଼ ଦିନ ସୁବିଧା ହୋଇ ପାରିଲା ନାହିଁ । ବ୍ୟବହାରିକ ଦିଗରୁ ଠିକ୍ ହେଲା ସେ ବାଇଶି ତାରିଖ ଦିନ ରାତି ବାରଟା ପରେ ତେଇଶି ତାରିଖ ପଡ଼ି ଯାଉଛି ଓ ରାତି ଗୋଟାଏ ବେଳକୁ ମଧ୍ୟ ଲଗ୍ନ ରହିଛି । ପୁଅର ମନ ରହିଲା ଓ ସ୍ଥାନୀୟ ସୁବିଧା ଅସୁବିଧାର ସମାଧାନ ହୋଇଗଲା ।

ପୁଣି ଶାସ୍ତ୍ରୀଜୀ ପୁଅ ଓ ଝିଅର ଜାତକ ଦେଖି ସମ୍ମତି ଓ ସମର୍ଥନ ଦେଇଥିଲେ । ଝିଅ ସୁଖୀ ହେବ । ଜୀବନ ସୁଖ ଓ ସମୃଦ୍ଧିର ହେବ । ବ୍ୟବହାରିକ ଦିଗରୁ ପୁଅ ଓ ଝିଅ ମଧ୍ୟ ସମସରିସା ।

ଅମିତାର ବାପା ବ୍ରଜବଲ୍ଲଭ ବାବୁଙ୍କର ବିଚାରକୁ ବିଷୟଟି ଛାଡ଼ି ଦିଆଯାଇଥିଲା । ବ୍ୟବହାରିକ ଦିଗରୁ ଏଇଟା ମଧ୍ୟ ସୁବିଧାଜନକ ।

କାରଣ ଏହି ସବୁ ଭଲ ମନ୍ଦର ବିଶ୍ଳେଷଣ ଝିଅ ପକ୍ଷ ଉପଯୁକ୍ତ ଭାବରେ କରିବେ ।

ସେଇଆ ହୋଇଥିଲା । କିନ୍ତୁ ଓଡ଼ିଶା ବନ୍ଦ ଚଉଦ ଅଗଷ୍ଟରେ ବାହାଘରର ଶହେ ପନ୍ଦର ଦିନରେ ଝିଅ ମରିଗଲା ।

ଆଶ୍ଚର୍ଯ୍ୟ କଥା । ମରଣ ହେଲା କେମିତି ? ମରଣର ଯୋଗକୁ ଶାସ୍ତ୍ରୀଜୀଙ୍କ ପରି ନିର୍ଭରଯୋଗ୍ୟ ଗଣନାକାର ଧରି ପାରିଲେ ନାହିଁ କେମିତି ? ଅତି ସନ୍ତାନ-ସ୍ନେହୀ ବ୍ରଜବଲ୍ଲଭ ବାବୁ ଭାଗ୍ୟଗଣନାରେ ଅତ୍ୟନ୍ତ ଆସ୍ଥାବାନ୍ ହୋଇ ମଧ୍ୟ କୌଣସି ଗଣନାକାରଙ୍କଠାରୁ ନିଜର ଆଦରର କନ୍ୟା ଅମିତାର ଏତେ ସ୍ୱଳ୍ପାୟୁ ଥିବାର ଜାଣିଲେ ନାହିଁ କେମିତି ?

ଏଇ ଜାଣି ନ ପାରିବା ହେଉଛି ଯୋଗ—ଜାଣିପାରିବା ମଧ୍ୟ ଯୋଗ । ଜାଣିଲା ପରେ ତାକୁ ବିଶ୍ୱାସ ନ କରିବା ମଧ୍ୟ ଯୋଗ । ଯୋଗକୁ ଭଣ୍ଡୁର କରିବାକୁ ବିଧିବିଧାନ କରାଇ ଯୋଗକୁ ଅତିକ୍ରମ କରିବାର ଇଚ୍ଛା ଓ ମତ ମଧ୍ୟ ହେଉଛି ଯୋଗ ।

ସେଇ କଥା ଗୀତା କହୁଛି । ମଣିଷର ମନର ରଙ୍ଗ ନାହିଁ, ରୂପ ନାହିଁ । ଇଚ୍ଛା ନାହିଁ । ସେହି ମନ ନିର୍ବିକାର । ମନକୁ ଚଳାଏ ନିଜର କାମନା । ସେଥିପାଇଁ ନିଜର କାମନା ହେଉଛି ଦୁର୍ଘଟଣା ଘଟାଉଥିବା ମଟରଗାଡ଼ି ଓ ଯାନବାହନର ଚାଳକ ପରି ଦୁର୍ଘଟଣା ପାଇଁ ଦାୟୀ ।

ଆଉ କାମନା ହେଉଛି ଆମର ପୂର୍ବଜନ୍ମ ଓ ଏଇ ଜନ୍ମର ବିଭିନ୍ନ କାମ ବା କର୍ମର ପରିପ୍ରକାଶ ।

ଗଣନାକାର ଶ୍ରୀ ଗୋଲକବିହାରୀ ଦାସଙ୍କର ଭଣିଜୀ ପ୍ରତିମା ଦେବୀ ବିଭାଘରର ଆଠମାସ ମଧ୍ୟରେ କଲିକତା ମହାନଗରୀରେ ମରିଗଲେ ।

ମାମୁଁ ଜାତକ ଦେଖି ଜାଣିଥିଲେ ଯେ ଏଇ ଜାତକ ଦୀର୍ଘାୟୁ ନୁହେଁ । ହେଲେ ମଧ୍ୟ କୌଣସି କାରଣରୁ ସେ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ପ୍ରକାରର ପରମାୟୁର ହିସାବ କରି ନଥିଲେ ।

ଝିଅର ବିଭାଘରେ ପଦସ୍ଥ ଜୋଇଁଙ୍କର ମର୍ଯ୍ୟାଦା ରଖି ପାଖାପାଖି ଲକ୍ଷେ ଟଙ୍କା ଖର୍ଚ୍ଚ କରିଥିଲେ । ଝିଅର ବାପା ଏଇ ସବା ସାନ ଝିଅଟିକୁ ଖୁବ୍ ଗେହ୍ଲା କରିଥିଲେ । ସେ ମରିଯାଇଥାନ୍ତି ।

ଝିଅ ମଧ୍ୟ ଉଚ୍ଚ ଶିକ୍ଷିତା ।

କଲିକତାରେ ମଧ୍ୟ ଝିଅ ପ୍ରତିମା ଦେବୀଙ୍କର ମାଆ ରହୁଥାନ୍ତି ଝିଅ ପାଖରେ ।

ନୂଆ ନୂଆ ବେଳେ ଘଟକ ଜରିଆରେ ବିଭାଘରେ ପୁଅ ଓ ବୋହୂଙ୍କର ପରସ୍ପର ମନର ମିଳନ ହେବାକୁ ସମୟ ଲାଗେ । ଖାଲି ହାତଗଣ୍ଠି ପକାଇ ଅଗ୍ନି ପାଖରେ ସାତପାଦ ଚାଲିଲେ ପୁରୁଷ ଓ ସ୍ତ୍ରୀଙ୍କର ମନ ମିଶେ ନାହିଁ । ବିଶେଷରେ ଯେଉଁଠି ପୁରୁଷ ଓ ସ୍ତ୍ରୀ ପ୍ରାପ୍ତ ବୟସ ପଚିଶି ପାଖାପାଖି ହୋଇଥାନ୍ତି ସେଠି ସଂପର୍କର ତାତ୍କାଳିକ ମୋହ ଓ ନିଜ ନିଜର ଚରିତ୍ରର ସମୀକ୍ଷା ମଧ୍ୟ ତାହାର ପ୍ରଭାବ ପକାଏ ।

ଘଟକ ମାଧ୍ୟମରେ ହେଉଥିବା ବିବାହରେ ଉଚ୍ଚଶିକ୍ଷିତ ଓ ପଦସ୍ଥ ସ୍ୱାମୀ ସ୍ତ୍ରୀ ଭିତରେ ବନ୍ଧୁତା ଗଢ଼ି ଉଠିବା ସାମାନ୍ୟ ସମୟ ଖୋଜେ ।

ହାଣ୍ଡିରେ ପରିବା ଚଢ଼େଇ ଦେଇ ନିଆଁ ଜାଳିଲେ ଆମର ଇଚ୍ଛା ଅନୁସାରେ ପରିବାଟା ଖାଇବାଯୋଗ୍ୟ ହୋଇଯିବ ନାହିଁ । ସେଥିପାଇଁ କିଛି ସମୟ ଦରକାର । ସେଥିରେ ମଧ୍ୟ ଦୁଇ ପକ୍ଷର ମୁରବି ଓ ଶୁଭାକାଂକ୍ଷୀଙ୍କର ସହଯୋଗ ଦରକାର ।

ପରିବା ଚୁଲିରେ ବସିଲାବେଳେ ଯଦି ଘରେ ପାଟି ହେବ ଯେ ଚଞ୍ଚଳ ଓହ୍ଲେଇ ରଖିଦେଇ ଚା' କପେ ବା ଓଭାଲଟିନ ଦୁଧ କପେ ମତେ ଦେଲେ ମୁଁ ବାହାରକୁ ଯିବ । ତେବେ ତରକାରି ଯାହା ଯେମିତି ହବ ସବୁ ରାନ୍ଧୁଣିଆ କହି ଦେଇପାରିବେ । ରେଡ଼ିଓ ଗୀତ ବା ଟି.ଭି.ର ଛବି ଆଗରେ ବସି ପଢ଼ା ବହିକୁ ଚାହିଁ ପରୀକ୍ଷା ଦେବାକୁ ଯିବା ପରି ।

କିନ୍ତୁ ସମାଜ ଏମିତି ହୋଇଛି ଯେ କାହାରିକୁ ତର ସହୁ ନାହିଁ । ସମସ୍ତେ ଯେ କୌଣସି ପ୍ରକାରରେ ବିଭାଘର ସାରିଦେଇ ନିଜ ନିଜର ମତକୁ ନେଇ ପରଘରେ ଚଳିବାକୁ ତିଆରି ।

ଝିଅଘର ଖୋଜୁଛନ୍ତି ଯେ ବାହାଘର ପରେ ପରେ ଜୋଇଁ ଝିଅକୁ ପାଇ ଆକାଶର ଚନ୍ଦ୍ରକୁ ପାଇଲା ପରି ହେବ । ଆଉ ଝିଅର ମାଆ ଝିଅ ଜୋଇଁଙ୍କୁ ନିଜର କାନିରେ ବାନ୍ଧି ଦେଇ ନିଜ ଘରେ ରଖିବ ।

ଏଇ ପ୍ରକାରର ଅହେତୁକ ଇଚ୍ଛା ବିରୁଦ୍ଧରେ ଆମର ଓଡ଼ିଆ ସମାଜରେ ନିୟମ ଚଳୁଥିଲା ଯେ ବାହାଘରର ବର୍ଷ ପୂରିବା ଯାଏ ଝିଅ ତାହାର ବାପ ଘରକୁ ଯିବ ନାହିଁ । ଏବେ ସମସ୍ତେ ତାଙ୍କର ଅସାମାନ୍ୟ ବିଚୁରରେ ଏହି ନିୟମକୁ ଭାଙ୍ଗି ଦେଉଛନ୍ତି ।

ପ୍ରତିମା ଦେବୀଙ୍କ ପାଇଁ ମାମୁଁ ଗୋଳକ ବାବୁ ଦୁଇଟି ଶ୍ରେଷ୍ଠ ବ୍ୟବସ୍ଥା ଦେଇଥିଲେ—ଗୋଟିଏ ମହା ମୃତ୍ୟୁଞ୍ଜୟ ମନ୍ତ୍ରକୁ ଜପିବା ପାଇଁ ଓ ଆଉଟି ହେଲା ଗୋଟାଏ ମୁକ୍ତା ପିନ୍ଧିବା ପାଇଁ ।

କିନ୍ତୁ ଏଇ ଦୁଇଟିଯାକ ଗୋଳକ ବାବୁଙ୍କର ଭଉଣୀ ଓ ଭାଣିଜୀ ପାଳିଲେ ନାହିଁ । ପାଳିଥିଲେ କ'ଣ ହୋଇଥାନ୍ତା ସେଇ ପ୍ରଶ୍ନର ଉତ୍ତର କେହି ଦେଇପାରିବେ ନାହିଁ ।

ଏଇ ପ୍ରତିକାରକୁ ଗ୍ରହଣ କରିବା ଓ ନକରିବାର ମାନେ ହେଉଛି ଯୋଗ । ଆଉ ଯୋଗର ଅର୍ଥ ହେଲା ଅବଶ୍ୟ ଘଟିବାକୁ ଥିବା କଥା ।

ଆମର ଶାସ୍ତ୍ର ବି ସେଇଆ କହୁଛି ଯେ ସଂସାର ମଧ୍ୟରେ କାଳ ବା ଦୁର୍ଯୋଗ ବା ଧ୍ୱଂସ ବୁଲୁଥିଲେ ବି ପ୍ରାଣୀ ଦେଖି ନ ଦେଖିଲା ପରି ରହେ ।

କଟକର ଜଣେ ଜିଲ୍ଲା ଜଜ୍‌ଙ୍କର ପଦସ୍ଥ ଜୋଇଁ । ଝିଅର ଦୁଇଟି ପିଲା । ସଂସାର ଭଲରେ ଚାଲୁଛି ।

ଘରକୁ ଜଣେ ଭଲ ଜ୍ୟୋତିଷ ଆସିଥିଲେ । ବାପା ଯେତେବେଳେ ଜଣେ ପ୍ରତିଷ୍ଠିତ ଜଜ୍ ସେତେବେଳେ ଉପଯୁକ୍ତ ଲୋକ ଆସିବା କଥା ।

ଜଜ୍ ସାହେବଙ୍କର ଝିଅଟି ଗଣକଙ୍କୁ ପଚାରିଲା—କୁହନ୍ତୁ ମୁଁ ବିଧବା ହେବି କି ?

ଗଣନା କରି ଉତ୍ତର ଦେଲେ—ମାଆ ! ତୁମର ପରମାୟୁ ଅଧିକ । ଅନେକ ବର୍ଷ ପରେ ତୁମର ବୈଧବ୍ୟ ଯୋଗ ପଡ଼ିପାରେ ।

କଥା ଏତିକି । ଝିଅଟି ସେତିକିରେ ମନ ଭିତରେ ବିଚଳିତ ହେବାକୁ ଆରମ୍ଭ କଲା । —କ'ଣ ସେ ବିଧବା ହୋଇଯିବ ? ସଧବାରେ ମରିପାରିବ ନାହିଁ ?

ଏଇ ଏତିକି କଥା ଶୁଣି ସେ ଧନ୍ଦ ହେବାରେ ଲାଗିଲେ । ଦିନେ ସେ ନିଦ ବଟିକା ଖାଇଦେଲେ । ଆତ୍ମହତ୍ୟା ପରେ ସେ ସଧବାରେ ତ ମରିବେ ।

ଜଣାପଡ଼ିଲା । ଚିକିତ୍ସାରେ ସେ ଭଲ ହୋଇ ଗଲେ । ତେଣିକି ତାଙ୍କର ମନରେ ଆସିଲା ଯେ ଗଣକ ଠିକ୍ କହିଛନ୍ତି—ତାଙ୍କର ଅବଶ୍ୟ ବୈଧବ୍ୟ ଯୋଗ ଅଛି ।

ସେ ପୁଣି ଥରେ ନିଦ ବଟିକା ଖାଇଲେ । କିନ୍ତୁ କେମିତି କ'ଣ ହେଲା—ଜଣା ପଡ଼ିଗଲା । ଅଳ୍ପରେ ସେ ବିପଦରୁ ପାର ହୋଇଗଲେ । କିନ୍ତୁ ସେ ସ୍ଥିର ନିଶ୍ଚିତ ହୋଇଗଲେ ଯେ ଅବଶ୍ୟ ବିଧବା ହୋଇଯିବେ ।

ବିଧବା ହୋଇ ବଞ୍ଚି ରହିବାରେ ଲାଭ କ'ଣ ? ଯଶ ନାହିଁ । ଅଛି କେବଳ ଅପଯଶ । ଶୁଭକର୍ମରେ ତାଙ୍କର ସ୍ଥାନ ନାହିଁ । ବିଧବାର ଗୌରବ ନାହିଁ ।

ତୃତୀୟ ଥର କେମିତି କେମିତି ସେ ଯଥେଷ୍ଟ ପରିମାଣରେ ନିଦ ବଟିକା ଯୋଗାଡ଼ କରି ଖାଇଦେଲେ । ସେଇଥର ସେ ଶେଷ ବିଦାୟ ନେଲେ ।

ଗଣକଙ୍କର ଗଣନା ଭୁଲ୍ ହେଲା । ଗଣକ ଆସିଥିବାରୁ ତାଙ୍କ ମନରେ ସଧବା ମୃତ୍ୟୁ ଯୋଗ ବା ଅହିଅସୁଲକ୍ଷଣୀ ଯୋଗକୁ ଧରିବା ପାଇଁ ଇଚ୍ଛା ହେଲା । ନିଜର ପିଲା ଦୁଇଟିଙ୍କ କଥା ମଧ୍ୟ ସେ ଭାବି ପାରିଲେ ନାହିଁ । ଗଣନା ଭଲ ହୋଇଗଲା ।

ମୋର ମନରେ ପ୍ରଶ୍ନ ଆସିଥିଲା ଯେ ମୋର ଭଣଜା ବୋହୂ ଅମିତା ମରିଗଲା କାହିଁକି ? ଭଉଣୀ ଘରୁ ଜାତକ ମଗାଇଲି ସମୀକ୍ଷା କରାଇବା ପାଇଁ । ସମୁଧି ବ୍ରଜବଲ୍ଲଭ ବାବୁ ଜାଣିପାରିଲେ ନାହିଁ କେମିତି ? ଆଉ ହନୁମାନ ଶାସ୍ତ୍ରୀ ବୁଝି ଠଉରେଇ ପାରିଲେ ନାହିଁ କାହିଁକି ?

ପ୍ରତିମା ଦେବୀଙ୍କର ମୃତ୍ୟୁରେ ମାମୁଁ ଗୋଲକ ବାବୁ କହୁଥିଲେ ଯେ ଦୀର୍ଘାୟୁ ନ ହେଲେ ବି ପ୍ରତ୍ୟେକ ନାରୀର କାମନା ଥାଏ ପତ୍ନୀ ହେବାକୁ ! ତେଣୁ ପରମାୟୁ ବିଚାର କରି ବିବାହ ବନ୍ଦ କରିବା ଉଚିତ ନୁହେଁ ? ବିଭାଘର ହୋଇଯାଉ । କିନ୍ତୁ ଆଠମାସରେ ଝିଅଟି ଚାଲି ଯାଇ-ପାରେ—ଏପରି ସନ୍ଦେହ ଆସିଲା ନାହିଁ ତ ।

ଏମିତି କ'ଣ ଶାସ୍ତ୍ର ଯେ ଘଟଣା ଘଟିଲା ପରେ ମଧ୍ୟ ବୁଝା ଯିବ ନାହିଁ । ଅମିତାର ଜାତକ ଅଣାଇଲି । ଜନ୍ମ ସମୟ ନାହିଁ । କୁଣ୍ଡଳୀ ଅଛି । ସମୁଧିଙ୍କୁ ଜାତକ ମାଗିଲେ ସେ ବିରକ୍ତ ହେବେ । ତେଣୁ ମିଳିଥିବା ତଥ୍ୟକୁ ନେଇ ବିଶିଷ୍ଟ ଗଣକ ପଣ୍ଡିତ ଚନ୍ଦ୍ରମଣି ତ୍ରିପାଠୀ, ପଣ୍ଡିତ ସତ୍ୟନାରାୟଣ ମିଶ୍ର ଓ ଶ୍ରୀ ଗୋଲକ ବିହାରୀ ଦାସଙ୍କୁ ପରମାୟୁ ସମୀକ୍ଷା ଓ ଚଉରାଅଣି ମସିହାର ବିବାହ ଯୋଗ ଓ ଜୀବନର ରୂପରେଖ ପଚାରିଲି ଆବଶ୍ୟକୀୟ ଶୁଳ୍କ ଦେଇ ।

ଜନ୍ମ ଫେବ୍ରୁୟାରୀ ବାଆର ୧୯୬୧
ଫାଲଗୁନ କୃଷ୍ଣପକ୍ଷ ତ୍ରୟୋଦଶୀ
ଅର୍କବାରରେ ପୂର୍ବାରେ ।

ଟିପପ୍ଣୀରୁ ମିଳିଲା

ରାଶି ନକ୍ଷତ୍ର ୨୦/୯ । ଲଗ୍ନ—ଧନୁ ।
ଲଗ୍ନରେ ଶନି ଚନ୍ଦ୍ର, ବୃହସ୍ପତି ।
କୁମ୍ଭରେ ରବି, ବୁଧ, କେତୁ ।
ମୀନରେ ଶୁକ୍ର । ମିଥୁନରେ ମଙ୍ଗଳ । ସିଂହରେ ରାହୁ । ଛଅଟି ଘର—ମେଷ, ବୃଷ, କର୍କଟ, କନ୍ୟା, ତୁଳା, ବିଛା, ମକର ରାଶିରେ ଗ୍ରହ ନାହାନ୍ତି ।

ଜନ୍ମକୁ ଶୁକ୍ର ମହାଦଶା ବାକିଥିଲା ପାଞ୍ଚମାସ ଅଠର ଦିନ ।

ଏହାର ଉପରେ ପଣ୍ଡିତ ଚନ୍ଦ୍ରମଣି ତ୍ରିପାଠୀ ଓ ଶ୍ରୀ ଗୋଲକ ବିହାରୀ ଦାସ ଗଣନା କରି ଯାହା ସବୁ କହିଲେ ସେଥିରେ ଯେ ଅମିତା ଅଗଷ୍ଟ ଚଉଦ ଚଉରାଅଶି ମସିହାରେ ମରିପାରେ—ଏତିକ କହିଲେ ନାହିଁ ।

ହେଇଠୁ ପଣ୍ଡିତ ସତ୍ୟନାରାୟଣ ମିଶ୍ରଙ୍କୁ ଦେଲି । ସେ ଜାତକ ସଂଶୋଧନ କଲେ । ଶୁକ୍ର ମା ୫ । ୮ ଦିନ ଅବଶିଷ୍ଟ ନୁହେଁ । ଏହା ପଣ୍ଡିତ ମିଶ୍ରଙ୍କ ଗଣନାରେ ହେଲା ଶୁକ୍ର ମହାଦଶା ଅବଶିଷ୍ଟ ବ ୨।୦।୧୫ ଦିନ ଆଉ ଧନୁରେ ଲଗ୍ନ ସାଙ୍ଗରେ କେବଳ ଚନ୍ଦ୍ର । ଶନି ବୃହସ୍ପତି ମକରକୁ ଯିବେ । ଏହାଛଡ଼ା ହରସେଲ, ୟୁରେନସ, ନେପଚ୍ୟୁନ ଆଦି ଯୋଗ କଲେ ।

ତାଙ୍କୁ ମଧ୍ୟ କେବଳ ଚଉରାଅଶି ମସିହା କଥା ଓ ବିବାହଯୋଗ ଓ ବିବାହ ଜୀବନ ପଚରା ଯାଇଥିଲା । ସେ ପଞ୍ଚାଅଶି ଯାଏ କିଛି ଗଣନା ମଧ୍ୟ ଦେଲେ । କିନ୍ତୁ ମରଣ କଥା କହିଲେ ନାହିଁ ।

ପ୍ରତ୍ୟେକଙ୍କୁ ଫଳ ଶୁଣିବା ପରେ ଜାତକ ମରିଯାଇଥିବାର ଜଣାଇଥିଲି । ପଣ୍ଡିତ ତ୍ରିପାଠୀ କହିଥିଲେ ଯେ ଲଗ୍ନରେ ପ୍ରମାଦ ଅଛି, ଧନୁ ଲଗ୍ନ ନହୋଇ ବିଛାଲଗ୍ନ ହେବ । ଗୋଲକ ବାବୁ କହିଲେ ଯେ ଲଗ୍ନ ଧନୁ ନ ହୋଇ ମକର ହେବା ସମ୍ଭବ । ପଣ୍ଡିତ ମିଶ୍ରଙ୍କୁ ସୁବିଧାରେ ତାହିକ ସମୀକ୍ଷା କରିବାକୁ ଅନୁରୋଧ କରିଥିଲି ।

ମୋର ମନରେ ପ୍ରଶ୍ନ ଆସେ ଯେ ଗୋଟିଏ ଜାତକର ଗଣନାରେ ଏତେ ଅନୁଭବୀ ଓ ସିଦ୍ଧ ଗଣକମାନେ ଓ ମୋର ଅତ୍ୟନ୍ତ ବିଚକ୍ଷଣ ସମ୍ବନ୍ଧୀ ବ୍ରଜବଲ୍ଲଭ ବାବୁ ପ୍ରମାଦରେ ପଡ଼ିଲେ କେମିତି ? ପଡ଼ିଗଲେ ତ ନିଶ୍ଚିତରେ ।

ସମ୍ବନ୍ଧୀ ଅତ୍ୟନ୍ତ ତଳୁ ଉଠି ଉଠି ପ୍ରଥମ ଶ୍ରେଣୀ ଅଫିସର ହେଲେଣି । ଘରଦ୍ୱାର ପାଇଁ ସେ ସରକାରରୁ ଋଣ ନେଇ କଷ୍ଟି ଶୁଝୁଛନ୍ତି । ତାଙ୍କ ମନରେ ସାମାନ୍ୟ ସନ୍ଦେହ ଆସିଥିଲେ ସେ ଖୁସିରେ

ଓ ପରସ୍ପର ରାଜରେ ବିବାହକୁ ଅପ୍ରେଲରୁ ଦଶ ଆଠମାସ ଗଡ଼ାଇଦେଇ ପାରିଥାନ୍ତେ ।

କିନ୍ତୁ ଯୋଗ ବାଟ କଡ଼ାଇ ନେଇଛି । ଭବିତବ୍ୟ ଘଟିଛି ।

ଝିଅର ଶାଶୁ ଶ୍ରୀମତୀ ପୂର୍ଣ୍ଣପ୍ରଭା ନିର୍ଭର କରି ରହିଗଲେ ସମ୍ବନ୍ଧୀ ବ୍ରଜବାବୁଙ୍କ ଉପରେ । ସେ ଝିଅର ମଙ୍ଗଳ ପାଇଁ ଅବଶ୍ୟ ଉପଯୁକ୍ତ ସମୀକ୍ଷା କରାଇବେ ଓ କରାଇବାର କଥା ।

ପୁଅର ଯୋଡ଼ ବିଯୋଡ଼ ଦିନର ଆପତ୍ତି ମଧ୍ୟ ଉଭୟେ ମିଶି ଭାଙ୍ଗିଦେଲେ । ପୁଅଟି ତାହାର ସ୍ତ୍ରୀର ଅକାଳ ମରଣରେ ଚିରଦିନକୁ ସନ୍ତପ୍ତ ହୋଇ ରହିଲା । ତାହାର ମନରୁ ଏହି ଦାଗ କେବେହେଲେ ଲିଭିବ ନାହିଁ ।

ଅପ୍ରେଲ ବାଇଶି ଚଉବିଶି ମସିହା ।

ଓଡ଼ିଶାର ବୋର୍ଡ଼ ଅଫ୍ ରେଭିନ୍ୟୁର ଷ୍ଟାଣ୍ଡିଂ କାଉନସେଲ ଶ୍ରୀ ଧ୍ରୁବଚରଣ ସାହୁଙ୍କର ବଡ଼ ପୁଅ ଆସାମର କାନପୁର କଲେଜର ଅଧ୍ୟାପକ ଲଲ୍ଟେନ୍ଦୁ ସାହୁଙ୍କର ଘରେ ବାହାଘର । ଆଗଦିନ ବରଯାତ୍ରୀରେ ଯିବା କଥା । କେତେକ ବିଶିଷ୍ଟ ଆଡ଼ଭୋକେଟ ବନ୍ଧୁ ମତେ ନେବା ପାଇଁ ଜିଗର କରୁଥାନ୍ତି ।

ମୁଁ ମନା କଲି । ଭଣଜା କହିଯାଇଛି, ମୁଁ ତାହା ବାହାଘରକୁ ନ ଗଲେ ସେ ମନଦୁଃଖ କରିବ ।

ସେମାନେ କହିଲେ ଯେ ମୋର ଭଉଣୀ ମତେ ମାମୁଁ ଡାକରା କରି ନ ଥିଲା ବେଳେ ଓ ବିଭାଘର ପ୍ରସ୍ତାବରେ ସାମାନ୍ୟ ମତାମତ ଓ ସହଯୋଗ ଲୋଡ଼ି ନ ଥିଲା ବେଳେ ମୋର ଭଣଜା ବିଭାଘରେ ଲଣ୍ଡିଭଣ୍ଡି ହେବା ଅପ୍ରାସଙ୍ଗିକ ।

ଯାହାହେଉ ସିଏ ଯେପରି ଭଲ କି ମନ୍ଦ ବ୍ୟବହାର ଦେଖାଇ ଥାନ୍ତୁ ନିଜର କର୍ତ୍ତବ୍ୟ ସଂପାଦନ ନ କରିବା ଭୁଲ । ସମ୍ବନ୍ଧୀ ବ୍ରଜବାବୁ ମଧ୍ୟ ମୋ' ସହିତ ଉପରଠାଉରିଆ ସହଯୋଗ ରଖି ନଥାନ୍ତି । କାରଣ

ଯେ ବୁଝିଥିଲେ ଯେ ଏଇ ବାଘଘରେ ମୁଁ ଜଣେ ଅଦରକାଣ୍ଡ ଓ ଅପ୍ରାସଙ୍ଗିକ ଲୋକ ।

ବାଘଘରର କାଇ ଅନୁକୂଳରେ ମୁଁ ନିମନ୍ତ୍ରିତ ନୁହେଁ । ବାଘଘରର ଆୟୋଜନରେ ମୁଁ ଅପ୍ରାସଙ୍ଗିକ । ବାଘଘର ନିର୍ବାଚନରେ ମୁଁ ଅଦରକାଣ୍ଡ ଲୋକ । ମଙ୍ଗନହାଣ୍ଡି ବସାଇବାରେ ମୋର ସ୍ତ୍ରୀ ଶୈଳ ଦେବୀଙ୍କର ପ୍ରୟୋଜନ ପଡ଼ିଥିଲା ।

ମୁଁ ଯେତେବେଳେ ଏକକ । ମୋର ଲୋକ ତା'ଠାରୁ କମ୍ । ଏକା ମୁଁ ଜାଣିଛି ମୋର ଯାନଘଇ ମଧ୍ୟ ମୋର ପାହାଡରେ ।

ଏଇଟା ତ ଚଉଘଅଣିର ସଂସାର । ପ୍ରତ୍ୟେକ ନିଜ ନିଜର ଆୟୁ ବ୍ୟୟରେ ସ୍ୱୟଂ-ସଂପୂର୍ଣ୍ଣ । ତେଣୁ ଜ୍ଞାତି ବା ବନ୍ଧୁ ତାଲିକାର ନ୍ୟାୟରେ ବାହାର ହେବାର କଥା ।

ଏଇ ନ୍ୟାୟରେ ଆମେମାନେ ଅପ୍ରାସଙ୍ଗିକ । କିନ୍ତୁ ପ୍ରାସଙ୍ଗିକ ହେଉଛନ୍ତି ବୋଧ୍ୟ ଅମିତାର ପରିବାର । ଅମିତାର ମଉଷାମାନେ ହେଲେ ବାଛି ।

ସେମାନେ ହେଲେ ପୁରୀର ଏ. ଡ଼ି. ଏମ୍. ଶ୍ରୀ ଗୁରୁପ୍ରସାଦ ମହାନ୍ତି ଓ ତାଙ୍କର ସ୍ତ୍ରୀ ଜ୍ୟୋତ୍ସ୍ନା ଦେବୀ । ସେ ସାହିତ୍ୟିକ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କର ଦୂର ସଂପର୍କୀୟ । ଗୁରୁବାବୁ ପୁରୀ ବଡ଼ ଦେଉଳର ଗୃହ ବର୍ଷ ପ୍ରଶାସନରେ ଥିଲେ ।

ଜଣେ ମାମୁଁ ଶ୍ରୀ ଶରତଚନ୍ଦ୍ର କାନନ୍‌ଗୋ । ସେ ଭୁବନେଶ୍ୱର ଶିକ୍ଷା କଲେଜର ପ୍ରଥମ ଶ୍ରେଣୀ ଅଫିସର ଓ ଅଧ୍ୟକ୍ଷ ।

ଆଉ ଜଣେ ମଉସା ଶ୍ରୀ ରଜନୀ ରହାଣ ରାୟ ଓଡ଼ିଶା ହାଇକୋର୍ଟ ବାରର ପୂର୍ବତନ ସଂପାଦକ ଓ ଏବେ ଓଡ଼ିଶା ସରକାରଙ୍କର ହାଇ-କୋର୍ଟରେ ଗଭର୍ଣ୍ଣମେଣ୍ଟ ଆଡ଼ଭୋକେଟ୍ ।

ଆଉ ଜଣେ ହେଲେ ପୁରୀର ଏବେ ଥିବା ତହସିଲଦାର ଶ୍ରୀଯୁକ୍ତ କାନନ୍‌ଗୋ ।

ଆଜ ଜଣେ ମାମୁଁ ଭୁବନେଶ୍ୱର ଅବକାଶ ପ୍ରାପ୍ତ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ରାମଚନ୍ଦ୍ର କାନୁନ୍‌ଗୋ । ତାଙ୍କର ସାଧୁତା ଓ ସ୍ପଷ୍ଟବାଦିତା ପାଇଁ ଯଥେଷ୍ଟ ସୁନାମ ଅଛି ।

ଏହାଛଡ଼ା ଏମିତି ଛୁଦାଛନ୍ଦ ହୋଇ ଗୋଟିଏ ଟ୍ରେଣ୍ଟକାଟିଆ ଦଳ—କଟକ ଜିଲ୍ଲାରୁ ଛିଗିଆ ପରି ।

ଅମିତାକୁ ଯୋଗ କରାଇ ନେଇଥିଲା ମଣ୍ୟପତ୍ନୀଙ୍କର ଘରକୁ । ମଣ୍ୟପତ୍ନୀଙ୍କର ମୁଖ୍ୟର ଘୋଡ଼ାବଜାରରେ ଖଣ୍ଡେ ଗ୍ରେଟ ଘର ଅଛି । ଯେମିତି ମୁଢ଼ବର୍ଷ ଭଡ଼ାରେ ଥିଲେ ଅମିତାର ମଉସା ଗୁରୁପ୍ରସାଦବାବୁ ଓ ମାଉସୀ ଜ୍ୟୋତ୍ସ୍ନାଦେବୀ ।

ଜ୍ୟୋତ୍ସ୍ନାଦେବୀ ଏଇ ଅମିତାକୁ ବୋହୂ କରି ପଠାଇଥିଲେ ମଣ୍ୟପ୍ରଭାଦେବୀଙ୍କ ଘରକୁ । ଗୁରୁବାବୁ ଏଥିରେ ଏକମତ ନ ଥିଲେ । କାରଣ କରଣ ସମାଜରେ ସ୍ତ୍ରୀର ମତ ହେଲା ସୁପ୍ରିମ କୋର୍ଟ ରାୟ ।

ଏଥିପାଇଁ ଇଂରାଜୀରେ ହେନ୍‌-ପେକଡ୍‌ ବା ମାଇପବୋଲା ମାଇକିଆଙ୍କର ସଂଖ୍ୟା ଓଡ଼ିଆ କରଣ ସମାଜରେ ବହୁତ ବେଶି । ତାଲିକା କରିବାକୁ ଓଡ଼ିଶା ସରକାରଙ୍କର ସିଭିଲ ଲିଷ୍ଟ ସାହାଯ୍ୟ ନେଲେ ବହୁତ ନାମ ମିଳିଯାଏ ।

କିନ୍ତୁ ଏମାନେ ସ୍ତ୍ରୈଣ ନୁହନ୍ତି । ସ୍ତ୍ରୈଣ ହେବା ପାଇଁ ଅଧିକ ପୁରୁଷକାର ଆବଶ୍ୟକ । ମାତ୍ର ମାଇପବୋଲା ହେବା ପାଇଁ ଅଳ୍ପ ପୁରୁଷକାର ଯଥେଷ୍ଟ । ବଙ୍ଗଳାରେ ମାଇପ ବୋଲା ଶବ୍ଦ ନାହିଁ ।

ଏଇ ହେନ୍‌-ପେକଡ୍ ଶବ୍ଦ ବୁଝିବାକୁ ପୁରୀ ଜିଲ୍ଲା ଜାଆଁଳା ସହରର କରଣ ଶ୍ରୀମତୀ ପ୍ରେମଲତା ଦେବୀ ଗୋଟିଏ ସୂତ୍ର ଜାଣନ୍ତି ।

ସୂତ୍ର ହେଲା—ଟିକା ବା ଟିଙ୍ଗାମାନେ ମୋଟେ ହେନ୍‌-ପେକଡ୍‌ ହୁଅନ୍ତି ନାହିଁ । ଯେଉଁମାନେ ଘଣ୍ଟି ଗୁଲିଖ ପଢ଼ି ଗୁଲିଖିରେ ସଂସାରକୁ ଜିତି ଯିବାକୁ ଉଦ୍ୟମ କରନ୍ତି ସେଇମାନେ ବାଧ୍ୟରେ ହେନ୍‌-ପେକଡ୍ ହୁଅନ୍ତି—ଓକିଲ ବା ପୁଲିସର ପୁନଫର୍ମ ପରି ।

ମୋର ସମୁଧି ବ୍ରଜବାବୁ ଥିଲେ ବହପୁଣି ଓ ବୁଦ୍ଧିମାନ ଶ୍ରେଣୀର କରିତକର୍ମା ଲୋକ । ତେଣୁ ତାଙ୍କର ପରିବାରର କେନ୍ଦ୍ରବିନ୍ଦୁ ଥିଲେ

ସ୍ତ୍ରୀ— ମୋର ସମଦୁଣୀ ରାଇବୋହୂ ଶାନ୍ତଦେବୀ । ସମୁଧି ତାଙ୍କର ବଡ଼ଭାଇ । ତେଣୁ ଯୋଗାଯୋଗ ମଧ୍ୟ ଆଦର୍ଶ ।

ମଞ୍ଜୁଷା ଗୁରୁବାବୁ ବିରକ୍ତ ହୁଅନ୍ତି ଘରବାଲି ପୁଣ୍ୟପ୍ରଭାଦେବୀଙ୍କର ବ୍ୟବହାରରେ । ନଡ଼ିଆ ଗଛରୁ ନଡ଼ିଆ ପାଚି ନେଲାବେଳେ କହନ୍ତି— ଯାହା ନଡ଼ିଆ ଝଡ଼ିଥିବ ସେତକ ତୁମେ ରଖ । ମୁଁ ଗଛ ନଡ଼ିଆଯାକ ପାଚି ନେଉଛି । ହେଲେ ବି ଶାଶୁର ଏଇ ଗ୍ରେଟଲେକିଆ କଥାକୁ ଧରିଲେ ଅମିତାର ଭବିଷ୍ୟତ ଭଲ ହେବ ନାହିଁ ।

ଜ୍ୟୋତ୍ସ୍ନା ଦେବୀଙ୍କର ପ୍ରଗାଢ଼ ଯତ୍ନ ଓ ଚେଷ୍ଟାରେ ଓ ଭଉଣୀ କୁନ ଦେବୀ ଓ ଭଣୋଇ ଶ୍ରୀ ବିଜନ୍ ରାୟଙ୍କର ସମର୍ଥନରେ ଅମିତା ଚଳିତ ବୈଶାଖ ମାସରେ ପୁଣ୍ୟପ୍ରଭା ଦେବୀଙ୍କର କଟକ ମଙ୍ଗଳାବାଗ କୋଠାକୁ ତାଙ୍କର ଏକମାତ୍ର ପୁଅ ଶୁଭେନ୍ଦୁ ଓରଫ ଜୀବନ ଓରଫ୍ ବବିର ସ୍ତ୍ରୀ ହୋଇ ଆସିଲା ।

ସ୍ତ୍ରୀ'କୁ କହନ୍ତି ଯୋଡ଼ । ଏଇ ଯୋଗ ଉପରେ ବିଧାତା ଲଗାଇ-ଥାନ୍ତି । ତେଣୁ ବିବାହକୁ ସବୁ ଦେଶରେ କୁହାଯାଏ ମଣିଷର ନିୟତି, ଅଦୃଷ୍ଟ ଓ ଭାଗ୍ୟ । ଏହାର କର୍ତ୍ତା ସ୍ୱୟଂ ଈଶ୍ୱର ।

ଫ୍ରାନ୍ସର ପ୍ରେସିଡେଣ୍ଟ ଜେନେରାଲ ଡଗଲଙ୍କୁ ହତ୍ୟା କରିବା ପାଇଁ ସେ ତାଙ୍କ ଘରକୁ ଗଲାବେଳେ ସବୁ ନିରାପତ୍ତା ବ୍ୟବସ୍ଥାକୁ ଅଚଳ କରି ପାରିସ ସହରର ଉଡ଼ାଜାହାଜ କଣ୍ଟ୍ରୋଲର ଗୋଟିଏ ନେଳ ସିଟ୍ରନ ମଟରଗାଡ଼ିରୁ ମେସିନ୍‌ଗନ୍‌ରୁ ଗୁଳି ଗ୍ରାଇ ଦେଇଥିଲେ । ଡଗଲ ବଞ୍ଚି ଯାଇ କହିଲେ— ଦେଖିଲ ତ ସେମାନେ ସିଧା ନିଶାଣ ଲଗାଇ ପାରୁ ନାହାନ୍ତି ।

ହତ୍ୟାକାରୀ ଧରା ପଡ଼ିଲେ ତାଙ୍କର ଦ୍ୱାରଜରେ ଥିବା ଟିକୁରି କାଗଜରେ ଥିବା ଗୋଟିଏ ଟେଲିଫୋନ ନମ୍ବରରୁ । ଏଇ ଅଫିସର ନିଜ ଘରୁ ସେଦିନର ପ୍ରେସିଡେଣ୍ଟ ଡଗଲଙ୍କର ଯିବା ରାସ୍ତାର ସୂଚନା ଦେଇଥିଲେ ।

ପୁଲିସ ଯେତେବେଳେ ସେଇ ବିମାନବାହିନୀର ପଦସ୍ଥ ଅଫିସରଙ୍କୁ ବନ୍ଦୀ କରି ଜିଗଲଙ୍କର ସ୍ତ୍ରୀଙ୍କୁ ଓ ପରିବାରକୁ ଦେଖାଇ ପଚାରିଲେ—ଯେ ଏମାନେ ସ୍ୱାମୀ ଓ ପିତାଙ୍କୁ ହରାଇଲେ ତୁମର ପ୍ରତିକ୍ରିୟା କ'ଣ ହୁଅନ୍ତା ?

ବନ୍ଦୀ ଅଫିସର ଉତ୍ତର ଦେଇଥିଲେ ଯେ ସ୍ତ୍ରୀ ତାହାର ସ୍ୱାମୀର ଭାଗ୍ୟ ଡୋରରେ ବନ୍ଧା । ସେଥିରୁ ସେ ଲାଭ ଯେମିତି ପାଏ, କ୍ଷତି ମଧ୍ୟ ସେମିତି ପାଇବ ।

କିନ୍ତୁ ଅନଗ୍ରସର ରାଜ୍ୟରେ ସ୍ତ୍ରୀର ଭାଗ୍ୟଡୋରରେ ପୁରୁଷ ବନ୍ଧା । ସେ ସେଇ ସ୍ତ୍ରୀ ପାଇଁ ଯେମିତି ବଢ଼ିପାରେ ସେମିତି ମଧ୍ୟ ଛୁଡ଼ିପାରେ ।

ଫରାସୀ ସମ୍ରାଟ ନେପୋଲିଅନଙ୍କୁ ହତ୍ୟା କରିବାକୁ ଅଣା ହୋଇଥିବା ଲୋକେ ଧରା ପଡ଼ିଲା ପରେ ଫାସି ଦଣ୍ଡ ପାଇଲେ ।

ସେମାନେ ଯାଇ ଧରିଲେ ସମ୍ରାଜ୍ଞୀ ଯୋସେଫିନଙ୍କୁ । ସେମାନେ ସର୍ବସ୍ୱାନ୍ତ ହୋଇଯିବେ ।

ସ୍ୱାମୀଙ୍କର ହତ୍ୟାକାରୀଙ୍କ ତରଫରୁ ସ୍ତ୍ରୀ ଯୋସେଫିନ୍ କ୍ଷମା ପ୍ରସ୍ତାବ ନେଇ ଦେଲାବେଳେ ନେପୋଲିଅନ୍ ସ୍ତ୍ରୀ'ଙ୍କୁ ରୁକ୍ଷ କହିଲେ—ତୁମେ ମଧ୍ୟ ମୋର ହତ୍ୟାକାରୀଙ୍କର ଦଳରେ । କିନ୍ତୁ ସେ ଯୋସେଫିନଙ୍କୁ ଏତେ ଶ୍ରଦ୍ଧା କରୁଥିଲେ ଯେ ନିଜର ହତ୍ୟାକାରୀମାନଙ୍କର ଫାସି ଦଣ୍ଡକୁ ରଦ୍ଦ କରିଦେଲେ ।

ସମ୍ରାଜ୍ଞୀ ଯୋସେଫିନଙ୍କ ପରି ଓଡ଼ିଶାରେ ଅସଂଖ୍ୟ ନାରୀ କରଣ ସମାଜରେ ଭରି ରହିଛନ୍ତି । ସମସ୍ତେ କଟକର ପଟ୍ଟଛୋଟ ବା ପୁରୀର ମାଲୁଦ ପରି ଗ୍ରେଟ ଗ୍ରେଟ ରାଜ୍ୟ ସ୍ଥାପନ କରି ଶାସନ ଚଳାଇଛନ୍ତି । ଫଳରେ ଓଡ଼ିଶାର ଶାସନ ହେଉଛି ମାହାନ୍ତିଆଣୀମାନଙ୍କର ଶାସନର ଗୋଟିଏ ଫେଡ଼େରେସନ—କୋ-ଅପରେଟିଭର ଆପେକସ୍ ସୋସାଇଟି ପରି ।

ଏମାନେ କ୍ଷମତା ବିସ୍ତାର କରନ୍ତି ବାହାଘର ଜରିଆରେ । ଜୋଇଁଙ୍କୁ ନିଜ ଘରକୁ ଘୋଷାରି ଆଣିବା ହେଲା ଏମାନଙ୍କର କାମ ।

କଟକ ବସ୍ତିରେ ଏମିତି ହୁଏ। ଯଦି କେହି ସାହି ବସ୍ତିର ମେସ୍ ଅବା ଘରର ଅନ୍ତେବାସୀ ସାହିର ଝିଅକୁ ଛୁଇଁଦେଲା ତେବେ ହଠାତ୍ ଦେଖାଯାଏ ଯେ ସେଇ ଦୋଷୀର ଯେ ବୋହୂ ହେଇଗଲାଣି ଚବିଶି ଘଣ୍ଟା ମଧ୍ୟରେ। ତେଣିକି ସେ ସରକାରରୁ ଅସବର୍ଣ୍ଣ ବିବାହ ପାଇଁ ପ୍ରଯୁକ୍ତ ଆଇନରୁ ଅନୁଦାନ ନେଉଥାଉ।

ଏଇ ବାହାଘରଟିରେ ସେହିପରି କ୍ଷମତା ବିସ୍ତାର ପାଇଁ କୌଶଳ ଦୁଇ ସମ୍ଦୁଣୀ ଅର୍ଥାତ୍ ନିତ୍ୟପ୍ରଭା ଦେବୀ ଓ ଶାନ୍ତି ଦେବୀଙ୍କ ମଧ୍ୟରେ ସୂତ୍ରପାତ ହେଲା। ଆଦ୍ୟ ଅବସ୍ଥା ହେଲା ଶୀତଳ ଯୁଦ୍ଧ।

ପ୍ରତ୍ୟେକ ଶୀତଳ ଯୁଦ୍ଧର କୌଶଳୀ ସେନାପତି ଥାନ୍ତି। ସାମାଜିକ ଶୀତଳ ଯୁଦ୍ଧରେ ସେଇପରି ସେନାପତିଦ୍ଵ ଓ ବୁଦ୍ଧିଦାତା ଗଣେଶ ହେଲେ କଟେଶର ଓକିଲ।

କାରଣ ସେମାନେ ଆଇନ ଜାଣନ୍ତି। ଆଇନକୁ ବୁଝିଛନ୍ତି। ଆଇନକୁ ଚଳାଇବାରେ ପାରଙ୍ଗମ।

ଆମେ ଯେମିତି ନନାଙ୍କୁ ଡକାଇ ତାଙ୍କର ଶ୍ଲୋକ ଓ ସ୍ତବ ଦ୍ଵାରା ତେତିଶି କୋଟି ଦେବତା ଓ ତେତିଶି କୋଟି ବାହନ, ଗୃମୁଣ୍ଡା ଓ ଖୁଦୁରିଆ ଦେବତାଙ୍କୁ ପାଞ୍ଚ ତିନି ଟଙ୍କା ଦକ୍ଷିଣା ଦେଇ ଧରି ନେଉ ସେମିତି ସମାଜିକ ଶୀତଳ ଯୁଦ୍ଧରେ ନନା ହେଲେ କଳାକୋଟିଆ ଲୋକ।

ଏଇ ଓକିଲ ପରାମର୍ଶ ନିଆ ହୋଇଥିଲା ଚଳିତ ବୈଶାଖ କୃଷ୍ଣ ସପ୍ତମୀ ତିଥିରେ ବାଇଶି ଅପ୍ରେଲ ଚଉରିଅଣିର ବିଭାଘରରେ।

କାରଣ ହେଲା ଯେ ବର ପକ୍ଷ ଅପେକ୍ଷାକୃତ ସ୍ୱଚ୍ଛଳ ଓ ଉତ୍ତରାଧିକାରୀ ଭାଇ ଓ ଭଉଣୀ। ବର ପିତା ନଜର ଓ ପୈତୃକ ଉଭୟ ଦିଗରୁ ଭଲରେ ଚଳନ୍ତି। କନ୍ୟା ପକ୍ଷର ଅବସ୍ଥା ଅପେକ୍ଷାକୃତ ମନ୍ଦ ଓ ଉତ୍ତରାଧିକାରୀ ନଅ ଜଣ—ଚାରି ପୁଅ ଓ ପାଞ୍ଚ ଝିଅ। ଏପରି ଅବସ୍ଥାରେ ଜୋଇଁ ବା ବରକୁ ଅକତିଆର କରି କବଜରେ ରଖିଲେ କ୍ଷତି ନାହିଁ। ବରଂ ଲାଭ ଅଛି।

ତେବେ ଝିଅ ବାହାଘରର ଦୁଇ ତିନି ଦିନ ପରେ ତାହାକୁ ଅଶାନ୍ତି ଲାଗୁଛି ବୋଲି ଲେଖିବା ଆରମ୍ଭ କରୁ। ପ୍ରତିଦିନ ଲେଖି ଚିଠି

ପଠାଇବା ସୁବିଧା ନ ହେଲେ ଏକାଠି ବାହାଘରକୁ ଆସି ଦଶ ପନ୍ଦର ଖଣ୍ଡ ଚିଠି ଲେଖି ଦେଇ ଯାଉ ।

ଘଟଣା ଅବିଶ୍ୱାସ ହେଲେ ବି ସତ । ଝିଅ ତାହାର ଶହେ ଦିନର ବିବାହିତ ଜୀବନରେ ଏକଷଠି ଖଣ୍ଡ ଚିଠି ଲେଖିଲା କେମିତି ? ଆଉ ଏତେ ଚିଠିରେ ତାହାର ବୁକୁଥିବା ଅଭିଯୋଗ ପାଇ ବାପଘର ପ୍ରତିକାର ନ ଖୋଜିଲେ କାହିଁକି ? ଏହାକୁ ବୁଝିବାକୁ କେତେକ ତାରିଖ ଆବଶ୍ୟକ

(କ) ୨୨।୪।୮୪—ବିବାହ

(ଖ) ୨୪।୪।୮୪—ପୁଅ ବୋହୂ ଓ ବନ୍ଧୁମିଳନ

(ଗ) ୨୫।୪।୮୪—ଚତୁର୍ଥୀ

(ଘ) ୨୯।୪।୮୪—ଅଷ୍ଟମଙ୍ଗଳା

(ଙ) ୭।୫।୮୪—ଷୋଳମଙ୍ଗଳା

(ଚ) ୧୮।୫।୮୪—ସତେଇଶି ଦିନ ହେଲା ।

(ଛ) ୧୮।୫ରୁ ୨୦।୭।୮୪—ପୁଅ ବୋହୂ ଦିଲ୍ଲୀ ରହଣୀ

(ଜ) ୨୦।୭।୮୪—ବିଭାଘରର ନବେ ଦିନରେ କଟକକୁ ଫେରିଲା ବି.ଏ. ପରୀକ୍ଷା ଦେବା ପାଇଁ ।

(ଝ) ୨୦।୭।୮୪ରୁ ୨୫।୭।୮୪—ପୁଅ କଟକରେ ଥିଲା ।

ତେଣୁ ମୋଟ ଭୋଗ ହେଲା ଚଉରାନବେ ଦିନ । ଏଥିରୁ ପୁଅ ବୋହୂ ଏକାଠି କଟକ ଶାଶୁଘରେ ରହିଲେ ପଞ୍ଚାନବେ ଦିନ । ଏହା ମଧ୍ୟରେ ପର୍ବ-ପର୍ବାଣି ରହିଲା ।

(ଟ) ସାବିତ୍ରୀ ଅମାବାସ୍ୟା—୩୦।୫।୮୪ ପୁଅ ବୋହୂ ଦିଲ୍ଲୀରେ ।

(ଠ) ରଜ ସଂକ୍ରାନ୍ତି—୧୩।୬।୮୪ରୁ ୧୫।୬।୮୪ ପୁଅ ବୋହୂ ଦିଲ୍ଲୀରେ ।

(ଡ) ଶ୍ରୀଗୁଣ୍ଡିଚା ୩୦।୬।୮୪ । ବାହୁଡ଼ା ।।୭।୮୪ ।

(ଢ) ଝୁଲଣ ପୂର୍ଣ୍ଣିମା ୧୧।୮।୮୪ ଝିଅ କଟକରେ ଶାଶୁଘରେ । ଏରୂପେ ବାହାଘର ସର୍ବମୋଟ ଶହେ ଏଗାର ଦିନରୁ ପୁଅ ବୋହୂ

ଏକଷ ରହିଲେ ପଞ୍ଚାନବେ ଦିନ । ଶାଶୁ ବୋହୂ ଏକାଠି ରହିଲେ ଷୋହଳ ଦିନ ।

(ଣ) ୧୭।୮।୮୪ ବୋହୂର ମୃତ୍ୟୁ । ବାହାଘର ସେତେବେଳକୁ ହୋଇଛି ଶହେ ପନ୍ଦର ଦିନ ଓ ବୋହୂ ଶାଶୁ ସାଙ୍ଗରେ ଚଳିଛି ମୋଟେ ପଚିଶି ଦିନ ।

ତାହାହେଲେ ଏକତେଁଠି ଖଣ୍ଡ ଚିଠି ଶାଶୁର ଅତ୍ୟାଚାର ବିଷୟରେ ଲେଖା ହେଲା କିପରି ଓ କ'ଣ ପାଇଁ ? ଏଗୁଡ଼ିକ ତେବେ କ'ଣ ଦିନକାଦିନର ଡାଏରି ନା ଚିଠି ? ସେଥିରେ ଅବଶ୍ୟ ଫେରନ୍ତା ଉତ୍ତର ଉଲ୍ଲେଖ ରହିବା କଥା ।

କିନ୍ତୁ କାହିଁ ? ଓକିଲ ପରାମର୍ଶ ଦେଲେ ଓ କାମ କରାଇଲେ । କଲାବେଳେ ନିଜର ପରାମର୍ଶର ତ୍ରୁଟି ବିଚ୍ୟୁତିକୁ ତଉଲିବାକୁ ଭୁଲିଗଲେ ।

ଏହି ପ୍ରକାରର କୌଶଳୀ ବନ୍ଧୁ ପାଇବାକୁ କୁହାଯାଏ ଦୁର୍ଯୋଗ । କାରଣ ବାହୁଡ଼ା ଦଶମୀ ବେଳକୁ ଝିଅ ଜୋଇଁ ଏକାଦି-ନମ ଓ ଏକସ ପ୍ରବାସରେ ଥିଲାବେଳେ ଝିଅ ଘରୁ ପ୍ରଚାର ଆରମ୍ଭ ହୋଇଥାଏ ଯେ ନିଷ୍ଠୁର ଶାଶୁର ନିର୍ଯ୍ୟାତନାରେ ଝିଅ ଆଉ ଚଳି ପାରିବ ନାହିଁ ।

ସମାଜର ଲୋକେ ଏହି ପ୍ରକାରର କୌଶଳପୂର୍ଣ୍ଣ ପ୍ରଚାରକୁ ବିଚାରକୁ ନ ନେଲେ ଏକ ନୂଆ ସାମାଜିକ ରୋଗ ତାହାର ନଖ ଦାନ୍ତ ଦେଖାଇ ମାଡ଼ି ଆସିବ । ଆଉ ବିଭାଘର ପାଇଁ ବାଜା ବଜନ୍ତ୍ରୀ ଆଲୁଅ ଆତସବାଜି ଓ ଅନ୍ୟାନ୍ୟ ସାମାଜିକ ଉତ୍ସବ ରଖିବାର କାରଣ ରହିବ ନାହିଁ ।

କରଣ ଝିଅମାନେ ବ୍ରାହ୍ମଣ ଓ ବ୍ରାହ୍ମଣ ଇତର ଅନ୍ୟାନ୍ୟ ବଡ଼ ଓ ସାନ ପାଟକରେ କେଉଁଠି ଘର୍ଯ୍ୟା ଓ କେଉଁଠି ହୃଦୟବିଦାରଣୀ ହୋଇ ରହିବାର ଦେଖାଗଲାଣି ଓ ଶୁଣା ଗଲାଣି ।

ପାଟକମାନଙ୍କୁ ଏହିପରି କାର୍ଯ୍ୟର କାରଣ ପଚାରିଲେ କହନ୍ତି ଯେ ମାହାନ୍ତିଆଣୀମାନଙ୍କର ଗୋଟିଏ ବିଶେଷ ସୁଗନ୍ଧ ଅଛି । ତାଙ୍କର

ବାବଦାର ଘର ଉଚ୍ଚାଟକାଙ୍କ ଆମୋଦ । ଲେଖକ ରାୟ ବାହାଦୁର ଲକ୍ଷ୍ମୀକାନ୍ତ ଚରଣ ପଟ୍ଟନାୟକ ପଚିଶ ବର୍ଷ ତଳେ ବହି ଲେଖି ଯାଇଥିଲେ ।

ମାହାନ୍ତିମାନଙ୍କର ଢମ
ଉଖୁଡ଼ା ହାଣ୍ଡିକ ଛଅଣା ପଇସା
ହାଣ୍ଡି ଯାକ କୋଟିକମ ।

କଥାଟା ଚଉରଅଣି ମସିହାରେ ଆସି ଅନେକ ରୂପରେ ତାହାର ସତମିଛ ଦେଖାଉଛି ।

ଏଇ ପଚିଶ ବର୍ଷ ଭିତରେ ଓଡ଼ିଶାର ମାଟି ଉପରେ ଅନେକ କଥା ଘଟିଯାଇଛି ।

ତିରିଶି ମସିହାର ସ୍ୱାଧୀନତା ଆନ୍ଦୋଳନରେ କଟକର କଲେଜିଏଟ୍ ସ୍କୁଲର ଦଶମ ଶ୍ରେଣୀର (ଏବେ ଯେଉଁଟି ନବମ) ଫେବୃଆରୀ ମାସରେ ସ୍କୁଲର କୃତୀ ଛାତ୍ର ଶ୍ରୀ ବିନୋଦ ଚନ୍ଦ୍ର କାନନଗୋ, ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ସ୍କୁଲ ଛାଡ଼ି ଚାଲିଗଲେ । ସ୍କୁଲର ପଶ୍ଚିମ ତରଫ ଛାତ୍ରାବାସ ଫାଟକରେ ଶ୍ରୀମତୀ ମଙ୍ଗଳା ଦେବୀ ପ୍ରମୁଖ ତିନ ଚାରି ଜଣ ଅଟକ କରୁଥାନ୍ତି ।

ଉପରୋକ୍ତ ପିଲାମାନେ ଫେରିଲେ ହେଡ଼ମାଷ୍ଟର—ବିଲାତ ଫେରନ୍ତା ଶ୍ରୀ ସଚ୍ଚି ରାୟଙ୍କ ପାଖକୁ । ହେଡ଼ମାଷ୍ଟର କହିଲେ ଯେ ପିଲମାନେ ଯାଆନ୍ତୁ ରାଜକୃଷ୍ଣ ବୋଷ ବାବୁଙ୍କ ପାଖକୁ ଓ ତାଙ୍କର ମୁରବିମାନେ ଆସନ୍ତୁ ତାଙ୍କ ପାଖକୁ ।

କେହି କାହା ପାଖକୁ ଗଲେ ନାହିଁ । ଯିବା ଲୋକ ଅଣଲେଉଟା ହୋଇ ଚାଲିଗଲେ ଓ ଶେଷରେ ଓଡ଼ିଶାର କୃତୀ ଓ କୃତବିଦ୍ୟ ହୋଇ ଇତିହାସରେ ସ୍ଥାନ ପାଇପାରିଲେ ।

ଯେଉଁମାନେ ଯାଇ ନପାରିଲେ ତାଙ୍କ ଭିତରେ ଥିଲେ ଶ୍ରୀଯୁକ୍ତ ଦୟାନିଧି ଚଉଧୁରୀ (ବୋଲଗଡ଼—ପୁରୀ) ଓ ଶ୍ରୀଯୁକ୍ତ ସୁକାନ୍ତ କିଶୋର ରାୟ (ବଗଲଗଡ଼—କଟକ) । ଏଥିରୁ ଜଣେ ହେଲେ ଓଡ଼ିଶାର ପ୍ରଧାନ

ବହୁରୂପୀ ଓ ଆଜି ଜଣେ ହେଲେ ଓଡ଼ିଶାର ବନବିଭାଗର ସର୍ବୋଚ୍ଚ କର୍ତ୍ତା ।

କିନ୍ତୁ ଉପରକୁ ଯାଇପାରିଲେ ଶ୍ରୀ ବିନୋଦ କାନନ୍‌ଗୋ ତାଙ୍କର ଜ୍ଞାନମଣ୍ଡଳକୁ ନେଇ ।

ତେଣୁ ଯୋଗକୁ ସୁଯୋଗ ବା ଦୁର୍ଯୋଗ କ'ଣ ବୋଲି କହିବାକୁ ହେବ ସ୍ଥିର କରିବାକୁ ଦରକାର ଗୋଟାଏ ମଣିଷ ଜୀବନର ସମ୍ପୂର୍ଣ୍ଣ ଜୀବନକାଳ । ଏହା ହେବା ଉଚିତ୍ ଅନ୍ତତ କମ୍‌ସେ ଷାଠିଏବର୍ଷ ।

କିନ୍ତୁ ହୁଏ ବୋଧ ଅମିତା ମାତ୍ର ସାଢ଼େ ତେଇଶି ବର୍ଷରେ ଏହି ହସ କାନ୍ଦର ପୃଥିବୀରୁ ବିଦାୟ ନେଇଗଲେ ଅପମୃତ୍ୟୁର ସିଢ଼ିଟିକୁ ଧରି । ଯାହାଙ୍କ ଜୀବନ ଦୀପ ଲିଭିଗଲା ଓଡ଼ିଶା ବନ ଦିନ—ଅଗଷ୍ଟ ଚଉଦ ଚଉରାଅଶି ମସିହାରେ ।

ସେମିତି ଦିନେ କ୍ଷୀରସ୍ଥାନ ପାଟଣା ଓ କଟକର ଟ୍ରେନିଂ କଲେଜର ପ୍ରିନ୍ସିପାଲ ଉଇଲିୟମ ଜଲିପ୍ରାମସନ୍ ହେଣ୍ଡରସନ (ଉଇଲିଉ ଉଇଲିଅମ୍ ହେଣ୍ଡରସନ) ତିରିଶି ମସିହାରେ ଆପଣା ଦେହରେ କିରୋସିନ ଢାଳି ନିଆଁ ଲଗାଇ ଜଳିଯାଇଥିଲେ—ଖରାବେଳଟାରେ ।

କଲେଜଏଟ୍ ସ୍କୁଲର ଖେଳଛୁଟି ପରେ ସ୍କୁଲ ଆରମ୍ଭ ହେଉଥାଏ । ଖବର ଆସିଲା ଯେ ପ୍ରିନ୍ସିପାଲ ସାହେବ ଆତ୍ମହତ୍ୟା କରିଛନ୍ତି ।

ପ୍ରିନ୍ସିପାଲ ଆଜିର କଟକ ଆଡ଼ିସନାଲ ଜଜ୍‌କୋର୍ଟର ବଙ୍ଗଳାରେ ଗୋଟିଏ ଖୁଣ୍ଟକୁ ଧରି ଠିଆ ହୋଇଥାନ୍ତି । ମୁଣ୍ଡ ତଳକୁ ଝୁଙ୍କି ପଡ଼ିଥାଏ ସାମାନ୍ୟ । ସେ କହୁଥାନ୍ତି ପିସ୍ (ଶାନ୍ତି) ପିସ୍ (ଶାନ୍ତି) ।

କ'ଣ ହେଲା ? କ'ଣ ହେଲା ?

କଟକ ଶାଳଗାଁର ଡାକ୍ତର ରାଘବାନନ୍ଦ ଦାସ ସେତେବେଳେ ଦଶମ ଶ୍ରେଣୀର ଛାତ୍ର । ସେ ଯାଇ କାହାଠାରୁ ବୁଝି ଆସିଲେ ଯେ ଏଥିପାଇଁ ସ୍କୁଲର ହେଡ଼ମାଷ୍ଟର ଓ ଭୂଗୋଳ ମାଷ୍ଟରଙ୍କର କଳକଜିଆ ଦାୟୀ ।

ଶ୍ରୀ ସଚ୍ଚି ରାୟଙ୍କର ସହପାଠୀ ଥିଲେ ଶ୍ରୀ ପଦ୍ମଚରଣ ପଟ୍ଟନାୟକ। ସଚ୍ଚି ବାବୁ ଇତିହାସ ଓ ପଦ୍ମଚରଣ ବାବୁ ଭୂଗୋଳରେ ପାରଦର୍ଶୀ ଥିଲେ। ସଚ୍ଚିବାବୁ ବିଲାତ ଗଲେ ଓ ପଦବାବୁ ଓଡ଼ିଶାରେ ରହିଗଲେ। ପୁଣି ଦେଖାହେଲା କଟକର ସବୁ ପ୍ରଧାନ ସ୍କୁଲ୍ ରେଭେନ୍ସା କଲିଜିଏଟ୍ ସ୍କୁଲରେ।

ସେତେବେଳେ ଶିକ୍ଷା ବିଭାଗ ପାଟନାରେ। କିନ୍ତୁ ଓଡ଼ିଶାର ସରକାରୀ ମାଷ୍ଟ୍ରମାନଙ୍କର ହେଡ୍‌ମାଷ୍ଟର ହେବା କଟକ ଟ୍ରେନିଂ କଲେଜ ପ୍ରିନ୍‌ସିପାଲଙ୍କର ଇଚ୍ଛାର ଦ୍ୱାରା ସମ୍ଭବ ହେଉଥିଲା।

ସଚ୍ଚିବାବୁ ପଦବାବୁଙ୍କର ପ୍ରମୋସନକୁ ଆପତ୍ତି କରୁଥିଲେ। ପଦବାବୁ ହେଣ୍ଡରସନ୍ ସାହେବଙ୍କୁ ବୁଝାଇ ଦେଇଥିଲେ ଯେ ସମବୟସୀ ସ୍କୁଲ ଗୁରୁଙ୍କର ମତାମତ ନେଇ ପଦାଧିକାରୀ ଭାବରେ ସଚ୍ଚିବାବୁ କାଲ୍ପନିକ ଯୁକ୍ତିରେ ତାଙ୍କର ସହପାଠୀର ପଦୋନ୍ନତିକୁ ବାଧା ଦେଉଛନ୍ତି।

ସାହେବ ବୁଝିଲେ ଯେ ପଦବାବୁଙ୍କର ଯୁକ୍ତି ବଳବାନ୍। ସେ ପଦବାବୁଙ୍କର ପଦୋନ୍ନତିକୁ ମଞ୍ଜୁର କଲେ ଓ କଟକ କଲିଜିଏଟ୍ ସ୍କୁଲର ଶିକ୍ଷକ ପଦବୀରୁ ଉଠାଇ ବାଲେଶ୍ୱର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଭାବରେ ଉପସ୍ଥାପିତ କଲେ।

ପଦବାବୁ ହଠାତ୍ ଯାଇ ଗୁଳି ଦିଆ ନିଆ କରି ସଚ୍ଚିବାବୁଙ୍କୁ କହିଲେ—ଦେଖ, ଏବେ ତୁମେ ଜଣେ ଓ ମୁଁ ଜଣେ ହେଡ୍‌ମାଷ୍ଟର।

ସଚ୍ଚିବାବୁ ସାଙ୍ଗେ ସାଙ୍ଗେ ଯାଇ ହେଣ୍ଡରସନ ସାହେବଙ୍କୁ ଏଇ ଅପ୍ରୀତିକର କଥାଟି ଜଣାଇଲେ।

କଥା ମାତ୍ର ସେତିକି।

ସାହେବ ନିଜେ ଠିକ ପାଇଥିବାରୁ ବିବେକର କଷାଘାତ ସହି ନ ପାରି ତାଙ୍କର ଶୀତ ପୋଷାକରେ କରେସିନ ତେଲ ନିଆଁ ଲଗାଇ-ଦେଲେ। ଲୋକେ ଆସିଲାବେଳକୁ ସେ ଆଉ ଫେରିବା ବାଟରେ ନାହାନ୍ତି।

କଲିଜିଏଟ୍ ସ୍କୁଲ ପାଖରେ ଘଟଣା। ମେଡ଼ିକାଲ ସ୍କୁଲ ତିନି ମାଇଲ ବାଟ। ସେତେବେଳେ କଟକରେ ଘୋଡ଼ାଗାଡ଼ି କେତୋଟି ଓ

ଯାନବାହନ କେବଳ ବଳଦଗାଡ଼ି । ବିଜୁଳି ନାହିଁ । ଟେଲିଫୋନ ନାହିଁ । କିଛି ନାହିଁ ।

ସମସ୍ତଙ୍କ ଆଖି ଆଗରେ ସାହେବ ଚାଲିଗଲେ । କାହାରି ଉପରେ ଦୋଷାରୋପ ନାହିଁ । ଯିଏ ଯାହାର ବାଟରେ ଯାଇଛନ୍ତି । ହେଣ୍ଡରସନ୍ ମୃତ୍ୟୁପଥର ଯାତ୍ରୀ । ସେତେବେଳେ ତାଙ୍କର ବୟସ ପାଖାପାଖି ପଚାଶ ବର୍ଷ ।

ସେ ଲେଖିଥିବା ଟ୍ରାନ୍ସଲେସନ୍ ଓ ରିଟ୍ରାନ୍ସଲେସନ୍ ଓ ସଂକ୍ଷିପ୍ତ-କରଣ ପାଇଁ ସୂନବାଚିତ ଇଂରାଜୀ ଗଦ୍ୟାଂଶ ଏଇ ପଚାଶ ବର୍ଷ ଭିତରେ ଖାଲି ଯେ ହଜି ନାହିଁ ଅଦ୍ୟାବଧି ତାହାର ଭୁଲମାସ୍ତ ଲେଖା ବାହାରି ନାହିଁ ।

ଠିକ୍ ସେହିପରି ତଇଁରିଅଣି ମସିହାରେ ଅଗଷ୍ଟ ଚଉଦ ତାରିଖ ଖରାବେଳରେ ମୋର ବୋହୂ ଅମିତା ଜଳଜଳ ଆସି ମା-ମା ଡାକିଲା ଦୋତାଲା ସିଡ଼ି ଉପରେ ।

ସେଦିନ ମଙ୍ଗଳବାର । ବୋହୂ ଅମିତାର ମଙ୍ଗଳ ମହାଦଶା ଚାଲିଥାଏ । ଦଶାଟି ଥିଲା ଅଶୁଭ । ସେଇ ଅଶୁଭ ଲଗ୍ନ ଦିନ ଅଢ଼େଇ-ଟାରେ ଓହ୍ଲେଇ ଆସିଥିଲା ସେ ଗ୍ରେଟିଆ ଘରଟିକୁ ?

ଅମିତାର ଶାଶୁଘର ଉପରେ ବଖୁରିଏ ପୁଅ ବୋହୂଙ୍କ ପାଇଁ । ଘରକୁ ଲାଗି ପାଇଖାନା ଆଦି ।

ତଳେ ଦୁଇ ବଖରା ଓ ଗୋଟିଏ ଖାଇବା ଘର ଓ ରୋଷେଇ ଘର । ବଖରାକୁ ଲାଗି ପାଇଖାନା ଆଦି । ସେଥିରେ ରହନ୍ତି ଶାଶୁ, ଶଶୁର ଓ ନଣନ୍ଦ । ବୋହୂ ତଳେ ତଳେ ଓ ଉପରେ ଆପଣା ଇଚ୍ଛାରେ ।

ବି: ଏ: ପରୀକ୍ଷା ଦେବ ବୋଲି ତଳେ ପଢ଼ାପଢ଼ି କରୁଥାଏ । ଶାଶୁ ପଢ଼ାର ତଦାରଖ କରନ୍ତି । ନଣନ୍ଦ ଏମ୍: ଏ: ପରୀକ୍ଷା ଦେବା ପାଇଁ ପଢ଼ୁଥାଏ ।

ପାଖ ଶୋଇବା ଘରେ ଜଣା ବହୁତେ ସମସ୍ତେ ଚଳନ୍ତି । ସବୁମୋଟ ଚାରି ଜଣ—ବାପ, ମାଆ, ଝିଅ ଓ ବୋହୂ । କିନ୍ତୁ ଚାଲିଗଲା ବୋହୂଟି । ଆସିଥିଲା । ଚାଲିଗଲା । ତେବେ ସେ ଆସିଥିଲା କାହିଁକି ?

ଏଇ ପ୍ରଶ୍ନର ଜବାବ କେହି କେବେ ଦେଇପାରି ନାହିଁ ।

ଅମିତାକୁ ମୁଁ ଦେଖିଥିଲି ଦୁଇଥର । ପ୍ରଥମ ଥର ତାହାର ଦିଲ୍ଲୀ ଯିବା ଦିନ ସକାଳେ । ମେ ମାସ ଅଠର ତାରିଖ ଶୁକ୍ରବାର । ବାହାଘରର ଅଠେଇଶି ଦିନରେ ।

ଭଣ୍ଡେ଼ା ଓ ଭଣଜା ବୋହୂ ଚାଲିଯିବେ । ଯିବା ଯିବା ହୋଇ ଏତେ ଡେରିରେ ହୋଇଗଲା ।

ଦିଲ୍ଲୀ ଯିବା ପାଇଁ ତାଙ୍କର ଜିନିଷପତ୍ର ସଜାଡ଼ା ଚାଲିଥାଏ । ସାଧାରଣ ସ୍ତ୍ରୀଅଟିଏ—ଅତି ସାଧାରଣ ସବୁ ବିଷୟରେ । ତାଙ୍କ ଘରର ବିଷୟର ଉପରେ ଅନ୍ୟର କଥା ନାହିଁ । ଅଳ୍ପ ସମୟ ପରେ ଚାଲି ଆସିଥିଲି ।

ପୁଣି ଦେଖା ଅମିତାର ମଙ୍ଗଳବାର ଦିନକ ଆଗରୁ । ସେଦିନ ମୁଁ ଯାଇଥିଲି ଖବର ଦେବାକୁ ଯେ ମୋର ବଡ଼ ବାପାଙ୍କ ପୁଅ ଭାଇ ପାରାଦୀପର ଶ୍ରୀ ବିନାୟକ ପଟ୍ଟନାୟକଙ୍କର ମୂତ୍ରାଶୟରେ ପଥର ହୋଇ ଅପରେସନ ହୋଇଛି । ସେ ଅଛନ୍ତି ସର୍ଜିକାଲ ଓ୍ୱାର୍ଡ଼ର ଉତ୍ତର ପାଖ ହୋମହଲରେ ।

ସେଇ ହୋମହଲରେ ଥାନ୍ତି କଟକ ପଟାପୋଲର ଚୌଧୁରୀ ନରେନ୍ଦ୍ର ନାଥ ମିଶ୍ର । ତାଙ୍କର ତେସ୍ତରି ବର୍ଷ ବୟସରେ ହାରନିଆ ଅପରେସନ ହୋଇଛି ।

ସେଇ ଦୁଇଟି ଜାଗାକୁ ଆମର ଯିବା କଥା । ଯାଇଥିଲୁ । ତହିଁଆର ଦିନ ଓଡ଼ିଶା ବନ୍ଦ ପାଇଁ ଯାନବାହନ ବନ୍ଦ । ତେଣୁ ବାଧ୍ୟରେ ମୁଁ ଓ ଶୈଳଦେବୀ ଯାଇଥିଲୁ । ଫେରିଲୁ ବେଳକୁ ଦି'ପହର— ଖରା ।

ଅତି ଅଳ୍ପ ସମୟ ରହି ନିଜର ଭାଇର ଅପରେସନ ଖବର ପୂଣ୍ୟପ୍ରଭା ଦେବୀଙ୍କୁ ଦେଇ ଫେରି ଆସିଥିଲୁ ।

ସେତିକିବେଳେ ଅମିତା ମଧ୍ୟ ଆସିଥିଲା । ଦୁଇ ମିନିଟ ବସିଥିଲା । ଏତେ ଉଚ୍ଛୁର । ସେଥିରେ ଖରା ଓ ଗରମ । କିନ୍ତୁ ସେଦିନ ମତେ

ଅଶାନ୍ତି ଲାଗିଥିଲା ଅମିତାକୁ ଦେଖି । ମନେ ହେଲା ଯେପରି ସେ କ'ଣ କହିବାକୁ ଚାହୁଁଥିଲା । ମୁଁ ସମୟ ଦେଇ ପାରିଲି ନାହିଁ ।

ଫାଟକ ପାଖରେ ଶୈଳ ଦେବୀଙ୍କୁ କହିଲି—ମୋର ମନେ ହେଉଛି ଫେରି ଯାଇ ମୃଣ୍ମୟପ୍ରଭା ଦେବୀଙ୍କୁ କହିଦେବି ଯେ କ'ଣ କେମିତି ଅସ୍ୱାଭାବିକ ଲାଗୁଛି ।

ଶୈଳ ଦେବୀ ମନା କଲେ । ଆମେ ଆସିଲୁ ଦୁଇ ମିନିଟ୍ ପାଇଁ ଡାକ୍ତରଖାନାରୁ । ସେଥିରେ ଯାଇ ବୋଧହୁଏ ତଦାରଖ ନେବା ଉଚିତ ନୁହେଁ ।

ଆଜି ମୋର ମନ ଭିତରେ ଅମିତାର ସେଇ ଶେଷ ଦେଖାର ଛବିଟି ମତେ ବିବ୍ରତ କରୁଛି । ମୋର ମନରେ ଆସୁଛି ଯେ ମୁଁ ଯେତେବେଳେ ଯାହା ଭାବେ କିଛି ବିଚାର ନ କରି ସାଙ୍ଗେ ସାଙ୍ଗେ ପ୍ରକାଶ କରି ଦିଏ । କିନ୍ତୁ ଅମିତା ବିଷୟରେ ଦୁଇଥର ମୁଁ ନିଜ ଆଡ଼ୁ ବନ୍ଦ ହୋଇ ଯାଇଛି ।

ପ୍ରଥମ ଥର ଘଟିଥିଲା ଯେତେବେଳେ ଅପ୍ରେଲ ମାସରେ ବିଶ୍ୱାସଙ୍କର ପ୍ରାୟ ପନ୍ଦର କୋଡ଼ିଏ ଦିନ ପୂର୍ବରୁ ମୁଁ ଅମିତା ବୋଧହୁଏ ହେବା କଥା ଶୁଣିଲି । ସେଠି ବିଶ୍ୱାସଙ୍କୁ ଭାଙ୍ଗିଦେବା ମୋର କର୍ତ୍ତବ୍ୟ ଥିଲା । କାରଣ ମୋ' ନିକଟରେ କିଛି ଗୁରୁତର ଆପତ୍ତି ଥିଲା ।

ମୋତେ କିନ୍ତୁ ଲାଗିଲା ଯେ ନିଜର ଖିଆଲକୁ ପ୍ରାଧାନ୍ୟ ଦେଇ କାହାରି ବାହାଘର ଭାଙ୍ଗିବା ଉଚିତ ନୁହେଁ । ତେଣୁ ଭବିତବ୍ୟକୁ ସ୍ମରଣ କରି ଚୁପ୍ ରହିଥିଲି ।

ଅଲ୍ଲାସ୍ତୁ ଅମିତାର ମରଣକୁ ହୁଏତ ଦୂରେଇ ଦେବା ସମ୍ଭବ ହୋଇ ନ ଥାନ୍ତା । ଯାହା ଯେପରି ଘଟିଲା ସେତକ ବଦଳାଇ ଦେବା ଶକ୍ତି ମୋତେ ବା କିଏ ଦିଅନ୍ତା ? କିନ୍ତୁ କଥା ହେଲା ଯେ ଅମିତା ବିଷୟରେ ଦୁଇ ଦୁଇ ଥର ମୁଁ ନୀରବ ଓ ନିଷ୍କ୍ରିୟ ରହି ନିଜେ ଅମିତାର ମୃତ୍ୟୁ ପାଇଁ ନୈତିକ ଦାୟିତ୍ୱ ନେଇଛି ।

ଅମିତା ନାହିଁ କିନ୍ତୁ ମୋର ଅନୁଶୋଚନା ମତେ ଆଘାତ ଦେବାରେ ଲାଗିଛି । ସେ ଚାଲିଯିବାର ଦୁଇ ମାସ ପୂରି ହେଇଗଲାଣି । କିନ୍ତୁ ମୁଁ ଅଦ୍ୟାବଧି ଅନୁତପ୍ତ ରହୁଛି—ନିଜର ଅବହେଳା ପାଇଁ ।

ଅମିତାକୁ ପୂର୍ଣ୍ଣପ୍ରଭା ଦେବୀଙ୍କ ଘରକୁ ପେଲି ପେଲି ପଠାଇ ଥିଲେ ତାହାର ମାଉସୀ ଜ୍ୟୋତ୍ସ୍ନା ଦେବୀ ।

ଅମିତାକୁ ମଙ୍ଗଳାବାଗ ଲୋକେ ପସନ୍ଦ କରୁ ନ ଥାନ୍ତି । ଜ୍ୟୋତ୍ସ୍ନା ଦେବୀ ବାରମ୍ବାର ତାହାର କଥା ଉଠାଉ ଥାନ୍ତି । ଉପଯୁକ୍ତ ସ୍ଥାନରେ ଅମିତାର ବରଘର ଲାଗିଥାଏ । ବର ଜଣେ ବ୍ୟାଙ୍କ ଅଫିସର ।

ସେଠି ବର ପକ୍ଷରୁ ବିଭିନ୍ନ ଦଫାରେ ଭିନ୍ନ ଭିନ୍ନ ଯୌତୁକ କଥା ଉଠିବାରୁ ସେ ବାହାଘର ଭାଙ୍ଗିଗଲା । ଆଉ ଏଇ ଶୁଭେନ୍ଦୁ ସହିତ ବାହାଘର ଆଗେଇ ଆସିଲା । ଅମିତାର ଭାଙ୍ଗିଯିବା ବାହାଘର ପାଇଁ ଯାହା କଣା କଣି ହୋଇଥିଲା ସେତକ ଆସି ଲାଗିଲା ତାହାର କଟକ ମଙ୍ଗଳାବାଗ ବାହାଘରରେ ।

ଆଉ ସେଇ ଘର ତାକୁ ସହିଲା ନାହିଁ ଗୋଟିଏ ମାସ ।

ମୋ ସହିତ ଅମିତା ଶାଶୁ ଘରର ସମ୍ବନ୍ଧ ଏତେ ଉପର ଠାଉରିଆ ହୋଇଯାଇ ଥାଏ ଯେ କୌଣସି ବିଷୟରେ ମତେ ଉପଯୁକ୍ତ ସମୟରେ ସମ୍ବାଦ ଦେବାର କାରଣ ସେମାନେ ପାଉ ନ ଥାନ୍ତି ।

ଅମିତା ଅପ୍ରେଲ ବାଇଶିରେ ବିଭା ହେବ—ଏହା ମୁଁ ଜାଣିଲି ସେଇ ମାସରେ । ବାହାଘରର ଅନ୍ୟାନ୍ୟ ପ୍ରାସଙ୍ଗିକ ବିଷୟରେ ମୋର ମତାମତ ଦେବାର ଅବକାଶ ନାହିଁ ।

ଇଂରାଜୀ ନିମନ୍ତ୍ରଣ ଚିଠି ଆସି ପହଞ୍ଚିଲା । ଶୁଭେନ୍ଦୁ ଓ ଅମିତାର ବାହାଘରର କାର୍ଯ୍ୟ ନିର୍ଘଣ୍ଟ ।

ଭୁବନେଶ୍ୱରର ପାନ୍ଥ ନିବାସରୁ ସନ୍ଧ୍ୟା ଆଠଟା ବେଳେ ବରାନୁଗମନ ଓ ରାତି ବାରଟାରେ ପାଣିଗ୍ରହଣ । ଆଉ କଟକର ବାରବାଟି ଷ୍ଟାଡିଅମ୍‌ର ଟେନିସକୋର୍ଟ ସାମନାରେ ମଙ୍ଗଳବାର ଚବିଶି ତାରିଖ ବର କନ୍ୟାଙ୍କର ଅଭ୍ୟର୍ଥନା ।

ନିମନ୍ତ୍ରଣ ପାଇ ମୁଁ ପୂର୍ଣ୍ଣପ୍ରଭା ଦେବୀଙ୍କୁ କହିଲି ଯେ ବାରବାଟି ଷ୍ଟାଡ଼ିଅମ୍‌କୁ କାହାର ବାହାଘର ପାଇଁ ମୁଁ ଯିବାକୁ ପସନ୍ଦ କରେ ନାହିଁ । ଘରେ ହେଲା ନାହିଁ କାହିଁକି ?

—ଜାଗା ଷ୍ଟ୍ରେଟ । ସୁବିଧା ନାହିଁ ।

—ଭଲ ତ । ତୁମର ବାହାଘରର ଓ ଅନ୍ୟମାନଙ୍କର ବାହାଘରର ସମସ୍ତ ଉତ୍ସବ ତୁମର ଶଶୁର ଏଇ ଘରେ କରିଥିଲେ । ଲୋକେ ନିଜ ଘର ଛାଡ଼ି ଏବେ ବାରଦାଣ୍ଡି ଷ୍ଟାଡ଼ିଅମ୍‌କୁ ପସନ୍ଦ କରୁଛନ୍ତି ।

ତାଙ୍କର ନିମନ୍ତ୍ରଣ ପତ୍ର ବାଣ୍ଟିବାକୁ ଥିଲା । ସେମାନେ ଏଇ ଅଲଣା ତତ୍ତ୍ୱ ଓ ଜୀବନର ବାଜେ ଦର୍ଶନ ଶୁଣିବାକୁ ଆଗ୍ରହୀ ନ ଥିଲେ । କାରଣ ଏବେ ମଣିଷର ମତ ମଧ୍ୟ ତାହାର ବୈଷୟିକ ଓ ଆର୍ଥିକ ସ୍ଥିତି ଉପରେ ନିର୍ଭର କରୁଛି ।

ଯାହା ହେଉ ଆମର ଓଡ଼ିଆ ସମାଜର ଶବ୍ଦାଧାରର ଫେସନ୍ ବଦଳିଛି । ପ୍ରତ୍ୟେକ ନିଜକୁ ସର୍ବାଧିକାରୀ ଦେଖାଇବାକୁ ପାଞ୍ଚଶହ କାର୍ଡ଼ ଛପାଇଲେ ପଚିଶ ଖଣ୍ଡେ ତଥାକଥିତ ମୁରବି ନାଁରେ ଛପାଉଛନ୍ତି । ଆଜି ଦୁଇ ଶହ କାର୍ଡ଼ ସାମାନ୍ୟ ଶସ୍ତା କାଗଜରେ ଛପୁଛନ୍ତି ନିଜ ନାଁରେ । ଆଉ ଅଢ଼େଇଶହ କାର୍ଡ଼ ହେବ ଦାମିକା କାଗଜରେ ଓ ଇଂରାଜୀରେ—ନିଜର ଓ ସ୍ତ୍ରୀଙ୍କ ନାମରେ । ଏମାନେ ମଧ୍ୟ ଏମିତି ଛପାଇଥିଲେ ।

ସମସ୍ତେ ନୂତନ୍ତ । କେତେକ ବ୍ୟତିକ୍ରମ ଅଛନ୍ତି । ଜଣେ ହେଲେ ପୁରୀ ଘାଟର ବରିଷ୍ଠ ଗ୍ରୁପ୍‌ଡର୍ ଏକାଉଣ୍ଟାଣ୍ଟ ଶ୍ରୀ ହୃଦୟାନନ୍ଦ ନାୟକ । ଆଜି ଦେଖିଥିଲି ବରିଷ୍ଠ ଔପନ୍ୟାସିକ ଶ୍ରୀ କାହ୍ନୁ ଚରଣ ମହାନ୍ତିଙ୍କ କାର୍ଡ଼ରେ । କିନ୍ତୁ ଆମର ଇମେରିଟସ୍ ସାହିତ୍ୟିକ ଜ୍ଞାନପୀଠ ପୁରସ୍କାର ବିଜେତା ଡକ୍ଟର ଗୋପୀନାଥ ମହାନ୍ତି ଏଣ୍ଟ ତିନି ପ୍ରକାରର କ'ଣ ସାତ ଆଠ ପ୍ରକାରର କାର୍ଡ଼ର ସ୍ରାବକ ।

ଓଡ଼ିଆ ସମାଜ ହେଉଛି ଗରିବଙ୍କର ସମାଜ । କିନ୍ତୁ ବିଦେଶରୁ ପୁଞ୍ଜିଏ ଟଙ୍କା ଆସି ପହଞ୍ଚି ଯିବାରୁ ଗରିବମାନେ ଧନୀ ହେବାର ଗୌରବ ଅର୍ଜନ କଲେ । ତାଙ୍କୁ ଲାଜ ମାଡ଼ିଲା ନିଜକୁ ଗରିବ ବୋଲି ଅବସର ବେଳରେ ଭାବିବାକୁ ।

ଶ୍ରୀମତୀ ପୂର୍ଣ୍ଣପ୍ରଭା ପଟ୍ଟନାୟକ ଏଇ ଗୋପୀନାଥ ମାର୍ଗର ପଥିକ । ଏଇ ବାଟରେ ମୋ ପରି ଲୋକେ ଯାଆନ୍ତି ନାହିଁ । ତେଣୁ

ଅପ୍ରେଲ ଚବିଶିର ଅମିତା-ଶୁଭେନ୍ଦୁ ଅଭ୍ୟର୍ଥନାରେ ମୋର ଉପସ୍ଥାନ ନ ଥିଲା ।

ଏକା ପୂର୍ଣ୍ଣପ୍ରଜ୍ଞ ଦେଖା ଦୁହିନ୍ତି । ମୋର ସାନ ଭାଇ ଅବସର-ପ୍ରାପ୍ତ ଚିଫ୍ ଇନସପେକ୍ଟର ଅଫ୍ ଫାକ୍ଟ୍ରିଜ ଓ ବୟଲର୍ସ ମଧ୍ୟ ତାହାର ନିକଟସ୍ଥ ଗୋପୀନାଥ ମାର୍ଗର ବାଟୋଇ । ଆଜିର ଉପରକୁ ପାହାଚେ । ତାଙ୍କର ପୁଅ ବା ମୋର ପ୍ରଭୁସ ବାହାଘର କେଉଁଠି ହେଉଛି ସେତକ ଜାଣିବାର ସୁଯୋଗ ମତେ ମିଳି ନ ଥିଲା ।

କଟକ ସହରର ଓ ଜଗତସିଂହପୁରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ବିଶିଷ୍ଟ କରଣ ଶ୍ରୀ ଭୋଲାନାଥ ମହାନ୍ତିଙ୍କୁ ମୋର ପ୍ରଭୁସ ବିଭାଘରରେ କିଛି ସମ୍ବାଦ ଦେଇ ନ ପାରିବାରୁ ମୁଁ ସ୍ଥିର କଲି ଯେ ସେଇ ବିଭାଘରର କଟକ ବରାନୁଗମନରେ ଓ ଭୁବନେଶ୍ୱର ଅଭ୍ୟର୍ଥନାରେ ମୁଁ ଉପସ୍ଥାନ ଦେବି ନାହିଁ ।

ଦେଇ ନାହିଁ ମଧ୍ୟ । ଈଶ୍ୱରଙ୍କ କରୁଣାରୁ ଦେହ ମଧ୍ୟ ଅସୁସ୍ଥ ହେଲା ।

ଏହିପରି କରଣମାନେ ଆଗେ ନିଶରେ ଘିଅ ମାରି ଖାଲି ପେଟରେ ଡ଼ମ ଦେଖାଉଥିଲେ । ଏବେ ସରକାରୀ ସାହାଯ୍ୟରେ ବୃଦ୍ଧି ନ ଥିବା ମୁଣ୍ଡରେ ଏଣୁ ତେଣୁ ବାତ ଫୁରୁସି କଥା କହି ଭାରି ଆନନ୍ଦ ହେଉଛନ୍ତି ଯେ ସେମାନେ ହେଇଗଲେ ଫାଷ୍ଟ କ୍ଲାସ ନାଗରିକ ।

ଠିକ୍ ଏହି କାରଣରୁ ମୁଁ ନିଜକୁ ପାଗଳ ଶ୍ରେଣୀରେ ଓ ଅନୁପ-ଯୁକ୍ତ ଶ୍ରେଣୀରେ ନାମ ଲେଖାଇଛି । ମୋର ପ୍ରଧାନ ସମାଲୋଚକ ଶ୍ରୀମତୀ ଶୈଳବାଳା । କିଛି ତ ହେଲା ନାହିଁ । ଭବିଷ୍ୟତକୁ ଆଜିର ଅଡ଼ୁଆ କଣେଇବ ସମସ୍ତଙ୍କ ପାଇଁ ।

କିଏ କାହା କଥା ଶୁଣିବ ? ନିଜ କଥା ଅନ୍ୟକୁ ଶୁଣାଇବା ପାଇଁ ବ୍ୟାଙ୍କ୍‌ରେ ଟଙ୍କା ଦରକାର । ଟଙ୍କା ନ ଥାଇ କିଛି କିଛି କଥା ସିନା କୁହାଯାଇ ପାରେ । କିନ୍ତୁ ତାକୁ ଶୁଣିବ କିଏ ?

ଗୀତା କହୁଛି ଯେ ମଣିଷର ଆଖି ଦେଖେ ନାହିଁ । ମଣିଷର କାନ ଶୁଣେ ନାହିଁ । ଭିତରର ଆତ୍ମା ଅନୁମତି ଦେଲେ ବା ଖୋଜିଲେ ଆମର ଅନ୍ଧା ଦେହର ଆଖି କାନ ଦେଖିବେ ଓ ଶୁଣିବେ ।

ଚଳନ୍ତି ଯୁଗରେ ମଣିଷର ଆତ୍ମା ମଧ୍ୟ ଟଙ୍କା ସୁନା ଉପରେ ତାହାର ଚେତନା ପାଇଁ ନିର୍ଭର କରୁଛି । ଆମର ଆତ୍ମା ଯେ ପରମାତ୍ମାର ଅଂଶ—ଏକଥା ଭାବିଲେ ମନେ ହେଉଛି ଯେ ବିଶ୍ୱନିୟନ୍ତା ମଧ୍ୟ ଟଙ୍କା ସୁନାକୁ ପ୍ରାଧାନ୍ୟ ଦେଲେଣି ।

ତେଣୁ ମୋର ଉପସ୍ଥାନ ନାହିଁ । ତାକୁ ପୂର୍ଣ୍ଣ କରିବାକୁ ଶ୍ରୀମତୀ ଶୈଳବାଳା ଓ ପୁଅ ଶ୍ରୀ ଅଶୋକ କୁମାର ତାଙ୍କର ରୁଚି ପୂର୍ଣ୍ଣ ପୋଷାକ ପିନ୍ଧି ନିର୍ଦ୍ଧାରିତ ସମୟର ଆଗରୁ ଉପସ୍ଥାନ ଦେଇ କାର୍ଯ୍ୟରେ ସହଯୋଗ ଦେବାକୁ ବ୍ୟଗ୍ର ଓ ବ୍ୟାକୁଳ ।

ସେମାନେ ଯାହା କଲେ ବା ନ କଲେ ତାଙ୍କର ସାମାଜିକ ଅପରାଧରେ ଦୋଷୀ କିଏ ? ନିଶ୍ଚିତରେ ସେ ରାଜକିଶୋର ପଟ୍ଟନାୟକ ।

ତେଣୁ ଘଟଣାର ଆଜି ଷୋଳ ସପ୍ତାହ ପରେ ଯେତେବେଳେ ବୋହୂ ଅମିତା ପୋଡ଼ି ହୋଇ ଅଗଷ୍ଟ ତେଇଶରେ ଦିନ ଅଢ଼େଇଟା ବେଳେ କଟକ ମେଡ଼ିକାଲକୁ ଆମ୍ବୁଲାନସ୍‌ରେ ଗଲା ଓ ରାତି ସାଢ଼େ ଏଗାରଟାରେ ମରିଗଲା ଓ ଚବିଶ ତାରିଖ ଦିନ ସାଢ଼େ ଗୋଟାଏ ବେଳେ ପୋଷ୍ଟମର୍ଟମ୍ କରାହେଲା, ସେତେବେଳେ ମୁଁ ନିର୍ବିକାର ରହିଛି । କାରଣ ମୋ ପାଖରେ ସେଇ ଦୁସମ୍ବାଦ ନାହିଁ ।

ମତେ ଖବର ଦେବା କାହାର ପ୍ରୟୋଜନ ମନେ ହେଇ ନାହିଁ ।

ସେଇ ତେଇଶ ତାରିଖରେ ଭଉଣୀ ପୂର୍ଣ୍ଣପ୍ରଭା ନିଜେ ବୋହୂକୁ ନିଆଁ ଲଗାଇବାରେ ନିଜକୁ ଆହତ କରି ଲୁଗା ଓ ମୁଣ୍ଡବାଳ ପୋଡ଼ି କଟକ ଡାକ୍ତର ଖାନାରେ ଖଟିଆ ଧରିଛନ୍ତି—ସେ ଖବର ମତେ ଜଣାଇବାର ପ୍ରୟୋଜନ କାହାର ହେଇନାହିଁ ।

ଭୁବନେଶ୍ୱର ସମୁଧି ବ୍ରଜବଲ୍ଲଭ ବାବୁ ବା କଟକର ସମୁଧି ବିଜନ ବିହାରୀ ବାବୁଙ୍କର ବା ମୋର ପୁରୀଘାଟ ଓ ମଙ୍ଗଳାବାଗର ଭାଇ,

ଭଉଣୀ ଭଣୋଇ ଇତ୍ୟାଦିଙ୍କ ପାଇଁ ମୋର ସ୍ଥିତି ନାହିଁ । ଇଏ ହେଉଛି ସମାଜର ଦୃଶ୍ୟ—ଯେ ଯାହା ହାତରେ ଚଉଦ ପାଆ ।

ଏହି ଦୃଶ୍ୟର ପରବର୍ତ୍ତୀ ଅବସ୍ଥା ହେଉଛି ବେଧଡ଼କ ଚରିତ୍ର ସଂହାର । ଯେଉଁମାନେ ଏଇ ବୋହୂ-ପୋଡ଼ି ଘଟଣାରେ ବହୁତ ବହୁତ ଅଂଶ ଗ୍ରହଣ କରିଥିଲେ ସେଇମାନେ ଗୃଲିଲେ ନିନ୍ଦା, ଭର୍ତ୍ସନା ଓ ଅପବାଦର ସୁଅ ଛୁଟେଇ ।

ଅଗଷ୍ଟ ଚଉଦ ମଙ୍ଗଳବାର—ଓଡ଼ିଶା ବନ୍ଦ ।

ବନ୍ଦ ପାଳନା ଦେଖିବା ପାଇଁ ମୁଁ କଟେଣରେ ବୁଲିବୁଲି କରି ଘରକୁ ଫେରି ଶୋଇଲି । ତହିଁଆର ଦିନ ଅଗଷ୍ଟ ପନ୍ଦର—ସ୍ୱାଧୀନତା ଦିବସ । ତାକୁ ମଧ୍ୟ ଦେଖିବାକୁ ପଡ଼ିବ । ଆଉ ମୋର ଭାଇକୁ ଓ ଚୌଧୁରୀ ନରିବାବୁଙ୍କୁ ସଂଖୋଳିବାକୁ ଡାକ୍ତରଖାନାକୁ ଯିବାକୁ ହେବ ।

ଅଗଷ୍ଟ ପନ୍ଦର ସକାଳୁ ଆକାଶ ମେଘୁଆ ଓ ବର୍ଷାପିଆ ହେବାକୁ ଆରମ୍ଭ କଲା । ଅସରାଏ ଅସରାଏ ବର୍ଷା ହେଉଥାଏ । ସେଥିପାଇଁ ବାହାରିବାର ସୁବିଧା ନ ଥାଏ । ବାଧ୍ୟରେ ମୁଁ ବିଶ୍ରାମ କଲି ।

ଜଣେ ସାଧକ କଣ୍ଟକକୁ କେବେ ଆସୁଛନ୍ତି ତାହାର ଖବର ସଂଗ୍ରହ କରିବାକୁ ଶୈଳଦେବୀ ଓ ଅଶୋକ ବାବୁ ଖାଇ ପିଇ ବାହାରି ଗଲେ ।

ଆମର ଘରେ ସର୍ବମୋଟ ପାଞ୍ଚ । ବାପ ମାଆ ଓ ଗୋଟିଏ ପୁଅ । ଶୈଳଦେବୀଙ୍କର ପାଳିକା ମାଆ ଅପି ଦେଉଛି । ଆଉ ଜଣେ ଷ୍ଟୁଡେଣ୍ଟ ଭାଇ—ବାବୁ ଉଦୟ କୁମାର । ଉଦୟ ବାବୁ ଅଗଷ୍ଟ ପନ୍ଦର ତଦାରଖରେ ବ୍ୟସ୍ତ ରହିଲେ ।

ଦିନ ଅଢ଼େଇଟା ବେଳକୁ ଭଙ୍ଗା ଛତାଟିଏ ଧରି ଆଡଭୋକେଟ୍ ଭଣଜା ଶ୍ରୀ ଶୌର୍ଯ୍ୟ ପ୍ରକାଶ ଆସି ପହଞ୍ଚିଲେ । —ମାଇଁ କାହାନ୍ତି ? ଅଶୋକ କାହିଁ ?

—କାହିଁକି ?

—କାଲି ବଡ଼ଭାଇ ଧୀମଣ ଗଲେ ରାତିରେ । ସେ ପ୍ରୁସିକ୍ ଏସିଡ଼୍ ଖାଇଥିଲେ । ମାଉସୀ ଔଷଧ ଓ ଇଞ୍ଜେକସନରେ ଅଚେତ ହୋଇ ପଡ଼ିଛି । ପୁରୀ ଘାଟରେ ସେ । ତୁମେ ଖବର ପାଇ ନାହଁ ?

—ନା ।

—ଶବ ସତ୍କାର ହେଲାଣି ?

—ନା । ପୋଷ୍ଟମର୍ଟମ୍ ପରେ ହେବ ।

ଶୈଳ ମାଇଁଙ୍କୁ ଖୋଜିବାକୁ ଲୋକ ଧାଇଁଲେ । ଦେବୀବାବୁ ମା ପୁଅ ଫେରିଥିଲେ ଘରକୁ ।

ସବୁ ବୁଝି ସେ କହିଲେ ସେ ତାଙ୍କର ଡାକ୍ତରଖାନାକୁ ଯିବା ଅନୁଚିତ । ବୋହୂର ମାଆ ତାଙ୍କର ତିରିଶି ବର୍ଷର ସାଥୀ । ଶୈଳ ଦେଖି ସହିପାରିବେ ନାହିଁ । ତେଣୁ ଯିବେ ନାହିଁ । ସେମାନେ ଗଲେ ତେଲଙ୍ଗା ବଜାରରୁ ପୁରୀଘାଟ ।

ମୋର ରହିବା ଜାଗା ତେଲଙ୍ଗା ବଜାରରୁ ଦୁଇଶହ ମିଟର ମଧ୍ୟରେ ଟେଲିଫୋନ ଥାଇ ମୋର ଭାଇ ଘର ଓ ବରିଷ୍ଠ ଆଡ଼ଭୋକେଟ୍ ବ୍ରଜ ବାବୁଙ୍କର ଘର । ସେଠି ଅମିତାର ବାପା ଓ ଅନ୍ୟାନ୍ୟ ଜ୍ଞାତିମାନେ ଭରପୁର । ସେଦିନ ଅଗଷ୍ଟ ପନ୍ଦର ଛୁଟି । କିନ୍ତୁ ମୋର ଏହି ନାଟକରେ ସାମାନ୍ୟରେ ମଧ୍ୟ ଅଂଶ ନାହିଁ । ମୋର ପଡ଼ୋଶୀ ରାଜସ୍ଥାନୀ ଓ ବଙ୍ଗାଳୀ ମାନେ. ମୁଁ ମଧ୍ୟ ସେଇଆ ।

ଘଣ୍ଟାକରେ ଖବର ଆସିଲା ଯେ ସମୁଧି ବ୍ରଜବାବୁ କଟକ ମଙ୍ଗଳାବାଗ ଥାନାରେ ଇତଲା ଦେଇଛନ୍ତି ସୁଇସାଇଡ଼ ଓ ହୋମିସାଇଡ଼୍ । ଦାରୋଗା କହିଲେ ଗୋଟିଏ ରଖନ୍ତୁ—ହୁଏ ସୁଇସାଇଡ଼ ଅବା ହୋମିସାଇଡ଼୍ ।

ସମୁଧି ରାଗିଗଲେ । ଆପଣ କ'ଣ ହାଇକୋର୍ଟ ଗଭର୍ଣ୍ଣମେଣ୍ଟ ଆଡ଼ଭୋକେଟଙ୍କଠାରୁ ଅଧିକ ବୁଝନ୍ତି । ତେଣୁ ଇତଲା ରହିଲା ଆତ୍ମହତ୍ୟା ଅବା ହତ୍ୟା ।

ହତ୍ୟା କଲା କିଏ ?

—ଜୋଇଁର ମା ଓ ଜୋଇଁର ଭଉଣୀ । ଜୋଇଁ ଥିଲା ଦିଲ୍ଲୀରେ । ସମ୍ମୁଖ ଥିଲେ ରେଭେନ୍‌ସା କଲେଜରେ । ଘରେ ଚାକର ନାହିଁ । ଅନ୍ୟ ଲୋକ ନାହାନ୍ତି । ତେଣୁ ହତ୍ୟା କରିବେ ଶାଶୁ ଓ ନଣନ୍ଦ ।

— କାହିଁକି ହତ୍ୟା କଲେ ?

—ଏଇ ଅତ୍ୟାଚାର କର କର । ଜୋଇଁଟା କିଛି ବୁଝେ । ଶଶୁର କିଛି ବୁଝନ୍ତି । ଶାଶୁ ଓ ନଣନ୍ଦ ବଡ଼ ବଦମାସ୍ । ଦିଲ୍ଲୀ ଇତ୍ୟାଦି ସହରରେ ସେମାନେ କେତେ ବୋହୂଙ୍କୁ ପୋଡ଼ି ନପାତ କଲେଣି । ଓଡ଼ିଶାରେ ଆରମ୍ଭ ହୋଇଗଲା ।

—ଜୋଇଁ କାହିଁ ?

—ଟେଲିଗ୍ରାମ ଓ ଟେଲିଫୋନ ଯାଇଛି । ଖବର ଆସିଛି ଯେ ସେ ପ୍ଲେନ୍‌ରେ ଆସୁଛି । ଭୁବନେଶ୍ୱରରେ ଅଢ଼େଇଟା ତିନିଟା ବେଳକୁ ପହଞ୍ଚିବ । ତାକୁ ଏରୋଡ୍ରମ୍‌ରୁ ଆଣିବାକୁ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ମଟର ନେଇ ଗଲେଣି । ଆଉ ମଧ୍ୟ ପିଇଷା ଶ୍ରୀ ହୃଷୀକେଶ ମିଶ୍ର ମଟର ନେଇ ଯାଇଛନ୍ତି ।

—ପୂଣ୍ୟପ୍ରଭା ଦେବୀ କେଉଁଠି ?

—ସେ ଏବେ ଗଲେ ଡାକ୍ତରଖାନାକୁ । ଚଉଦ ତାରିଖ ରାତିରେ ଅମିତାର ଭାଇମାନେ ଆସି ଏପରି ଧମକ ଚମକ କଲେ ଯେ ବାଧହୋଇ ପୂଣ୍ୟପ୍ରଭାଙ୍କୁ ଡାକ୍ତରଖାନାରୁ ଡକ୍ଟର ଶ୍ରୀମତୀ ବିଜୟଲକ୍ଷ୍ମୀ ଦେବୀ ଓ ଡକ୍ଟର ଶ୍ରୀମତୀ ବସନ୍ତ ଦେବୀ ପଠାଇଦେଲେ । ତାଙ୍କର ମଙ୍ଗଳାବାଗ ଘରେ କେହି ନାହାନ୍ତି । ବାଧରେ ସେମାନେ ପୁରୀଘାଟରେ—ବାପ ଘରେ ।

—ଅମିତା ପାଖରେ କିଏ ଅଛି ?

—ଏମିତି ଯାଆ ଆସ ଚାଲିଛି । ତାହାର ଲୋକ ଅଛନ୍ତି । ଏପାଖର ଲୋକ କେହି ନାହାନ୍ତି । କିଏ ଅବା ଅଛି ? ହିମାଂଶୁ ବାବୁ ଓ

ତାଙ୍କର ଭଣୋଇ ମୁରଲୀଧର ବାବୁ ଓ ପିଲାମାନେ ଅଛନ୍ତି । ପୂର୍ଣ୍ଣପ୍ରଜ୍ଞ ଯାଇ ପାରୁନାହାନ୍ତି ।

—କାହିଁକି ?

—ସେଠି ଅମିତାର ଭାଇ ଦେବୀପ୍ରସନ୍ନ ବାବୁ ଓ ତାଙ୍କର ଜ୍ୟେଷ୍ଠ ଭାଇମାନେ ଅଗଷ୍ଟ ଚଉଦ କାକଟପୁର ଗୁଳିକାଣ୍ଡର ଆହତ ନେତାଙ୍କୁ ଦେଖିବାକୁ ଆସିଥିବା ଲୋକଙ୍କୁ ଏକାଠି କରି ଟିହାଉଛନ୍ତି ଯେ ଶାଶୁ ନଣନ୍ଦ ମିଶି ବୋହୂକୁ ପୋଡ଼ି ଦେଇଛନ୍ତି । ସେମାନେ ଆସିଲେ ତାଙ୍କ ଉପରେ ଏସିଡ୍ ଫିଙ୍ଗାଯାଉ ।

ଘଟଣାର ସତ ମିଛ ବୁଝୁଛି କିଏ ? ସାରା ମଙ୍ଗଳାବାଗରେ ଯିଏ ଯାହା ପାରୁଛି ବୟାନ ଦେଉଛି ପ୍ରତ୍ୟକ୍ଷଦର୍ଶୀ ପରି । କିଏ ନିଆଁ ଦେଖିଛି । କିଏ ଧୂଆଁ ଦେଖିଛି । କିଏ ଚିତ୍କାର ଶୁଣି ଯାଇଛି··· ଆତ୍ମହତ୍ୟା କାହିଁକି କରିବ ମୃଣମୟର ବୋହୂଟା···ଅବଶ୍ୟ ମର୍ଡ଼ର ।

—କାରଣ କ'ଣ ?

—ନିଜର ଅଭ୍ୟାସ । ଶାଶୁଟା ଗୋଟାଏ ରାକ୍ଷସୀ । କେମିତି ଦାଣ୍ଡରେ କଥା ନ କହେ । ଆହା ବଚ୍ଛା ଡରକୁଳୀ ବୋହୂଟା ସେଇ ରାକ୍ଷସୀକୁ କ'ଣ ଉତ୍ତର ଯାଇ ପାରିବ ?·····ପ୍ରଧାନ ପ୍ରମୋଟର ବାବୁ କେଦାରନାଥ ଧଳ । ସେ ଶାଶୁଙ୍କର ଶାଶୁଘର ଗାଁର ବନ୍ଧୁବାନ୍ଧବ । ନିଜ ଲୋକ କହୁଛନ୍ତି—ତେଣୁ କଥାଟା ପୂରାପୂରି ସତ ।

କଟକ ମେଡ଼ିକାଲରେ ବୋହୂ ଅମିତାଙ୍କର ଲୋକମାନେ ଓ କଟକ ମଙ୍ଗଳାବାଗ ଘରର ଗୋଟିଏ ଅଂଶରେ ଆସ୍ଥାମୀ ଧଳ ବାବୁ ଓ ତାଙ୍କର ପରିବାରମାନେ ଓ ମଙ୍ଗଳାବାଗ ନୂଆପାଟଣାର ଅନେକ ଲୋକ ଏଇ ମର୍ଡ଼ର ପ୍ରହରରେ ଲାଗିଥାନ୍ତି । ଥାନା ସେଇଠୁ ଶହେ ମିଟର ଦୂର । ମେଡ଼ିକାଲ ସେଇଠୁ ଦୁଇଶହ ମିଟର ଦୂର ।

ହଠାତ୍ ଝାଷିକା ସେଇ ଅଞ୍ଚଳରେ କଳା ମେଘପରି ନଇଁ ଢେଉଥାଏ । ଆକାଶରେ ମେଘ ଓ ଦକ୍ଷିଣରୁ ପବନର ଝଟକା ।

ମଙ୍ଗଳାବାଗ ଘରେ ଆକ୍ରମଣର ଆଶଙ୍କା ଅଛି ବୋଲି ପ୍ରଶ୍ନର ଶୁଭୁଥାଏ । ପୁଣ୍ୟପ୍ରଭା ଦେବୀଙ୍କର ଘରେ ମାତ୍ର ଦୁଇଜଣ—ସେ ଓ ଝିଅ ନନ୍ଦିନୀ ଓ ସ୍ୱାମୀ । ବୋଧେ ତ ମରିଗଲେଣି ।

କିଏ କାହା କଥା ବୁଝିବ ? କାହାର କାହା ସାଙ୍ଗରେ ସାକ୍ଷାତ୍ ନାହିଁ । ମୋତେ ବା ମୋ' ଘରକୁ ଖବର ଆସିଥିଲେ କେଜାଣି ହୁଏତ ସେଠି ଠିଆ ହୋଇଥାନ୍ତି । ସେତକ ବି ନ ଥିଲା ।

ପୁଅ ଅଶୋକ ବାବୁ ପୁସ୍ପଘାଟରୁ ଭୁବନେଶ୍ୱରରୁ ଆସିଥିବା ଭାଇ, ଭାଇବୋହୂ ଲିଲି ଦେବୀ, ଭଣିଜୀ ଅଧ୍ୟାପିକା ରେଖା ଦେବୀ ଓ ଭଣଜା ଆଡ଼ଭୋକେଟ୍ ଶୌର୍ଯ୍ୟ ବାବୁଙ୍କୁ ନେଇ କଟକ ଡାକ୍ତରଖାନାକୁ ଗଲେ ।

ପୁଣ୍ୟପ୍ରଭା ଦେବୀଙ୍କର ନଣନ୍ଦେଇ ବାବୁ ମୁରଲୀଧର ମିଶ୍ର । ସେ ଟେଲିଫୋନ୍‌ରେ କହିଲେ—ଭାଉଜ, ଶୀଘ୍ର ଆସ । ଯେମିତି ହେଉ ଆସ । ଏଠି ଲୋକେ ଅନେକ ପ୍ରକାରର କଥା କହୁଛନ୍ତି । ସେଇ କଥାକୁ ସମ୍ଭାଳି ହବ ହେଉ ନାହିଁ । ତୁମର ଝିଅ ପୋଡ଼ିଯାଇଥିଲେ ତୁମେ କ'ଣ ଡାକ୍ତରଖାନାକୁ ଆସି ନ ଥାନ୍ତ ?

ମୁରଲି ବାବୁଙ୍କର ପୁଅ ସତ୍ୟଜିତ୍ ବାବୁ ଓରଫ ମୁନା ବାବୁ ପୁଣ୍ୟପ୍ରଭାଦେବୀଙ୍କର ମଟର ନେଇ ଆସିଥାନ୍ତି ।

ପୁଣ୍ୟପ୍ରଭା ଦେବୀ ଓ ଝିଅ ନନ୍ଦିନୀ ଦେବୀ ଡାକ୍ତରଖାନାକୁ ଗଲେ । ସେଠି ପୋଷ୍ଟମର୍ଟମ ହଲ ପାଖରେ ଗାଡ଼ିରୁ ଓହ୍ଲାଇ ଶାଶୁ କାନ୍ଦି ହାତଯୋଡ଼ି କହିଲେ—ମୁଁ ନିର୍ଦ୍ଦୋଷ, ବୋଧେ କାହିଁକି ମଲ କହି ପାରିବି ନାହିଁ ।

ଅବସ୍ଥା ଅଡୁଆ ଆଡ଼କୁ ଯିବା ସନ୍ଦେହ ହେବାରୁ ସେମାନେ ସେଇ ମଟରରେ ଫେରିଲେ କଟକ ମଙ୍ଗଳାବାଗ—ମେଡ଼ିକାଲ ରୋଡ଼୍‌ର ମୁରଲି ବାବୁଙ୍କ ଘରକୁ । ବୋଧେ ଅମିତାର ଶବ ପଡ଼ି ରହିଛି କଟକ ମେଡ଼ିକାଲର ପୂର୍ବ ତରଫ ପୋଷ୍ଟମର୍ଟମ ହଲ ପାଖରେ ।

ଅମିତା ତରଫରୁ ଥାନ୍ତି ମଉସା ଭଜନ ବାବୁ, ମାମୁଁ ଶରତ ବାବୁ, ଭାଇ ଦେବୀ ବାବୁ ଓ ଅନ୍ୟ ଭାଇମାନେ ।

ଡାକ୍ତରଖାନାରେ ଖୁବ୍ କଡ଼ା କଡ଼ା କଥା ଚାଲିଥାଏ—ଏତେ ମାମୁଁ ? ଜଣେ କ'ଣ କଏ ଆସିଲା ଏଇ ଚବିଶି ଘଣ୍ଟା ଭିତରେ ?

ମୁଁ ଜାଣିଲି ପରେ ।

କଟକ ତେଲଙ୍ଗା ବଜାର ଘରୁ ଧୋତି କାମିଜ ପିନ୍ଧି ଖଣ୍ଡେ ଭଙ୍ଗା ଛତା ନେଇ ବାହାରିଲି ତିନିଟାବେଳେ । ରାସ୍ତାରେ ପାଣି ଓ ଉପରେ ବର୍ଷା ।

ରିକସା ନାହିଁ । ଚାଲି ଚାଲି ମଙ୍ଗଳାବାଗ ଯିବାକୁ ପଡ଼ିଲା—ପ୍ରାୟ ତିନି କିଲୋମିଟର । ସେଠି ପୁଣ୍ୟପ୍ରଭା ଦେବୀଙ୍କ ଘର ପାଖରେ ଜଣେ ବାବୁ କହିଲେ—ଏଠି କେହି ନାହାନ୍ତି ।

—ଲାସ୍ କେଉଁଠି ?

—ବୋଧହୁଏ ମେଡ଼ିକାଲ୍‌ରେ ।

—ଏମାନେ କେଉଁଠି ?

—ଜଣା ନାହିଁ ।

ସେଠୁ ପୁଣି ଅଧ କିଲୋମିଟର ବାବୁ ମୁରଲୀଧର ମିଶ୍ରଙ୍କ ଘରକୁ । କିନ୍ତୁ ଦୁଇ ବର୍ଷ ତଳେ ଥରେ ସେଇ ଘରକୁ ଯେଉଁ ଦୁଆର ବାଟେ ଯାଇଥିଲି ସେଇ ଦୁଆରେ ତାଲା । ପାଖରେ ମଧ୍ୟ କାହାରି ଘର ଆଗରେ ଲୋକ ନାହାନ୍ତି ବର୍ଷା ପାଇଁ ।

ପୁଣି ଯିବାକୁ ପଡ଼ିଲା ଆଉ ଅଧ କିଲୋମିଟର ଶ୍ରୀ ହୃଷୀକେଶ ମିଶ୍ରଙ୍କ ଘରକୁ । ସେଠି ତାଙ୍କ ପୁଅ ଆଡ଼ଭୋକେଟ୍ ଶ୍ରୀ ଅଶୋକ ମିଶ୍ର ଜଣାଇଲେ ଯେ ପୁଣ୍ୟପ୍ରଭା ଦେବୀ ଇତ୍ୟାଦି ବଜ୍ରକବାଟିରେ ଉକ୍ରର ରାଜକିଶୋର ଦାସଙ୍କ ଘରେ ଥିବା ସମ୍ଭବ ।

ପୁଣି ଦେଢ଼ କିଲୋମିଟର । ବର୍ଷାରେ ଓଦା ହେବାକୁ ପଡ଼ୁଥାଏ । ରିକ୍ସା ନାହିଁ ।

ରାଜକିଶୋର ବାବୁଙ୍କ ଘର ପାଖରେ ଜଣାଗଲା ଯେ ବାବୁ ଗୋଟିଏ କାର୍‌ରେ ସେଇ ଆଗେ ଆଗେ କୁଆଡ଼କୁ ଗଲେ । ତାଙ୍କ ଘରୁ ଜଣାଗଲା ଯେ ପୂର୍ଣ୍ଣପ୍ରଭା ଦେବୀ ଇତ୍ୟାଦି ମୁରଲି ବାବୁଙ୍କର ଘରେ ।

ଟେଲିଫୋନରେ ପୂର୍ଣ୍ଣପ୍ରଭା ଦେବୀଙ୍କ ସହିତ କଥା ହେବାକୁ ମନା କରି ରିକ୍‌ସା ରହିଛି ବୋଲି ମିଛରେ କହି ଚାଲି ଚାଲି ପୁଣି ଏକ କିଲୋମିଟର ଦୂର ପୋଷ୍ଟମର୍ଟମ ହଲ ପାଖକୁ ।

ମତେ ଏଇ ଅଂଶଟି ନୂଆ । ଡାକ୍ତରଖାନା ପାଖରେ ଦୋକାନୀ-ମାନଙ୍କୁ ପଚାରି ପଚାରି ମୁଁ ସଞ୍ଜବେଳକୁ ପହୁଞ୍ଚିଲି ।

ପ୍ରାୟ ପଚିଶି ତିରିଶି ଲୋକ । ପୂର୍ଣ୍ଣପ୍ରଭାଙ୍କ ମଟର ଭିତରେ ସେମାନେ ଅମିତାର ଶବକୁ ରଖିଛନ୍ତି । ମୋର ଧାନ ଭାଇ ବୀରବାବୁ ବିରକ୍ତ ହେଲେ ଯେ ଏତେବେଳଯାଏ ମୁଁ ଆସିପାରିଲି ନାହିଁ ?

—ଖବର ପାଇଲି ଦିନ ତିନଟାବେଳେ । ରିକ୍‌ସା ମିଳିଲା ନାହିଁ । କିଏ କେଉଁଠି ଅଛନ୍ତି ମୁଁ ଜାଣେ ନାହିଁ । ବର୍ଷାରେ ଚାଲି ଚାଲି ଆସୁଛି ।

ଏଠି ବହୁତ ଗୋଳମାଳ କେହିନାହିଁ ? —ବବି (ଜୋଇଁ) ଆସିଲା ?

—ହଁ, ସେ ଆସିଲାଣି । ସେଇ ମଟରରେ ଗଲା ଶ୍ମଶାନକୁ ।

ତା' ପରେ ପୁଣି ଖାନନଗର ଶ୍ମଶାନ । ସେତେବେଳକୁ ଖଣ୍ଡେ ମଟରରେ ଜାଗା ମିଳିଲା ।

କଟକ କାଠଯୋଡ଼ୀ ନଈରୁ ଅଣ୍ଟା ପବନ ଦେହ ଥରାଇ ଦେଉଥାଏ । ବିଜୁଳି ଚୁଲି ଚାଲୁ ହେଲାଣି । ତେଣୁ ଆଉ କାଠ ଇତ୍ୟାଦିର ସମସ୍ୟା ନାହିଁ । କିନ୍ତୁ ଅମିତା ଆଗରୁ ଦୁଇଟି ଶବ ଆସିଛି । ଗୋଟିଏ ପୋଡ଼ା ହେବାରେ ଅଛି । ତେଣୁ ଆମର ପାଳି ପଡ଼ିବ ଆଉ ଘଣ୍ଟାକ ପରେ ।

ଅମିତାର ଶବ ଥୁଆ ହୋଇଥାଏ । ଶବରେ ହାତ ଦେଇ ସ୍ୱାମୀ ଶୁଭେନ୍ଦୁ ବସିଥାଏ । ଦିଲ୍ଲୀରୁ ଆସିଲାବେଳେ ଓଡ଼ିଶା ବନ୍ଦ ପାଇଁ

ଚଉଦରେ ପ୍ଲେନ୍ ନ ଥିଲା । ପନ୍ଦର ତାରିଖ ସ୍ୱାଧୀନତା ଦିବସ ପାଇଁ ଭିଡ଼ ଥିଲା । ତଥାପି ରାଜ୍ୟପାଳ ଜଗି ବସି ସେ ଖଣ୍ଡେ ଟିକଟ ପାଇ ପାରିଥିଲା ।

ଏରୋଡ୍ରମ୍‌ରୁ ସେ କେମିତି ଆସିବ ଭାବି ନ ପାରି ନାଲକୋ ଅଫିସରଙ୍କ ଗାଡ଼ିରେ ଲିଙ୍କ୍‌ରୋଡ଼ ଛକ ଯାଏ ଆସିବାର ବ୍ୟବସ୍ଥା କରିଥିଲା । ଶେଷରେ ହୃଷୀକେଶ ବାବୁଙ୍କୁ ଦେଖି ତାଙ୍କ ଗାଡ଼ିରେ ଆସିଲା ।

ବୋହୂ କେମିତି ଅଛି ପଚାରିଲାରୁ ହୃଷୀକେଶ ବାବୁ କହିଲେ ସେ ସେ ଡାକ୍ତରଖାନାରେ ।

ପୋଷ୍ଟମର୍ଟମ ହେଲା ତାକୁ ମଧ୍ୟ ଅଚିହ୍ନା । ସେଠି ଅମିତାର ଶବ ଥିଆ ହୋଇଛି ଦେଖି ମଧ୍ୟ ଚିହ୍ନିପାରିଲା ନାହିଁ । ସେଇ ଶବକୁ ପାରି ହୋଇଗଲାବେଳେ ଅଶୋକ କହିଲେ—ବବି ଭାଇ, ଏଇଠି ।

ବବି କାବା ହେଇ ଠିଆ ହୋଇଗଲା । ସେଇଠୁ ଗୋଟିଏ ଫଟୋ ପ୍ୟାକେଟ୍ କାଢ଼ି କହିଲା—ମାମି, ଫଟୋ ଆଣିବାକୁ କହିଥିଲା । ଆଣିଛି । ପ୍ୟାକେଟଟି ଅଶୋକ ହାତକୁ ଦେଇଦେଲା ।

ଅଶୋକ ସେଇ ଫଟୋଗୁଡ଼ିକ ନେଇ ମାମିର ଛାତି ଉପରେ ସଜାଡ଼ି ଥୋଇଦେଲା ।

ମାମିକୁ ସେତେବେଳକୁ ତାହାର ମଝିଆଁ ମାଙ୍ଗଁ ଲଲ ଦେଖା ଓ ଉଜୁଣୀ ରେଖା ଦେଖା ଗାଧୋଇ ଦେଇ, ଅଳତା ସିନ୍ଦୂର ଆଦି ବିଧି-ବିଧାନ କରି ଲୁଗା ପିନ୍ଧାଇ ସାରିଥାନ୍ତି ।

ମାଆ ନାହିଁ । ମାଆର ଦୁଇ ହାତ ପାପୁଲି ପୋଡ଼ି ଯାଇଛି । ତାହାର ଆସିବାକୁ ମାମି ଘରର ଲୋକ ବାଧା ଦେଇଛନ୍ତି ।

କଟକ ମେଡ଼ିକଲର କାଜୁଆଲଟି ନମ୍ବର ମାମିର ଦଶହଜାର ଆଠ ଶହ ପଚସ୍ତରି । ତାରିଖ ଚଉଦ ଅଗଷ୍ଟ । ସମସ୍ତ ପ୍ରାୟ ତିନଟା ଆଗରୁ । ପୋଡ଼ା ନାଇନ୍‌ଟି ପରସେଣ୍ଟ ।

ସେଇଠି ଶାଶୁର ନମ୍ବର ଦଶ ହଜାର ଆଠ ଶହ ଅଠସ୍ତରି—ଆଉ କେତୋଟି ନମ୍ବର ଛୁଡ଼ । ପୋଡ଼ା ଫାଇଭ ପରସେଣ୍ଟ ।

ଶାଶୁ ପ୍ରସ୍ଥେସ୍ପ୍ରଭର ପ୍ରେସକ୍ରିପସନ୍ ହେଲା ।

(a) Injection T. Toxoid
I. C. C. Intramuscular.

(b) Injection Pathedrine 100 mg I. M.

(c) Clean and dress with Silver Sulphadiazine in E. O. T.

(d) Ampicillin 500 mg 20 Capsules Every Six hours.

ଆମ୍ବୁଲାନସରେ ମାମି ସାଙ୍ଗରେ ଗଲେ ନନ୍ଦ ମର ଦେବୀ ଓ ତାଙ୍କର ସ୍ୱାମୀ ବ୍ରଜ ବାବୁ ଆଉ ମଙ୍ଗଳାବାଗର ଛବ ବାବୁ ଓରଫ ଶ୍ରୀ ମହେନ୍ଦ୍ର କୁମାର ବେହେରା ।

ନିଜ ଘରକୁ ବନ୍ଦ କରାଇ ଶାଶୁ ଆସିଲେ ମେଡ଼ିସିନ୍ ପ୍ରଫେସର ଡାକ୍ତର ରାଜକିଶୋର ଦାସଙ୍କ ଡାଉରେ । ସେଥିପାଇଁ ସେଇଁ ବିଳମ୍ବ ହୋଇଥିଲା ସେଥିରେ କାଜୁଆଲ୍‌ଟି ଗିରଆଲ ଡନୋଟି ନମ୍ବର ସ୍ଥାନ୍‌-ଗଲାଣି ।

ପୋଷ୍ଟମର୍ଟମ ହଲରେ ଅଶୋକ ଆଉ ଚନ୍ଦ୍ରଜ୍ଞଳବେଳକୁ ଧିକ୍କାର ଆରମ୍ଭ ହେଲା—ହୋଇ ଆସିଲେ ଅରଷ୍ଟୋକ୍ରାଟ ବାବୁମାନେ । ଶବ ପଡ଼ିରହିଥିଲା ନର୍ଦ୍ଦମା ପାଖରେ—କେହି ଆସୁ ନ ଥିଲେ ।

ଚଳନ ଅନୁସାରେ ଶବକୁ ଛୁଇଁ ବସି ରହିବା କଥା । ଅଶୋକକୁ ଏଇ କାମ ନ ଥା । ସେ ଟାଇଟ୍ ପ୍ୟାଣ୍ଟ ପିନ୍ଧି ଯାଇଥିଲା ।

କ'ଣ କରିବାକୁ ହେବ—ଏତକ କେହି ନ କହି ଖାଲି ଅଟା ବନ୍ଧୁପ ।

ଅଶୋକ ଚେକ ହୋଇ ବସିଥିଲା ।

ପଚାରିଲା—ତଳେ କ'ଣ ବସି ପାରିବ ?

—ହଁ । ଆଉ କ'ଣ ଏମିତି ବସି ହବ ? ଜାଣି ନାହଁ ତ ଆସିଛ କାହିଁକି ?

ସେଇଠୁ ଅଶୋକ ମାମିର ଶବ ଉପରେ ହାତ ଦେଇ ତଳେ ଚଟାଣରେ ବସି ରହିଥିଲା ।

କଥା ଶୁଭୁଥାଏ । ମାମି ସବୁ କଥା କହି ଯାଇଛି । ଟେପ୍-ରେକର୍ଡରେ ଆମେ ଉଠାଇ ନେଇଛୁ । ଶାଶୁ କେମିତି ସବୁ ଅତ୍ୟାଚାର କରିଥିଲା ସେ ସବୁ କହି ଯାଇଛି । ସମସ୍ତେ ଶୁଣିଛନ୍ତି ।

ଶ୍ମଶାନରେ ଅପେକ୍ଷା ଗୃହରେ ସମୁଧି ଭଜନ ବାବୁ, ସମୁଧି ଶରତ ବାବୁ ଓ ଝିଅର ଭାଇମାନେ ଥାନ୍ତି ।

ତଳେ ବାରଣ୍ଡାରେ ଥାନ୍ତି ଶ୍ରୀ ହୃଷୀକେଶ ମିଶ୍ର ଅବସର-ପ୍ରାପ୍ତ ହେଲ୍‌ଥ ଡାଇରେକ୍ଟର ଡକ୍ଟର ବ୍ରଜକିଶୋର ଦାସ, ଶ୍ରୀ ମୁରଲୀଧର ମିଶ୍ର, ଆଡଭୋକେଟ୍ ଶ୍ରୀ ଅଶୋକ ମିଶ୍ର, ମୁରଲୀ ବାବୁଙ୍କ ପୁଅ ମୁନା ବାବୁ, ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ, ଶ୍ରୀ ଶୌର୍ଯ୍ୟପ୍ରକାଶ ମହାନ୍ତି ଓ ମୋର ସାନ ଭାଇ ସୀରବାବୁ ଓ ମୁଁ ଓ ମୋର ପୁଅ ଅଶୋକ ।

ବଡ ବସିଥାଏ ମାମିର ଶବ ଉପରେ ହାତ ଦେଇ ।

ଶ୍ମଶାନର ଦୁର୍ବଳ କର୍ମ କରା ହୋଇଥାଏ ।

ଶେଷକୁ ମୁଖାଗ୍ନି ଦିଆଗଲା । ଜଳନ୍ତା ସଳିତା ନେଇ ମାମିର ମୁହଁ ଉପରେ ଥୋଇଲା ବେଳେ ବଡ ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ିଥିଲା ।

ମୁଁ ନିଜେ ମୋର ବାପାଙ୍କର ଓ ମାଆର ମୁଖାଗ୍ନି ଦେଇଛି ଏଇ ଶ୍ମଶାନରେ । ମୋର ଆଖିରୁ ଲୁହ ଗଡ଼ି ନ ଥିଲା ।

ମୋର ବାପାଙ୍କର ମରଣ ପାଇଁ ମୁଁ ପ୍ରଥମ ଥର କାନ୍ଦିଥିଲି ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧରେ । ମୋର ମାଆ ପାଇଁ ମୁଁ ଅଦ୍ୟାବଧି ଏଇ ଚଉଦ ବର୍ଷ ମଧ୍ୟରେ କାନ୍ଦି ନାହିଁ ।

ସେମାନେ ଥିଲାବେଳେ ଭାବୁଥିଲି ଯେ ସେମାନଙ୍କର ଅବର୍ତ୍ତ-ମାନରେ ସ୍ଥିତି ସମାନ ରହିବ । କିନ୍ତୁ ମୋର ବାପାଙ୍କର ମରଣର ଅଠେଇଶି ବର୍ଷ ପରେ ଓ ମୋର ମାଆ ମରିବାର ଚଉଦ ବର୍ଷ ପରେ

ସେମାନଙ୍କର ଅଭାବ ମନରୁ ଛୁଟେଇ ପାରନାହିଁ । ଏଣେ ସେମାନଙ୍କର ମରିବାର ବୟସରେ ନିଜେ ଆସି ପହଞ୍ଚି ଗଲିଣି ।

କୌଣସି ସ୍ୱାମୀକୁ ତାହାର ସ୍ତ୍ରୀର ମୁଖାଗ୍ନି ଦେବା କେବେ ଦେଖି ନ ଥିଲି । ମାମିର ମରଣରେ ଦେଖିଲି । ଜଣେ ସ୍ୱାମୀ ତାହାର ସ୍ତ୍ରୀ'ର ମରଣ ପାଇଁ କାନ୍ଦି ପାରେ—ଏତକ ମତେ ବିଶିଷ୍ଟ ସାହିତ୍ୟିକ ଅଧ୍ୟାପକ ନରସିଂହ ସାହୁ ଉପନ୍ୟାସ ଲେଖି ଓ କହି ବୁଝାଇ ଥିଲେ । କିନ୍ତୁ ପ୍ରତ୍ୟକ୍ଷ ଅନୁଭୂତିକୁ ଆସିଲା ଚଉରାଅଶି ମସିହା ଅଗଷ୍ଟ ପନ୍ଦର ତାରିଖ ରାତି ନଅଟା ବେଳେ ।

ବିଜୁଳି ଚୁଲି ପାଖକୁ ବବ ଯାଇଥିଲା ଶବ ସାଙ୍ଗରେ । ମୁଁ ମଧ୍ୟ ଯାଇଥିଲି । ମୋର ସରଳ ସୁକୁମାରୀ ବୋଉଟିକୁ ହାତ ଟେକି ପ୍ରଣାମ ଜଣାଇ ବିଦାୟ ଦେଇ ଆସିଛି ।

କିନ୍ତୁ ମୋର ହୃଦୟରେ ଯେଉଁ କ୍ଷତ ସେ କରି ଦେଇଯାଇଛି ସେ କଥା ଭାବିଲେ ମୁଁ ଅନେକ ସମୟରେ ବିକ୍ଷୁବ୍ଧ ଓ ବିହ୍ୱଳ ହୋଇ ପଡ଼େ ।

ମଣିଷର ଯେ ଯଥେଷ୍ଟ ହୃଦୟ ଅଦ୍ୟାବଧି ବଳିଛି ସେଇ ଅଗଷ୍ଟ ପନ୍ଦର ରାତିରେ ମୁଁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଉପଲବ୍ଧ କରିପାରିଛି ।

ବିଜୁଳି ଚୁଲି ଭିତରକୁ ଶବ ଗଲା । ମୁଁ ମଧ୍ୟ ସେଇ ସ୍ଥାନ ଛାଡ଼ିଲି । ଭଣୋଇ ହିମାଂଶୁ ବାବୁ ଅବସନ୍ନ ହୋଇ ବସିଥାନ୍ତି ।

ମଟରରେ ଫେରିବାକୁ ମନ ଡାକିଲା ନାହିଁ । ବୋଉ କ'ଣ କହିବ ବୋଲି ମରିବା ଆଗଦିନ ଚାହିଁ ଥିଲି । ନିଜର ଦୁର୍ଯୋଗରୁ ଓ ସମୟ ଉପଯୋଗ କରି ନ ପାରି ମୁଁ ମୋର ଅବଶିଷ୍ଟ ଜୀବନ ପାଇଁ ଗୋଟିଏ ମଣିଷର ଶେଷ କଥା କେଇପଦ ଶୁଣିବାକୁ ଚାହିଁ ମଧ୍ୟ ଶୁଣି ପାରିଲି ନାହିଁ ।

ଅସ୍ଥି ତହିଁ ଆରଦିନ [illegible] ଗଲା । ସେ ଖବର ଟିକକ ମଧ୍ୟ ପାଇ ପାରିଲି ନାହିଁ ।

ହୁଏତ ତାର ଶେଷ ଦର୍ଶନ ମଧ୍ୟ କରି ପାରି ନ ଥାନ୍ତି । ଗୃହୁଁ ଗୃହୁଁ ତାହାର ଅବଶେଷ ମଧ୍ୟ ଚାଲି ଯାଇଥାନ୍ତା ।

ଅଦରକାରୀ ପଶୁଙ୍କୁ ବଞ୍ଚାଇ ରଖିବାକୁ ମୋର ସାଧ୍ୟ ବାହାରେ ଚେଷ୍ଟା କରିଛି । ଗୋଟିଏ ମଣିଷକୁ ମୁଁ ବଞ୍ଚାଇବାକୁ ଚେଷ୍ଟା ମଧ୍ୟ କରି ପାରିଲି ନାହିଁ । ଏତେ ଶୀଘ୍ର ଏମିତି ସେ ଚାଲି ଯାଇ ପାରେ ଏତକ ମଧ୍ୟ ଭାବି ପାରିଲି ନାହିଁ ।

ଏବେ ମୋର ଅନୁଭୂତିରେ ଅଛି ଯେ ମୁଁ ଅନେକ କଥା ଜାଣି ପାରିଛି ଆଗରୁ । କିନ୍ତୁ ମାମିଙ୍କୁ ଦେଖି ମଧ୍ୟ ସେଇ ବିପଦ ଓ ସେଇ ଶରୀର ବିଦାୟର ସାମାନ୍ୟ ସୂଚନା ପାଇ ପାରିଲି ନାହିଁ ।

ତାହାଙ୍କର କାର୍ଡ ବାଣ୍ଟିଲି ବେଳେ ଭବିଷ୍ୟତ୍‌ଦ୍ରଷ୍ଟା ଶ୍ରୀମତୀ ନିର୍ମଳା ପଣ୍ଡା କହିଲେ—ଏଇ ବିଭାଘର ଶୁଭ । କାରଣ ବାଇଶି ସଂଖ୍ୟାଟି ଶୁଭ । ଏଇ ବୋହୂ (ଅମିତା) ଘରକୁ ଲକ୍ଷ୍ମୀ ଆଣିବ । ତାଙ୍କ ମତରେ ଏଇ ପରି ଯୋଡ଼ା ସଂଖ୍ୟା କ୍ୱଚିତ୍ ମିଳିଥାଏ ।

ନିର୍ମଳା ଦେବୀଙ୍କର ଭବିଷ୍ୟତ କଥା କହିବାର ଶକ୍ତି ଓ କ୍ଷମତା ଦେଖିଛି ଓ ଜାଣିଛି । ତାଙ୍କର ମଧ୍ୟ ଏଇ ପ୍ରମାଦ ହେଲା କେମିତି ? ମାମିର ଟିପ୍‌ପଣୀ କିଏ ସେମାନେ ଭୁଲଭାଲ କରି ଦେଇଥିଲେ ? ଈଶ୍ୱର ଜାଣନ୍ତି କାହାର ବିଗ୍ରହର ବିମର୍ଷ କିପରି ଥିଲା ।

ବବି ଓରଫ୍ ଜୀବନ ଓରଫ୍ ଶୁଭେନ୍ଦୁ ତାହାର ଭାଇ ଶୌର୍ଯ୍ୟ ଓ ଅଶୋକ ସହିତ ମୁନାବାବୁଙ୍କ ଗାଡ଼ିରେ ଫେରିଲେ ପୁରୀଘାଟ । ସେଇଠି ଶୌର୍ଯ୍ୟ ଓହ୍ଲାଇ ତାହାର ଭଉଣୀ ଭଣେଇ, ମାମୁଁ ମାଇଁଙ୍କ ସାଙ୍ଗରେ ଭୁବନେଶ୍ୱର ଯିବ । ପାଗ ଖରାପ ଅଛି ।

ପୁରୀଘାଟର ଘାଟଘର ପାଖରେ ଗାଡ଼ି ରଖି ନଈକୁ ଗଲେ । ଫେରିଲା ବେଳକୁ ସମ୍ବନ୍ଧୀ ବିଜନ ବାବୁଙ୍କର ଗାଡ଼ି ଆସି ସେଠି ରହିଲା । ବିଜନ ବାବୁ ବବିକୁ ପଚାରିଲେ—

—ବବି, ଡୁବିବାକୁ ଯାଇଥିଲ ?

—ହାଁ ।

—ହଉ । ଡ଼ୁବ ଡ଼ୁବ । କେତେଥର ପୁଣି ଡ଼ୁବିବ ।

କହି ଗାଡ଼ି ଚଳାଇ ଚାଲିଗଲେ ଶହେ ମିଟର ଦୂରରେ ତାଙ୍କର ନିଜ ଘରକୁ ।

ଇଏ ହେଲା ବର୍ତ୍ତମାନଙ୍କର କଥା । ଓଡ଼ିଶା ସରକାରଙ୍କର ଗଭର୍ଣ୍ଣମେଣ୍ଟ ଆଡ଼ଭୋକେଟ ହାଇକୋର୍ଟ ଜଜ ହେବାର କଥା । ଖାଲି ଜାତିଆଣ ବିଚାର ତାଙ୍କର ପଦୋନ୍ନତିକୁ ବାଧା ଦେଉଛି । କିନ୍ତୁ ହଜାରେ ମାଇଲ ଦୂରରୁ ଗୋଟିଏ ଜୋଇଁ ରାତି ଅନିଦ୍ରା ହୋଇ ଧାର ଉଧାର କରି ଟଙ୍କା ଯୋଗାଡ଼ କରି ପ୍ଲେନ ଟିକଟ୍ ଧରି ନିଜର ଶହେ ପନ୍ଦର ଦିନର ବିବାହ ପରମାୟୁ ଭିତରେ ସ୍ତ୍ରୀର ଶବରେ ମୁଖାଗ୍ନି ଦେବାକୁ ଯେ ଆସି ପହଞ୍ଚିଥିଲା ତାହାର ପୁରସ୍କାର ଜଣେ ଓଡ଼ିଆ କରଣ ସାମନ୍ତ ଚଉରାଅଣି ମସିହା ଅଗଷ୍ଟ ପନ୍ଦର ତାରିଖ ରାତି ଦଶଟାବେଳେ କାଠମୋଡ଼ୀ ବନ୍ଧରେ ଦେଇଗଲା ।

ମନୀଷମାନେ ଏବେ ଏହି ପ୍ରକାରର ଦୟାମାୟା ସ୍ନେହ କରୁଣାର ଅଧିକାଶ ହୋଇ ସମାଜ ଗଢ଼ୁଛନ୍ତି ଓ ନିଜର ଷୋଳ ଅଣା ଧର୍ମ ଅର୍ଥ କାମ ମୋକ୍ଷ ସଂଗ୍ରହ ପାଇଁ ବ୍ୟାକୁଳ ହେଉଛନ୍ତି—ଏହାର ଜୀବନ୍ତ ରୂପ ମୋର ସମ୍ମୁଖ ଭଜନ ବାବୁ ।

ଚାଳିଶି ବର୍ଷ ଆଗର କଥା ।

ଆମେ ଖଣ୍ଡିଏ ଧାନ ଜମି କିଣିଥାଉ କଟକ ସହର ତଳ ନିମାଇସାପୁରରେ । ସେ ଜମିଟିକୁ ଆମକୁ ବିକଲେ ଆମୁକ୍ତାର ଶ୍ରୀ ଇନ୍ଦ୍ରମଣି ମହାନ୍ତି । ତାଙ୍କର ଘର ନିମାଇସାପୁର ।

ଜମିଦାର ମିର୍ଜା ସାହେବ ଖବର ପାଇ ପହଞ୍ଚିଲେ ଶ୍ରୀଯୁକ୍ତ ରାସବିହାରୀ ରାୟ ଆଡ଼ଭୋକେଟଙ୍କ ଘରେ—କଟକର ଗଣେଶ ଘାଟରେ । ମିର୍ଜାଙ୍କର ଏଜେଣ୍ଟ ଠକ ଦେଇଛନ୍ତି । ଜମି ବିକିବା କ୍ଷମତାପତ୍ର ଅଛି ସତ । କିନ୍ତୁ ବାପ୍ପା ଓ ମୁସ୍ତରୀ ଦୁହିଙ୍କୁ ଅଣ୍ଡା କରିବା ଦରକାର ।

ରାସବିହାରୀବାବୁ ଫୌଜଦାରୀ ମକଦ୍ଦମା ଦାଏର କରି ମୁଦାଲଙ୍କୁ ତଲବ କରାଇଦେଲେ ।

ମୁଦାଲ ମୋର ମାଆ—ଶ୍ରୀମତୀ ସୁନ୍ଦରମଣି ଦେଈ ଓରଫ୍ ମନୋରମା ଦେଈ ।

ପୁରୀଘାଟର ବରିଷ୍ଠ ଆଡଭୋକେଟ୍ ଶ୍ରୀ ଗୀରକିଶୋର ରାୟଙ୍କ ଅଫିସରେ କାମକରେ ଟରଣୀ·ଚେଲଙ୍ଗା ବଜାରର ଶ୍ରୀ ଗୋପୀନାଥ ସିଂହ ଖବର ଦେଲେ ଯେ ସେହି ବଜାରର ଶ୍ରୀବତ୍ସ ପଟ୍ଟନାୟକଙ୍କର ସ୍ତ୍ରୀ ନାମରେ ଆଜ ଫୌଜଦାରୀ ତଲବ ହୋଇଛି ।

ଗୀର ବାବୁଙ୍କର ପରାମର୍ଶରେ କବଳ ହୋଇଥିଲି । ଏଣେ ଜଣେ ପରଦାନସିନ୍ ସ୍ତ୍ରୀ ଲୋକ ଯାଇ କଚେରୀରେ ବୁଲିବ ।

ରାସବିହାରୀ ବାବୁଙ୍କୁ ଅନୁରୋଧ କରାଯାଇଥିଲା ସମାଧାନ କରିବାକୁ । ସେଥିପାଇଁ ସେ ପରେ କରିବା କଥା ବରାଦ ଦେବାରୁ ଗୀରକିଶୋର ବାବୁଙ୍କ ମଧ୍ୟସ୍ଥତାରେ ସମାଧାନ କରା ହୋଇଥିଲା ।

ମୋର ମାମୁଁ ଝିଅ ଭଉଣୀ ରାସବିହାରୀ ବାବୁଙ୍କର ବୋହୂ । ମୁଁ ଜାଣେ । କିନ୍ତୁ ବାବୁମାନଙ୍କର କାରବାର ବୁଝି ଥିବାରୁ ମୁଁ ଆଉ ସେହି ସମ୍ପର୍କର ପୁନରାବୃତ୍ତି କରେ ନାହିଁ । ତାହାର ଅନେକ ବର୍ଷ ପରେ ରାସବିହାରୀ ବାବୁଙ୍କର ଦ୍ୱିତୀୟ ପୁଅ ମୋର ସମୁଧି ହେଲେ । ସମୁଧି ହେବାର ଗୃହମାସ ପରେ ତାଙ୍କର ବ୍ୟବହାର ମଧ୍ୟ ଦେଖାଗଲା ତାଙ୍କର ଜୋଇଁଙ୍କ ପ୍ରତି ।

ଏମାନେ ଏବେ ଓଡ଼ିଆ କରଣ ସମାଜର ପ୍ରତିଷ୍ଠିତ ଲୋକ । ଏମାନଙ୍କର ଦେହରେ ଟୋଟିଆ ଗୁଗୁଚିଆ ଲାଗିଗଲେ ଓଡ଼ିଶାର କରଣ ସମାଜ ଥରହର ହୋଇ ଯାଉଛି ।

ମନେ ପଡ଼ୁଛି ଏହି ଅପ୍ରେଲ ମାସରେ ବାହାଘର ଖବର ପାଇଲା ପରେ ଥରେ ସକାଳେ ପୁଣ୍ୟପ୍ରଭା ଦେବୀଙ୍କର ଘରକୁ ଯାଇଥିଲି ।

ମୋର ଅଭ୍ୟାସ ଯେ ନିଜ ଲୋକ ଓ ପର ଲୋକ କାହାରି ଘରକୁ ଗଲେ, ଯଥା ସମ୍ଭବ ବାହାର ପିଣ୍ଡାରେ ବସିଥାଏ । ମୁଁ ଯାଇ ବାହାରେ ବସିଲି ।

ଭଉଣୀ ଆସିଲେ । ଜଣାଇଲେ ଯେ ମାନ୍ୟବର ଗଭର୍ଣ୍ଣମେଣ୍ଟ ଆଡଭୋକେଟ୍ ବାହାଘର ବିଷୟରେ ଆସିଛନ୍ତି । ମୁଁ ଘର ଭିତରକୁ ଯିବା ଦରକାର ।

ଶୁଣି ମୋର ଅସାମର୍ଥ୍ୟ ଜଣାଇ କହିଲି ଯେ ପରେ ଆସିବି । ଏବେ ବ୍ୟସ୍ତ ରହିଛି । ବିଜନ ବାବୁଙ୍କ ସହିତ ତୁମେମାନେ ବିଷୟର ଆଲୋଚନା ଆପେ ଆପେ କରିପାରିବ ।

ଏବେ ଯେମାନେ ମଧ ବେଶ୍ ବୁଝି ପାରୁଥିବେ ଯେ କରଣ ସମାଜରେ ଯଥେଷ୍ଟ ନୃସିଂହ ଅବତାର ଆସିଗଲେଣି । ଆଜି ଦୁଃଖ ନାହିଁ । ନୃସିଂହ ହେଲେ ଅଧା ମଣିଷ ଓ ଅଧା ସିଂହ ।

ପୂଣ୍ୟପ୍ରଭା ଦେବୀଙ୍କର ତିନି ନଣନ୍ଦ । ଜଣେ ବିଭା ହୋଇଛନ୍ତି କଟକ ବଜ୍ରକବାଟିରେ ଡାକ୍ତର ରାଜକିଶୋର ଦାସଙ୍କୁ । ଆଉ ଜଣେ ବିଭା ହୋଇଛନ୍ତି ଟ୍ରାନ୍ସପୋର୍ଟ ଡାଇରେକ୍ଟର କଟକ ମଙ୍ଗଳାବାଗର ଶ୍ରୀ ମୁରଲୀଧର ମିଶ୍ରଙ୍କୁ । ସାନ ନଣନ୍ଦ ବିଭା ହୋଇଛନ୍ତି ଅଣ ଓଡ଼ିଆ ଶ୍ରୀଯୁକ୍ତ ଗୃଜଲ୍ଲାଙ୍କୁ ।

ପୂଣ୍ୟପ୍ରଭା ଦେବୀଙ୍କର ବାପା ଶ୍ରୀ ଶ୍ରୀବତ୍ସ ପଟ୍ଟନାୟକ ବିଭା ହୋଇଥିଲେ କଟକର ଏରମମାରେ । ବିଭାଘର ବେଳକୁ ମୋର ମାଆ ଘର ଅତ୍ୟନ୍ତ ଗରିବ ହୋଇଗଲେଣି । ଦିନର ଚଳିବା ମଧ କଷ୍ଟକର । ମୋର ମା ଅନେକ ଦିନ କଟକ ବଙ୍ଗାଳୀସାହିର ଶ୍ରୀ ପଦ୍ମନାଭ ମହାନ୍ତିଙ୍କ ପରିବାରରେ ଚଳିଛି । ତାଙ୍କର ପୁଅ କଟକର ଅବସରପ୍ରାପ୍ତ ସିଭିଲ ସପ୍ଲାଇ ଅଫିସର ବୀରେନ୍ଦ୍ର ବାବୁ ।

ଶ୍ରୀବତ୍ସବାବୁ ବୁଲି ଆସିଥିଲେ ଗଞ୍ଜାମରୁ—ଘର ସେତେବେଳର ରସେଲ କୋଣ୍ଡା ଓରଫ ଭଞ୍ଜନଗରର ପାଖ ଗକୁ ଦୁଇ ମାଇଲରେ ଥିବା ଗ୍ରାମ ନୂଆଗାଁ ।

ଏବେ ସେଇଟା ଜଗନ୍ନାଥ ପ୍ରସାଦ ନିର୍ବାଚନ ମଣ୍ଡଳୀର ସୀମା ।

ମୋର ବାପାଙ୍କର ବାପା ହେଲେ ଜଗନ୍ନାଥ ପଟ୍ଟନାୟକ । ଗଞ୍ଜାମରୁ ଗ୍ରାମ ଘର ଛାଡି [illegible] । କଟକକୁ ଶେଷରେ

ଆସିଲେ ଦୁଇ ଭାଇ-- ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ମୋର ବାପା ।

ମୋର ମାଆର ବାହାଘର ସ୍ଥିର କରିଥିଲେ ମୋର ବଡ଼ ମାଆ ଶ୍ରୀମତୀ ଆଶାଲତା ଦେବୀ । ସେ ପୂର୍ବ ବଙ୍ଗର ମହିଳା । କଟକ ତେଲଙ୍ଗା ବଜାର ତିନି ଘରେ (ସେତେବେଳେ ଗୁଳଘର ଥିଲା) ମୋର ବଡ଼ ମାଆ ମୋର ମାଆକୁ ବାଛିଥିଲେ ବାପାଙ୍କ ପାଇଁ ।

ସେମାନେ ରହିଲେ ତୁଳସୀପୁର ବଜ୍ର ପଟ୍ଟନାୟକ ଛକ ପାଖରେ । ଆମେ ରହିଲୁ ତେଲଙ୍ଗା ବଜାରରେ । ବାହାଘର ବେଳେ ସେଠି ଭଡ଼ାରେ ଥିଲୁ । ପରେ ଘରଟି କିଣିଲୁ । ଘରର ମାଲିକ ଥିଲେ ସେତେବେଳର ବରିଷ୍ଠ କରଣ ବ୍ୟକ୍ତି ଶ୍ରୀ ଅଦ୍ୱୈତ ପ୍ରସାଦ ଦାସ ।

ଏଇ ଅଦ୍ୱୈତ ବାବୁଙ୍କର ସେତେବେଳେ ଧନ ଓ ମାନରେ ନାମ ଥିଲା । ତାଙ୍କର ଏକାଧିକ ପୁଅ ବୋହୂ ଥିଲେ । ଶୁଣାଯାଏ ଯେ ଏବେ ମୁଁ ରହୁଥିବା ଘର ତଳେ ଭାଗବତ ଗାଦି ଥିଲା । ସେଇ ଜମିରେ ଜଖ ଥିଲା । ରାତିରେ ନିଆଁ ହୋଇ ଜଖ ବୁଲେ । ଧରା ହେଲେ ସେ ମାଟି ସୁନା ହୋଇ ମରିଯାଏ । ପୋତା ଧନ ଜୀବନ ପାଏ ବୋଲି ଲୋକମତରେ ବିଶ୍ୱାସ ।

ପିଲାଦିନେ ଏମିତିକା ନିଆଁହୁଳା ବୁଲିବା ମୁଁ ଦେଖିଛି— ଗୋଟିଏ ମୁଠିଏ ଚଉଡ଼ାର ନିଆଁ ପରି ଦିଶେ ।

ଏଇ ଜଖକୁ ଧରିବା ପାଇଁ ଶ୍ରୀମତୀ ଶୈଳବାଳା ଓ ଆମଘରେ ଭଡ଼ା ରହୁଥିବା ରେଭେନ୍ୟୁ ଅଫିସର ଶ୍ରୀ ଭୀମସେନ ସାହୁ ଏକଜ ଭଗବାନଙ୍କି ସୁନା ନେବେ ବୋଲି ଅନେକ ସାଧକଙ୍କର ସାହାଯ୍ୟ ନେଇଛନ୍ତି ।

ସୁନା ବାହାରିଲେ ସାହି ଲୋକେ ଗଣ୍ଡଗୋଳ କରିବେ । ତାକୁ ଜଗିବେ ଭୀମସେନ ବାବୁ । ଆଉ ସୁନାକୁ ବାଣ୍ଟିକରି ଭୀମବାବୁ ଓ ଶୈଳଦେବୀ ନେବେ ।

ପାଞ୍ଚସାତ ବର୍ଷ ଏଇ ଚେଷ୍ଟା ଚାଲିଲା । ଜଖ ଆଉ ଦେଖାଦେଲା ନାହିଁ । ଧରାପିବ କାହାକୁ ? ବାଧରେ ଏଇ ଯୋଜନା ଛଡ଼ା ହେଲା । ଶ୍ୟାମବାବୁ ଅନ୍ୟତ୍ର ଗଲେ । ଶୈଳଦେବୀ ନିଜର ପୂଜାପାଠରେ ମନ ଦେଲେ । ଜଖ କଥା ପାଶୋରିଗଲା । କିନ୍ତୁ ଶୈଳଦେବୀଙ୍କର ବିଶ୍ୱାସ ଯେ ଜଖ ଅନ୍ୟ କୌଣସି ଭାଗ୍ୟବାନ ହାତରେ ଧରାପଡ଼ିବ ।

ସେଇ ଅଦ୍ୱୈତ ବାବୁଙ୍କର ସୁନା ହୁଏତ ଜଖ ହୋଇଛି । ତାଙ୍କ ଘରେ ବହୁତ ସୁନା ଥିଲା ।

ତାଙ୍କର ଗେହ୍ଲା ବୋହୂ ଶାଶୁଙ୍କଠାରୁ ସୁନାର ଖବର ପାଇଥିଲା ।

ଲୋଭ ହେବାରୁ ବୋହୂ ଥରେ ନିଜର ବାପଘରକୁ ବହୁତ ମଣ୍ଡାପିଠା କରି ପ୍ରତ୍ୟେକ ମଣ୍ଡାରେ ସୁନାରଖି ଭରି କରି ନିଜର ବାପ-ଘରକୁ ପଠାଉଥିଲା ।

ଗୁରୁଆର ବାଟରେ ଇଚ୍ଛା ହେଲା ଖାଉନ୍ଦଘର ମଣ୍ଡାଟିଏ ଖାଇବା ପାଇଁ । ଗୋଟିକୁ ଭାଙ୍ଗିଦେଇ ସୁନା ପାଇଗଲା ।

ସେଇଠୁ ଧୂର୍ତ୍ତ ଭାରକ ମଣ୍ଡା ଭାଙ୍ଗି ସବୁତକ ସୁନା ହାତପଇଠ କରି ଗୋଟିଏ ଗୁଡ଼ିଆକୁ ଉପଯୁକ୍ତ ବିଦାୟ ଦେଇ ଭାରେ ମଣ୍ଡାପିଠା ନେଇ ବୋହୂ ସାଆନ୍ତାଣୀଙ୍କ ବାପଘରେ ପହଞ୍ଚାଇ ଦେଲା ।

ଖୋଜା ହେଲା—ସୁନା ନାହିଁ । ତେବେ ଗଲା କୁଆଡ଼େ ? ଯିଏ ଯାହା ଦୁଃଖରେ ରହିଲେ ।

ଘୁଅମାନଙ୍କ ଭିତରେ ସବୁ ବଣ୍ଟା ହୋଇଗଲା । ସୁନା ମିଳିଲା ନାହିଁ । ଶାଶୁ ଶଶୁର ମରିଗଲେ । ବୋହୂ ଓ ତା'ର ସ୍ୱାମୀ ସେଇ ତେଲେଙ୍ଗାବଜାର ଘରେ ରହିଲେ । ସ୍ୱାମୀ ମରିଗଲେ ।

ସେଇ ବିଧବା ବୋହୂ ପାଗଳି ପରି ହୋଇଗଲା । ଗୋଟିଏ ଝିଅ ଅଛି ।

ମାଆ ଝିଅ ଭିକ ମାଗିଲେ । ମୁଁ ଅନେକ ଥର ତାଙ୍କୁ ଦେଖିଛି ଆମ ଘର ଆଗ ଜଗନ୍ନାଥ ବାବୁଙ୍କ ପିଣ୍ଡାରେ ବସିବା । ମାଆଝିଅର ମୁଣ୍ଡ

*

ବାଳକୁ ପୁଅ ବାଳପରି କାଟିଦେଇ ଥାଏ । ତଥାପି ଝିଅ ଅତି ସୁନ୍ଦର ଦିଶେ ।

ଦେଖିଲେ ସହାନୁଭୂତି ଆସେ । ତେବେ ସେ ସହାନୁଭୂତିଟା ଅପ୍ରକଟ ସହାନୁଭୂତି । କାର୍ଯ୍ୟରେ ଦେଖାଇବାକୁ କିଛି ନ ଥାଏ ।

ଏମିତି ଭାଗ୍ୟର ଉଦୟ ଓ ଅସ୍ତ ହୁଏ । ଆଉ ଏଇ ଉଦୟ ଅସ୍ତ ପାଇଁରେ ଭାଗ୍ୟର କୌମୁଦୀ ତଳେ ବସିଥିବା ମଣିଷର ମଧ୍ୟ ଉଦୟ ଅସ୍ତ ହୁଏ । କ'ଣ ପାଇଁ କ'ଣ ଘଟେ ବୁଝିହୁଏ ନାହିଁ । ବୁଝିଲେ ମଧ୍ୟ କିଛି ହୁଏ ନାହିଁ ।

ମୋର ବଡ଼ବାପା ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏମ. ବି. ଇ. (ମେମ୍ବର ଅଫ୍ ବ୍ରିଟିଶ ଏମ୍ପାୟାର) ହୋଇଥିଲେ ଓଡ଼ିଶାର ଓଡ଼ିଆଙ୍କ ମଧ୍ୟରେ ସର୍ବ ପ୍ରଥମ—ଅଠର ମସିହାରେ ।

ସେତେବେଳେ ତାଙ୍କର ଦୁଇ ପୁଅ—ଡାକ୍ତର ଜର୍ଜ ବାବୁ, ବିଜୁ ବାବୁ ଓ ଝିଅ ଶ୍ରୀମତୀ ସୁକୃତି ଦେବୀ । ତା'ପର ଦୁଇ ବର୍ଷରେ ତାଙ୍କର ସାନପୁଅ ଶ୍ରୀ ଜୟାନନ୍ଦ ଓରଫ ପିଜୁ ବାବୁ ।

ଜର୍ଜବାବୁ ବଡ଼ ହେଲେ କଲିକତାରେ । ବିଜୁବାବୁ ଗଲେ ପଞ୍ଜାବ । ପିଜୁ ବାବୁ ସିନ୍ଧ୍ । ଝିଅ ରହିଲେ କଟକରେ ମକରବାଗ ସାହିରେ—ଏବେ ସେ ଭୁବନେଶ୍ୱର ତିନ ନମ୍ବର ୟୁନିଟ୍‌ରେ ।

ସେଇ ବଡ଼ମାଆ ବା ଜେଠେଇ ମାଆ ହେଲେ ଆମ ଦୁଇଟି ପରିବାରର ମୁରବି । ଜଣେ କଟକର ଏରସମାର ଝିଅ । ଆଉ ଜଣେ ଚଟଗ୍ରାମ ଅଞ୍ଚଳର—ମହିସ୍ଥିର ହଜାରେ ମାଇଲ ।

ପଚିଶ ବର୍ଷ ତଳେ ସେଇ ବଡ଼ମାଆ ଝିଅ ବାଛୁଥିଲେ ଓଡ଼ିଆ ଅର୍ଦ୍ଧସାହିର ମଫସଲ ପରିବାରରୁ । କାରଣ ମୋର ବାପାଙ୍କର କଟକରେ କେହି ନାହିଁ । ଅଜ ବାପାଙ୍କୁ ଝିଅ ଦେଖାଇ ପସନ୍ଦ କରାଇବ କିଏ ? ବା କେମିତି ? କିଛି ନ ଜାଣି ମୋର ବାପା ବି ବାହା ହେବେ କିପରି ?

ବାଉଁଶ ଝିଅ ମଧ୍ୟ ବାହାଘରର ସାକ୍ଷାତକାର ପାଇଁ ଆସିବ କେମିତି ? ହୋଇପାରିବ ନାହିଁ । ବରଂ ଦଉଡ଼ି ଦେବା କି ଜହର ଖାଇବା ଶ୍ରେୟସ୍କର । ଏତେ ଲାଜ କଥା ଓଡ଼ିଆ ଘରେ ସତୁରି ବର୍ଷ ତଳେ ସମ୍ଭବ ନୁହେଁ ।

ସେଥିପାଇଁ କଥା ହେଲା—ବାଳମୁକୁନ୍ଦ ବାବୁ ଡ଼ପୋଟି ପଠାଇବେ ଜଣେ ପରକାଶ ସ୍ତ୍ରୀ ଲୋକକୁ । ସେଇ ମହିଳା ଆସି ସିଲେଇ ଶିଖେଇବେ । ଏଇ ଝିଅ ଶିଖିପାରିବ କି ନାହିଁ—ପରୀକ୍ଷା କରିବେ ।

—କଲେ ସୁନ୍ଦରମଣି, ହାରିଯିବୁ ? ସିଲେଇ ମାଷ୍ଟରଆଣୀ ପାଖରେ ?

—କାହିଁକି ହାରିବ ? ଶେଙ୍କଟୋକ୍ ତାକୁ ମୁହେଁ ମୁହେଁ ବତାଇବ ।

ସେଇ ସିଲେଇ ମାଷ୍ଟରଆଣୀର ଛଦ୍ମ ବେଶରେ ଆସିଲେ ମୋର ବଡ଼ ମାଆ ଶ୍ରୀମତୀ ଆଶାଲତା ।

—ନାମ ?

—ସୁନ୍ଦରମଣି ଦେଈ ।

—ପଢ଼ିଛ ?

—ଅଳ୍ପ ।

—ରାନ୍ଧିଜାଣ ?

—ହଁ ।

—ସିଲେଇ ଶିଖିବ ?

—ହଁ ।

ଏତିକିରେ ବଡ଼ ମା ଉଠିଲେ । ଉଠିବା ଆଗରୁ ସେମିତି ଭିତରେ ଟିକିଏ ହାତ ପୂରାଇ କ'ଣ ଦେଖିଲେ ।

ସେ ଭୁଲିଲେ ।

ମୋର ମାଆ୍ ଅତି ବ୍ୟସ୍ତ । ସିଲେଇ ବି ଶିଖାଇଲ ନାହିଁ ତ ।
······ଭଲ ଓଡ଼ିଆ କହିପାରୁ ନାହିଁ । ପୁଣି ସେମିଜ କ'ଣ କଲ ?—
ହଉ ହଉ । ସିଲେଇ ମାଷ୍ଟରଆଣୀ କଥାକୁ ଧରିବା କ'ଣ ?

ପରେ ବୁଝାଗଲ ଯେ ଝିଅ ପସନ୍ଦ ହୋଇଛି । କୋଉ ଅବା ଏତେ ଦରକାର ଶହେ ଝିଅ ଦେଖି ଗୋଟାକୁ ବାଛିବା ?

ବାହାଘର ପକ୍କା ହୋଇଗଲା । ଦୁଇ ପକ୍ଷ ଟଙ୍କବ । ଜଣକର ଚାକିରି ଅଛି—ଚାକିରି ଚାଳଗଛ ଗ୍ରାଚ । ସିଏ ପୁଣି କଲିକତାରେ । ଦରମା ମୋଟେ ଅଶିଟଙ୍କା । ଜମି ନାହିଁ । ଜମିବାଡ଼ି ଗ୍ରାଡ଼ି ଭାଇମାନେ ଚଳାଇ ଆସିଛନ୍ତି ।

କନ୍ୟାଘରେ ଜମି କିଛି ଅଛି—ଜ଼ାଆରମଡ଼ା ବିଲ । ଟଙ୍କା ନାହିଁ । ସୁନା ନାହିଁ । ପିତଳ ଅଛି । ରୂପା ଅଛି । ମୁରବୀ ନାହାନ୍ତି—ବିଧବା ମାଆ ଅଛି । ଜୋଇଁଟା ବୁଢ଼ା—ବୟସ ଅଣତିରିଶି ।

କାଢ଼ବୋବାଳି ପଡ଼ିଲା । ବାହାଘର ପଛକେ ନ ଜୁଟୁ, ବର ହେବ ବଶ୍ ବାଇଶ ! ନ ହେଲେ ଅଦ୍ଧାଙ୍ଗିନୀ ମୁଣ୍ଡରେ କଆ ଉଡ଼ିବ ।

ମୋର ବାପା ବାହା ହବାକୁ ଗଲେ—ଅଧାବାଟ ଘେଞ୍ଚେଇ ବସ୍ ଓ ଅଧାବାଟ ଗୋରୁ ଗାଡ଼ି । ମଟର କମ୍ପାନି ହେଉଛି ସେଇ ଅଞ୍ଚଳର ଜଗତସିଂହ ପୁର—ଗୃଟବର ଜମିଦାର ପୁଲିସ ସାହେବ ଦେବାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କର ।

ସେଠି ମାମୁଁମାନେ ଆସି ଖବର ନେଲେ—ବାପା ହେଲେ ଗଞ୍ଜାମି । ତେଣୁ ମୋଟେ ସୁବିଧା ଲୋକ ହେବ ନାହିଁ । ତଥାପି ବୁଝିବାକୁ ପଡ଼ିବ—ଜୋଇଁ କେତେ ପାଉଛି ?

—ଦରମା କେତେ ?

—ମାସକୁ ଅଶି ଟଙ୍କା ।

—ଆଉ ଉପୁରି ?

—ସେଇଟା ନାହିଁ । ତମର କ'ଣ ଉପୁରି ଦରକାର ?

ଏତିକିରେ ମୋର ମାଆ ଘରେ ହାଲେଲ ପଡ଼ିଗଲା—ଏଇ ଝିଅଟା ଆଉ ଜୀବନରେ ରହିବ ନାହିଁ । ତେଲଙ୍ଗା ଟୋଇଁଟା ବଡ଼ ଅବାଗିଆ ବଦମାସ ପରି ଦିଶୁଛି ।

ମୋର ଏରସମା ମାମୁଁ ଘରେ କାନ୍ଦଣାବୋବାଳି ପଡ଼ିଗଲା । ମାଆର ଗୋଟିଏ ଭଉଣୀ ଭଣେଇ କହୁଛି ନ ବୁଝି କୁଆଡ଼ୁ ଗୋଟାଏ ଧରିଆଣି ଏଇ ଝିଅଟାକୁ ବିକି ଦେଲେଣି—କଲିକତାରେ ।

ଝିଅ ବିଭା କାନ୍ଦ ସାଙ୍ଗକୁ ଝିଅର ଭବିଷ୍ୟତର ଦୁଃଖ । ସେଦିନ ଏରସମା ଗାଁର ଧନିକର ପଟ୍ଟନାୟକ ଘରର ବଡ଼ଘର ଓ ମାଲିକ ଉପେନ୍ଦ୍ର ପଟ୍ଟନାୟକଙ୍କର ଝିଅ ସୁନ୍ଦ ପୂରା ବରବାଦ ହୋଇଗଲା । ଆଉ ଗୃହ ଛଅମାସରେ ସେଇ ଝିଅର ପତ୍ତା ନ ଥିବ ।

ଗୋଟିଏ ମାମୁଁ ସାହସ କରି ଆସି ପଚାରିଲେ—କଲିକତା ଠିକଣା କ'ଣ ?

—କ'ଣ ପାଇଁ ? ଯିବ କି ?

—କେତେବେଳେ ସୁବିଧା ହେଲେ ।

—ହଉ, ମୁଁ ତୁମମାନଙ୍କୁ କହୁଛି ଯେ କଲିକତା ବଡ଼ ମହଙ୍ଗୀ ଜାଗା । ସେଠି ରହିବାକୁ ଘର ଗୋଟେ । ଏକଦମ୍ ଦରକାର ନ ପଡ଼ିଲେ କଲିକତାକୁ ଆସିବ ନାହିଁ ।

ପୁଣି ହେଲା ବିଦ୍ରୋହ ।

—ଶୁଣ ମ । ଏଇ ଟୋଇଁ ଟୋକା କହୁଛି ଯେ ଆମକୁ କଲିକତା ବାସନ୍ଦ । ···ଆମେ ଝିଅକୁ ଛାଡ଼ିବା ନାହିଁ ।

ଝିଅକୁ ନ ଛାଡ଼ିବା କଥା ହେବାରୁ ପୁଣି ଦଫେ କାନ୍ଦବୋବାଳି ପଡ଼ିଲା ।

ଏତେ କଷ୍ଟରେ ବର ଯୋଗାଡ଼ ହେଲା । ହାତଗଣ୍ଠି ପଡ଼ିଲା । ଭଲ କଥା ପଦେ ବି ନାହିଁ । ଯିଏ ଯାହା ପାରିଲେ ମୋର ମାଆକୁ ଆସି ବୁଝେଇ ଦେଇଗଲେ ଯେ ଈଶ୍ୱର ଆମ ବଂଶ ପାଇଁ ବଡ଼ ନିଷ୍ଠୁର ।

ଦୁର୍ଯୋଗକୁ ବାହାଘର ମୋର ମାଆ ମରିଗଲେ ହଇଜାରେ । ମରିବା କଥା ଜାଣିଲେ ବାହାଘରକୁ ଅଶୁଭ ଆ ହବ ବୋଲି ମୋର ମାଆଙ୍କ ଶବକୁ କବାଟ ବନ୍ଦକରି ରଖିଲେ । ଏଣେ ହାତଗଣ୍ଠି ପକାଇଲେ ।

ମୋର ବାପାଙ୍କ କଥା, ମୋର ମାଆର ବିଧବା ମାଆ ମରିବା କଥା ସାରା ଗଞ୍ଜାମ ଜୋଇଁ । ତାହାର ଓଡ଼ିଆ ଏମାନେ ବୁଝନ୍ତି ନ ଥାନ୍ତି । ଶୁଭଚଳଣରେ ଆଜନ୍ମ ଅଶୁଭ ଆ । କିପାଇଁ ସାଥେ ସାଥେ ଝିଅ ବିଦା କରିଦେଲେ ।

ବାପା ବି ଖୁସି । ସଙ୍ଗରେ ଯେଉଁ ଗୋଟାଏ ଅଧେ ବରଯାତ୍ରୀ ଯାଇଥିଲେ ସେମାନେ ବି ଖୁସି । ଏଇ ଜାଗାରୁ ପଳାଇବା ଭଲ ।

ତେଣୁ ଯୌତୁକ, ହଉଛିଆ, ତାଲିକା, ବେଭାର ଆଦି ସବୁ ବନ୍ଦ । ଦୁଇପକ୍ଷ ଖୁସି ଯେ ଶୀଘ୍ର ସେ ତାଙ୍କୁ ଓ ସିଏ ସ୍ୱାଙ୍କୁ ଛାଡ଼ିବେ ।

ଇଏ ହେଲା ଗୋଟିଏ ବାହାଘର—ଆରମ୍ଭ ଯେମିତି ଶେଷ ବି ସେମିତି । ବର ଓ କନ୍ୟା ଚାଲିଗଲେ । ମୁର୍ଦ୍ଦାର ସତ୍କାର ହେଲା । ଈଶ୍ୱର ଇଜ୍ଜତ ବଞ୍ଚାଇ ଦେଲେ ବାହାଘର, ମୃତକା, ସବୁ ଏକାଠି ହୋଇଗଲା । କେହି ଜାଣିଲେ ନାହିଁ ।

ତାହାର ଆଖାପାଖି ସତୁରି ବର୍ଷ ପରେ ସେଇ ମାଆର ସାନ ମଝିଆଁ ଝିଅ ଶ୍ରୀମତୀ ପୁଣ୍ୟପ୍ରଭା ନିଜର ପୁଅ ଶୁଭେନ୍ଦୁ ବାବୁଙ୍କ ପାଇଁ କନ୍ୟା ଯୋଗାଡ଼ରେ ରହିଲେ ।

ପ୍ରାୟ ଶହେ ଖଣ୍ଡେ ପ୍ରସ୍ତାବ ଧରିଲେ—କିଏ ତଳକୁ, କିଏ ଅଧେ ଓ କିଏ ଅଧିକ । କିଛି ନା କିଛି କାରଣରୁ ମନକୁ ଯାଏ ନାହିଁ । ସବୁଠାରୁ ବଡ଼ ସମସ୍ୟା ହେଲା ଯେ ଗୋଟିଏ ବୋଲି ପୁଅର ବୋହୂ ମାଲିକ ହେବ ଓ ସବୁରିକୁ ପ୍ରତ୍ୟେକଙ୍କ ପରି କରି ସବୁରି ହେବ ସେଇ କନ୍ୟା ।

ଶେଷରେ ବୁଲି ବୁଲି ଥକା ଲାଗିଲାବେଳେ ମିଳିଲା ଶ୍ରୀମତୀ ଅମିତା ଓରଫ ମାମି । ସରଳ ଓ ଶାନ୍ତ । ସବୁଠାରୁ ବଡ଼ ବିଷୟ ହେଲା ନିଜେ ପୂର୍ଣ୍ଣପ୍ରଭା ଦେବୀଙ୍କ ପରି ସେ ବି ତାଙ୍କ ମା'ଙ୍କର ଆଠ ନଅ ପିଲାରେ ଜଣେ ।

ପୂର୍ଣ୍ଣପ୍ରଭା ଦେବୀଙ୍କର ଶଶୁର ଶ୍ରୀ ହରମୋହନ ପଟ୍ଟନାୟକ ସନ୍ଧିବେଳେ କହୁଥିଲେ ଯେ ବୋହୂର ଏତେ ଭାଇ ଭଉଣୀ ଅଛନ୍ତି । ତାଙ୍କର ପୁଅର ଭଲମନ୍ଦରେ ସେମାନେ ଠିଆ ହେବେ । ବୋହୂ ବି ଦେଖିଲେ ସେଇକଥା । ଭାବିନେଲେ ଯେ ତାଙ୍କ ପୁଅ ଶୁଭେନ୍ଦୁ ବାବୁଙ୍କର ଭଲ ମନ୍ଦ ଦରକାରରେ ତାଙ୍କୁ ସାହାଯ୍ୟ ମିଳିବ ।

ଥାକକୁ ଥାକ ଠିକ୍ ମିଶିଲା । ସେଇଠି କଥା ପକ୍କା ହୋଇଗଲା ।

ଏଣେ ଯେଉଁ ଶହେ ନମ୍ବର ପାଖାପାଖି ଝିଅଙ୍କ କଥା ସେ ତଥାପି କରି ନ ଥିଲେ ସେମାନେ ଓ ତାଙ୍କର ଶୁଭେଚ୍ଛୁ ଓ ଭଲ ଲୋକ ସମସ୍ତେ ଗୋଟିଏ କଥା କହି ବୁଲିଲେ—ଆଚ୍ଛା, ଦେଖିବା ପୂର୍ଣ୍ଣପ୍ରଭା କେମିତିକା ବୋହୂ ଆଣିଲା ଓ କେତେ ପାଇଲା ?

ବୋହୂ ଆସିଲା ଠିକ୍ । କିନ୍ତୁ ପାଇବାର କଥା ନାହିଁ । ଯୌତୁକ ଦରକାର ନାହିଁ । ପୁଅ ଓ ବୋହୂ ରହିବେ ଦିଲ୍ଲୀରେ—ସେଠିକି ଖଟ ବେଞ୍ଚ ଯାଇପାରିବ ନାହିଁ । କଟକରେ ଦରକାର ନାହିଁ ।

ମୋର ସମୁଧି କହିଲେ—ସ୍ୱା କେମିତି ହବ ? ଫରେଷ୍ଟ କର୍ପୋରେସନରେ ଟଙ୍କା ଦେଇ ଦୁଇଟା ଖଟ, ଗୋଟିଏ ଡ୍ରେସିଙ୍ଗ ଟେବୁଲ ଓ ଗୋଟିଏ ଘୃରିଫାଟିଆ ଆଲମାରୀ ତିଆରି ସରିଛି । ଆଗରୁ ଗଣ୍ଡିଯିବା ବାହାଘର ପାଇଁ ହୋଇଥିଲା । ସେତକ ନେବାକୁ ହେବ— ଆଉ କିଛି ନାହିଁ ।

—ଖୁବ ଭଲ କଥା । ସେତକ ବି ଅସୁବିଧା । ହେଲେ ଦିଅ ।

ସମୁଧି ବ୍ରଜବାବୁ ଭାରି ସ୍ନେହୀ ଲୋକ । ସେ ଗୋଟିଏ ଛ'ଫାଟିଆ ଗଡ଼୍‌ରେଜ ଆଲମାରୀ ବି ଦେଲେ । ସିଏ କଣା ହୋଇଥିଲା ବ୍ୟାଙ୍କ୍

ଟିଫରଙ୍କ ଘରକୁ ଫୋନ କରିବା ପାଇଁ । ସେ ବାହାଘର ଭାଙ୍ଗିଗଲା । ବଡ଼ ଜୋଇଁ ଆମେରିକା ଚାଲିଗଲେ । ତେଣୁ ମାମି ଦେବୀ ସେନକ ମଧ୍ୟ ଆଣିବାକୁ ବାଧ୍ୟ ହେଲେ ।

ଏବେ ଝିଅଙ୍କ ବେଳକୁ ସେଇ ଆଲମାରି କଟକ ମଙ୍ଗଳାବାଗ ଘରର ପିଣ୍ଡାରେ ଥୁଆ ହୋଇଛି । ଅଣଓସାରିଆ ସିଡ଼ିବାଟେ ବୋହୂର ଶୋଇବା ଘରକୁ ଯାଇପାରିଲା ନାହିଁ । ଏଣେ ପୁଲିସ୍ ଆସି ସେଇ ଯୌତୁକ ତାଲିକାଟି ଧରି ନେଇଛନ୍ତି । ପରୀକ୍ଷା କରି ଦେଖିବାକୁ ଏହା ଅଗଷ୍ଟ ଚଉଦ ମୃତ୍ୟୁଟି କ'ଣ ମତରେ ଆତ୍ମହତ୍ୟା ବା ଯୌତୁକ ପାଇଁ ହତ୍ୟା ?

ଏଣେ ମଙ୍ଗଳବାର ପନ୍ଦର ଦିନ ପରେ ପରେ ମୋର ସମ୍ବନ୍ଧୀ ଆସି କହିଲେଣି—ହିମାଂଶୁ ବାବୁ ଭଲ ଲୋକ । ତାଙ୍କୁ କହି ଯୌତୁକ ଜିନିଷ ମୁନ୍ନିକୁ ଫେରାଇ ଦିଅନ୍ତେ ନାହିଁ ।

ମାମୀ ଦେବୀ ଚାଲେ ଅଗଷ୍ଟ ଚଉଦରେ । ଶାଶୁ ପ୍ରତ୍ୟୁଷରେ ବୋହୂକୁ ମାରିଛନ୍ତି କି ନାହିଁ ସେଥିପାଇଁ ତାଙ୍କର ହାତର ଟିପ ଚିହ୍ନ ପୁଲିସ ନେଲେ ଚର୍ଣ୍ଣିଆର ମାସ ପାଞ୍ଚ ତାରିଖ ଦିନ ।

—ଆଶ୍ୱିନ ଶୁକ୍ଳ ଦ୍ୱିତୀୟା । ମରଣ ଆସିଥିଲା ଝୁଲଣ ପୂର୍ଣ୍ଣିମାର ଚତୁର୍ଥ ଦିନ । କାରଣ ଶାଶୁଙ୍କର ହାତରେ ପୋଡ଼ା କ୍ଷତ । ଯୌତୁକ ଜିନିଷ ଫେରି ହୋଇ ପାରୁନାହିଁ । କାରଣ ବୋହୂଙ୍କର ବାପଘର ଅଭିଯୋଗ କରୁଛନ୍ତି ଯେ ତାଙ୍କର ଦିଆ ମୂଲ୍ୟବାନ ବ୍ରଞ୍ଜ ଗହଣାଗୁଡ଼ିକ ଏଇ ଶାଶୁ ନଣନ୍ଦ ମାଡ଼ି ବସିଛନ୍ତି । ଝିଅ ପୋଡ଼ିହୋଇ ଡାକ୍ତରଖାନାକୁ ଆସିଲା ଯେ ତାହାର ଦେହରେ ଗହଣା ନଥିଲା—ଥିଲା ହଳେ ପ୍ଲାଷ୍ଟିକ ଚୁଡ଼ି ।

ବ୍ରଞ୍ଜ ଗହଣାରେ ସୁନା କଲେଇ କରି ଝିଅକୁ ବାହାଘରେ ପିନ୍ଧାଇଥିଲେ । ଏମିତି ବିଚକ୍ଷଣ ଭାବରେ ଗହଣା ଗଢ଼ା ହୋଇଥିଲା ଯେ ସୁନା ପରି ମନେ ହେଉଥିଲା ।

ଶାଶୁ ପୂର୍ଣ୍ଣପ୍ରଭାଙ୍କ ଘରେ ଦେଖାଗଲା ଯେ ମାମି ଦେଇଙ୍କର ହାତରେ ଆଲେରଜି ହେଉଛି । ବୋଧହୁଏ କହିଲେ ମାଟି ଶଙ୍ଖାରେ ଘୋଷ ଚୁଲିର ଗରମ ବାଜି ହାତକୁ ବଗାଡୁଛି ।

ବ୍ରଞ୍ଜ କାରବାରୀ ସ୍ତ୍ରୀ ଲୋକମାନେ କହିଲେ—ନାହିଁ ଗହଣା ବୋଧହୁଏ ବ୍ରଞ୍ଜ । ପରୀକ୍ଷା କର ।

କଟକ ନମିଚଉଡ଼ର ବଙ୍କିମ ବାବୁଙ୍କ ଦୋକାନରେ ଜଣା ପଡ଼ିଲା ବ୍ରଞ୍ଜ । ସେଇଠୁ ଶାଶୁ ନିଜର ସୁନା ଚୁଡ଼ି ଦେଇ ଗୁହପଟ ଚୁଡ଼ି କରାଇଦେଲେ ।

ଗହଣା ଦୋକାନରେ ଏହି ବ୍ରଞ୍ଜକୁ ଶାଶୁ ସୁନା ବୋଲି ଉପରେ ଲଦାଇଥିବାରୁ ଦୋକାନ ବାବୁ ବୁଝାଇ ଦେଲେ ।

ବୋଧହୁଏ ଘରକୁ ଫେରି ମୋର ସମୁଧିଙ୍କୁ ଫରିଆଦ ହେଲି— ସୁନା ନା ବ୍ରଞ୍ଜ ?

—ହିଁଅ ଲୋ । ସୁନା ଭରିକ ଦୁଇ ଅଢ଼େଇ ହଜାର ଟଙ୍କା । କୁଆଡ଼ୁ ଏତେ ଆଣନ୍ତି । ଆଜିର ଝିଅ ଅଛନ୍ତି । ଏଗୁଡ଼ିକ ବ୍ରଞ୍ଜ ।

—ଶାଶୁ ପୂର୍ଣ୍ଣମୟୀ ତାଙ୍କର ସମୁଧିଙ୍କୁ କହିଲେ—କେହି ତ ସୁନା ମାଗୁ ନଥିଲା । ବ୍ରଞ୍ଜକୁ ବ୍ରଞ୍ଜ କହିଥିଲେ ଆମେ ଯାଇ ଅପଦସ୍ତ ହେଇ ନଥାନ୍ତୁ । ତାଲିକାରେ ସୁନା ଲେଖିଲି କାହିଁକି ?

—କରଣ ଘରେ ଲେଖାଯାଏ ସେମିତି । ବ୍ରଞ୍ଜ ଲେଖିଥିଲେ ତୁମର 'କ'ଣ ମାନ ରହିଥାନ୍ତା ।

କିନ୍ତୁ ମୋର ଅଭିମାନୀ ବୋଧହୁଏ ଆତ୍ମହତ୍ୟା କରିବା ଆଗରୁ ଶାଶୁ ଘରର ସୁନା ଚୁଡ଼ି ଓହ୍ଲାଇ ଦେଇ ଟେବୁଲ ଉପରେ ଥୋଇ ଦେଇଥିଲା । ପିନ୍ଧିଥିଲା ନିଜର ବାପ ଘରର ଗୋଟିଏ ସରୁଆ ହାର । ପାଦରେ ପାବାଜୁ ଓ ହାତରେ ମୁଦି । ତାହାର କାନ ଗହଣା ମରିବା ଆଗଦିନ ବଙ୍କିମ ବାବୁଙ୍କ ଦୋକାନରେ ବନ୍ଧକ ଦିଆ ହୋଇଥିଲା । ତାହାର କାନ ଖାଲି ।

ପୁଲିସ ସେଇ ସୁନା ହାର ଛିଣ୍ଡି ପଡ଼ିଥିବାର ଜବତ୍ କରିଥିଲେ । ଡାକ୍ତରଖାନାରେ ହାତମୁଦି ଓ ପାବାଜି ଇତ୍ୟାଦି ଯାହା ଥିଲା ସେତିକି ଦିଆଇଥିଲେ । କିନ୍ତୁ ପୋଡ଼ା ନିଆଁରେ ପ୍ଲାଷ୍ଟିକ ଚୂଡ଼ି ସମ୍ଭୂଳା ପଡ଼ିବ କେତେକ ? କିନ୍ତୁ ବୋହୂର ଘର ବାରମ୍ବାର ଅଭିଯୋଗ କରିଥିଲେ ଯେ ପ୍ଲାଷ୍ଟିକ ଚୂଡ଼ି ପିନ୍ଧାଇ ରାକ୍ଷସୀ ଶାଶୁ ଏଇ ବୋହୂକୁ ଡ଼ାକ୍ତରଖାନାକୁ ପଠାଇଥିଲା ।

ଏଏ ହେଲା ବୋହୂର ବାପଘରଙ୍କର ବକ୍ତବ୍ୟର ଧାରା ।

ବୋହୂ ମାମିର ମରିବାର ଦୁଇ ଦିନରେ ଯେତେବେଳେ ମାମିର ଶାଶୁ ଦିଆ ସୁନା ଚୂଡ଼ି ଜବତ ହେଲା ସେତେବେଳେ ପୋଲିସ ଅଫିସରମାନେ କହି ହେଉଥିଲେ ଯେ ଯେତେ ଝିଅଙ୍କର ଆତ୍ମହତ୍ୟା ଦେଖାଯାଉଛି ପ୍ରତ୍ୟେକରେ ସେମାନେ ତାଙ୍କର ଗହଣା ଖୋଲି ଦେଉଛନ୍ତି କାହିଁକି :

କାନ ଫୁଲ ଅଣା ହେଲା ଆଠଶହ ଟଙ୍କା ବଦଳରେ ସେପ୍ଟେମ୍ବର ସତେଇଶି ତାରିଖରେ—ଦଶହଜାର ଫୁଙ୍କରୁ ।

ଆହା, ବୋହୂ ଅମିତା ଦିନକ ପାଇଁ ବି ଗହଣାକୁ ପିନ୍ଧି ପାରିଲା ନାହିଁ । ଶାଶୁ ଘରର ଦୁଇ ଭରି ସୁନାର ଚୂଡ଼ିକୁ ମଧ୍ୟ ଲୋଭ କରି ନାହିଁ । ସଂସାର ଛାଡ଼ି ଚାଲିଗଲା ବେଳେ ତାହାର ମନରେ ପାତର ଅନ୍ତର ଆସିଛି । ଏଇଥିରୁ ମୁଁ ବୁଝିଛି ଯେ ବୋହୂ ଏଇ ଘର ଉପରେ ଅସନ୍ତୁଷ୍ଟ ଥିଲା ।

ଆଉ ମଧ୍ୟ ବୁଝିଛି ଯେ ବୋହୂ ମାମୀର ମନ ଉଦାର ଥିଲା । କାଲେ କିଏ କହିବ ଯେ ବୋହୂ ମଲା ନାହିଁ ଯେ ଦୁଇଭରି ସୁନାକୁ ବି ନଷ୍ଟ କରି ଦେଇଗଲା ।

ଆଉ ମଧ୍ୟ ବୁଝିଛି ଯେ ମାମୀ ମନରେ ସ୍ତ୍ରୀ ସୁଲଭ ଗହଣା ପାଇଁ ଆସକ୍ତି ନଥିଲା । ସେ ଲୋଭ କରିନାହିଁ । ପର ଜିନିଷକୁ ଧୂଳିମାଟି ଭାବି ଫୋପାଡ଼ି ଦେଇନାହିଁ । ନିଜ ଘରୁ ଯାହା ଆଣିଥିଲା ସେତିକି ପିନ୍ଧି

ସେ ପୋଡ଼ିହୋଇ ଆତ୍ମହତ୍ୟା କରିଛି । ବୃଷ୍ଟି ଜନିତ ସବୁ କାଟି ରଖି ଦେଇଥିଲା—ତେଣୁ ସେଗୁଡ଼ିକୁ ଆଣି ଆଉ ପିନ୍ଧ ନାହିଁ ।

ମନ୍ଦବେଳେ ସେ ଅଭିମାନ କରି ମରିଛି । କ୍ରୋଧ କରି ନାହିଁ । ପ୍ରତିହିଂସା କଥା ଭାବି ନାହିଁ । ତା' ପାଇଁ କାହାର ଅସୁବିଧା ହେଉ ଏତକ ବି ସେ ଚାହିଁ ନାହିଁ ।

ମାମାଁ ଓରଫ ଅମିତା ଦେବୀ ସରଳ ଓ ନିଷ୍ପାପ । ତାଙ୍କୁ ତାହାର ଘର ଲୋକ ଓଲୁ ଓକିଲଙ୍କର ବୁଦ୍ଧିରେ ପଡ଼ି ମରଣ ଦୁଆରକୁ ଟାଣି ନେଲେ । ଏଇ ପାପ ସେମାନେ ଅବଶ୍ୟ ଭୋଗିବେ ।

ମିଛ ଭବିଷ୍ୟତ ବାଣୀ ଗୁହାଳ ତାହାହେଲେ ଦେଖିବେ ଯେ ମାମିର ବୋହୂ ପଣିଆ ଘର ମାସର ଦଶଗୁଣ ସମୟ ଯଥେଷ୍ଟ ହେବ—ସବୁ ଫଳ ବୁଝିବା ପାଇଁ ।

ଯୁ'ଙ୍କୁ କହନ୍ତୁ ଭାଗ୍ୟ ।

ଏଇ କଟକ ମେଡ଼ିକାଲର ବିଚକ୍ଷଣ ସର୍ଜନ ଅଧ୍ୟାପକ ତାଙ୍କର ନର୍ସର ଟେଙ୍ଗା ଗୋଡ଼କୁ ପ୍ଲାଷ୍ଟିକ ସର୍ଜରୀ କରି ସିଧା କରୁଥିଲେ । ନର୍ସଟିର ମନରେ କି କୃତଜ୍ଞତାର ଆବେଗ—ତାହାର ପାଦର ଖଣ୍ଡ ଲଭିଯିବ ।

ଅପରେସନ ବିଫଳ ହେଲା । ଯେତେ ଯାହା କରାଗଲେ ମଧ୍ୟ କ୍ଷତ ଶୁଖିଲା ନାହିଁ । ଶେଷରେ ଗୋଡ଼କୁ ଆଣ୍ଠୁ ପାଖରୁ କାଟି ଦେବାକୁ ପଡ଼ିଲା । ବଙ୍କା ଗୋଡ଼କୁ ସିଧା କରୁ କରୁ ବିଚାରୀ ଗୋଡ଼ଟି ବି ହଜେଇଲା ।

ସରକାରୀ ଓ୍ୱାର୍କର ଓ ପ୍ରଫେସରଙ୍କର ଅପରେସନ ପାଇଁ ଆଉ ଅଧିକ କ୍ଷତ ହୋଇ ନାହିଁ । କିନ୍ତୁ ସେ ଓ ଅନ୍ୟମାନେ ସବୁ ଦିନ ପାଇଁ ବୁଝିଗଲେ ଯେ ମିଆଁଳରେ ଟନସିଲ ଅପରେସନ, ଦାନ୍ତ ଉପୁଡ଼ା, ଆଖି ଡୋଳାରେ କଣ୍ଟାକଟ୍ ଲେନସ୍ ଇତ୍ୟାଦି କେତେଦୂର ଶୁଭକର ।

ସେମିତି ହୋଇଥିଲା ଜଣେ କାଣପୁର ନିବାସୀ ବନ୍ଧୁଙ୍କର । ହଜାରେ ଟଙ୍କା ଚୁକ୍ତି କରି ଜଣେ ସର୍ଜରୀ ଅଧ୍ୟାପକଙ୍କର ଘରେଇ

କ୍ଲିନିକ୍‌ରେ ଅର୍ଶ ଅପରେସନ କରାଇଥିଲେ । ସକାଳୁ ଘରକୁ ବିଦାୟ ନେବା କଥା ।

ଯିବା ଆଗରୁ ଅଧ୍ୟାପକ ଆସି ଶେଷ ଡ୍ରେସିଂ କଲେ । ହଠାତ୍ ଆରମ୍ଭ ହୋଇଗଲା । ରକ୍ତ ବୋହି ଚାଲିଲା—ଦେଢ଼ ଦିନ ।

ସର୍ଜନ ଯେତେ ଯାହା କଲେ କିଛି ସମ୍ଭାଳିଲା ନାହିଁ । ଭାବିଲେ ଯେ ସେଇଟା ଅର୍ଶର କ୍ଷତ ନୁହେଁ—ଅନ୍ୟ କିଛି ।

ଗୋଡ଼ ହାତ ପାଣି ହେବାକୁ ଆରମ୍ଭ କଲା । ସର୍ଜନ ସରକାରୀ ଚାକିରିଆ—ଘରେଇ କାମ ମନା । ଏଣେ ରୋଗୀ ମରିଗଲେ ନିଶ୍ଚିତରେ ବିପଦ ।

ନିଜର ମଟରରେ ନେଇ କଟକ ଡାକ୍ତରଖାନାରେ ଖଟିଆ ଦିଆଇଲେ । କିଛିଟା ଉପଶମ ହେଲା । କିନ୍ତୁ ସାର୍‌ଙ୍କର ରୋଗୀକୁ ଦେଖିବା ଛୁଇଁଲେ ନାହିଁ—କିଏ ଜାଣେ ପୁଲିସ କେସ୍ ହୋଇଯିବ ରୋଗୀ ମରିଗଲେ ।

ରୋଗୀ ଦଶ ପନ୍ଦର ଦିନରେ ଫେରିଲେ । ମଲେ ନାହିଁ ସତ । କିନ୍ତୁ ଅସୀମ ଉଦ୍‌ବେଗ ଓ ଯନ୍ତ୍ରଣାରେ ରହିଲେ । ଅଧିକ ପାଞ୍ଚ ଶହ ଟଙ୍କା ଖର୍ଚ୍ଚ କଲେ ।

କ'ଣ ଥିବା ଏଇ ଅପରେସନ—ଏଇ ସର୍ଜନଙ୍କ ପାଇଁ ? କିନ୍ତୁ ରୋଗୀର ତ ଗୋଟାଏ ଭାଗ୍ୟ ଅଛି । ସେ ଭୋଗିବ ଓ ଭୋଗାଇବ ।

କଟକର ଜଣେ ବିଶିଷ୍ଟ ଓକିଲଙ୍କର କନିଷ୍ଠା ଭାର୍ଯ୍ୟାକୁ ଜର୍ଜ୍ଜରିତ କରିବାକୁ ନିଜର ଝିଅମାନଙ୍କୁ ଲଗେଇ ଦେଲେ । ଗୋଟିଏ ସେଥିରୁ ଓକିଲ ହୋଇ ।

ସୋହାଗ ଦେଖାଇ ଅପାକୁ ବୁଝାଇଲେ ଯେ ଭଉଣୋଇ ଯାଇ କନିଆଁ ଶାଶୁ ସାଙ୍ଗରେ ମିଶୁଛି ।

ଝିଅ ବୟସ ଅଳ୍ପ । ବୁଝିଲା ଯେ କଥାଟା ପକ୍କା । ବାପା ଅଫିସକୁ ନଗଲେ କାମ ଚଳିବ କେମିତି ? ତେବେ ମୁହଁ ସଞ୍ଜ ପରେ ଘରେ ଆସିବ ।

ଏଇ ଟାଇମ ଟେବୁଲ ପାଇଁ ଅପା ଓ ଅପାର ବର କଳି ଲଗନ୍ତି । ସୁଆଗିଆ ମାଇଚିଆ ଭାଇ ବୁଝାଏ ଯେ ଅପା ତାହାର ବରକୁ ଆଟକ କରି ରଖୁ ।

ଆଟକ ସମ୍ଭବ ହେଲା ନାହିଁ । ଫେରିବା ରାତି ଦଶଟା ଆଗରୁ ହୋଇ ପାରିଲା ନାହିଁ । ଏଣେ ଭାଇ ଭେଜଉଛି—ସ୍ୱବର୍ଣ୍ଣ ନାରୀର ସ୍ୱାମୀ ବାଟବଣା ହୋଇ ଯାଉଛି ।

ହଠାତ୍ ରାତି ଦଶଟା ବେଳେ ବର ଫେରି ନଥିବାରୁ ଝିଅ ବିଷ ଖାଇ ଦେଲା । ଏକେ ରାତି—ତହିଁରେ ପୁଣି ଲୋକ କମ୍ । ସେତେବେଳେ କଟକ ବଜାରରେ ଗହଳ କମ ।

ଜୋଇଁ ଆସିଲା ବେଳକୁ ଝିଅ ଯିବା ଯିବା ଉପରେ । ଭୂଲିଗଲା ମଧ୍ୟ ।

କିନ୍ତୁ ଭାଇ କ'ଣ ବୁଝିବ ? ପ୍ରଚାରରେ ଲାଗିଗଲା ଯେ କନିଆଁ ମା ମୋ' ଅପାକୁ ଖାଇଦେଲା । ଆଜ ସେ ଏହାର ପ୍ରତିଶୋଧ ନେବ ।

ଏହି ପ୍ରକାରର ମାଙ୍କଡ଼ମାନେ ଅନେକ ପ୍ରକାରର କାମ କରିଥାନ୍ତି । ରଜା ତାଙ୍କର ପ୍ରିୟ ମାଙ୍କଡ଼କୁ ମାଛି ହୁରୁଡ଼େଇବା କାମରେ ଲଗାଇ ଥିଲେ । ଯେତେ ଚେଷ୍ଟା କଲେ ବି ମାଛି ଏଠୁ ଯାଇ ସେଠି ବସୁଥାଏ । ମାଙ୍କଡ଼ ରାଗି ଯାଇ ରଜାଙ୍କ ପାଖରେ ଥୁଆ ହୋଇଥିବା ତରବାରିରେ ମାଛି ସହିତ ରଜାଙ୍କୁ ଦୁଇ ଖଣ୍ଡ କରି ଦେଲା—କିନ୍ତୁ ମାଛି ଝାର ।

।ଲା । ଅଧାଗିତାର

କଙ୍କୁ ସେ ବିଲାତ

ଲ ସର୍ଗତଃ ପଣ୍ଡିତ

ଶାଶୁ ନଣନ୍ଦ ମିଶି ମାମୀକୁ ମାଡ଼ ଦେଇଛନ୍ତି ।

—ମାରିଲେ କାହିଁକି ?

—କିଏ ଜାଣେ ? ଗୋଟାଏ ଧଳା ମଟରରେ କିଏ ଆସିଥିଲା । ଅନେକ ବେଳ ରହିଥିଲା ।

—କିଏ କହିଲା ?

—ତାଙ୍କର ବନ୍ଧୁ ବାନ୍ଧବ—ବାବୁ କେଦାର ନାଥ ଧଳ ।

—ସେ ଲୋକ କ'ଣ କରୁଥିଲା ?

—ଚଣ୍ଡୀଙ୍କ ଶାଶୁ ପାଖକୁ ସେ ଆସିଥିଲା । ବୋହୂ ଦେଖି ଦେବାରୁ ତାକୁ ଚୋଡ଼ ମାଡ଼ ଦିଆଗଲା ।

କିନ୍ତୁ ଧଳା ମଟରରେ ବହୁତ ଅସୁବିଧା ଦେଖା ଦେଲା । ମାମୀର ମଞ୍ଜୁଷା ବଜାର ବାବୁଙ୍କର ମଟର ଧଳା । ମାମୀ ଘର ଆଗରେ ସୁଜାତା ଆଇସକ୍ରୀମ ଦୋକାନକୁ ଅନେକ ଧଳା ମଟର ଆସେ । ସେଗୁଡ଼ିକ ରାସ୍ତା ଗହଳକୁ ଦେଖି ମାମୀ ଘର ପାଖରେ ଅଟକି ରହନ୍ତି । କାରଣ ମାମୀର ରାସ୍ତା ପାଖ ଘରଟି ବରଜଗମ ଥିବାରୁ ରାସ୍ତା ପାଖ ଘର ଗୁଡ଼ିକ ଖାଲି । ଦୁଆର ବନ୍ଦ ।

ବଣିକ୍ଷ ବ୍ୟବସାୟୀ ବେଦ୍ଧେଶ୍ଵ ବାବୁ ସାମନା ଘରର ଗୋଟିଏ ଅଂଶ ପ୍ରାୟ ପନ୍ଦର ବର୍ଷ ହେଲଣି ଭଡ଼ାରେ ରଖି ନିୟମିତ ଭଡ଼ା ଦେଉଛନ୍ତି । କଟକ ମଙ୍ଗଳାବାଗରେ ତାଙ୍କର ପ୍ରସ୍ତାବିତ ବ୍ୟବସାୟ ଖୋଲି ପାରି ନାହାନ୍ତି । କିନ୍ତୁ ପରେ ମଙ୍ଗଳାବାଗରେ ଘର ମିଳିବାର ସମ୍ଭାବନା ନ ଥିବାରୁ ସେ ଘରର ପୂର୍ଣ୍ଣ ମୂଲ୍ୟର ପାଖାପାଖି ଭଡ଼ା ଦେଇ ସାରିଲେଣି ।

ତେଣୁ ସାମନା ବନ୍ଦ । ପୁଣ୍ୟପ୍ରଭା ଦେବୀଙ୍କର ଘରର ଗାରେଜ ଓ ଅଗଣାକୁ ଗୋଟିଏ ଅଣ ଓସାରିଆ ମଟର ଧଳା ଭିତର ଦେଇ ଯାଇ ପାରିବ । ରାସ୍ତାରୁ ଘରକୁ ଯାଇଥିବା ମୁନିସିପାଲିଟି ଗଳିଟି ଅଣ ଓସାରିଆ । କଷ୍ଟେମଷ୍ଟେ ତାଙ୍କର ଛୋଟିଆ ମଟରଟି ପଶେ ଓ ବାହାରେ । ଚଉଡ଼ା ମଟର କି ଧଳା ମଟର ଭିତରକୁ ଯାଇ ପାରେ ନାହିଁ ।

ପୂର୍ଣ୍ଣପ୍ରଭା ଦେବୀଙ୍କର ଶଶୁର ଘର ବାଙ୍କିଗଡ଼ର ବନ୍ଧୁ ବାବୁ କେଦାର ନାଥ ଧଳ ଅମିତାଙ୍କର ଘର ଲୋକଙ୍କୁ ଜଣାଇଲେ ଯେ ଧଳା ମଠର ଲୋକ ଆସି ସ୍ୱାମୀ ନଥିଲାବେଳେ ସ୍ତ୍ରୀ ସାଙ୍ଗରେ ମିଶିବା ବୋଧହୁଏ ଅମିତା ଦେଖି ଦେବାରୁ ମର୍ଡ଼ର ହୋଇଥାଇ ପାରେ ।

ଓକିଲ ପାଇଗଲେ ପଏଣ୍ଟ । କିନ୍ତୁ ମଠରଟା ହେଉଛି ଓଡ଼ିଶାର ଆଡ଼ଭୋକେଟ୍ ଜେନେରାଲ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କର ।

ଠିକ୍ ହେଲା । ବୀରେନ ବାବୁଙ୍କର ସ୍ତ୍ରୀ କଲ୍ୟାଣୀ ଦେବୀ ପୂର୍ଣ୍ଣ-ପ୍ରଭା ଦେବୀଙ୍କର ଶାଶୁ ରତ୍ନମାଳୀ ଦେବୀଙ୍କର ଓଲସିଂହରୁ ଝିଆରୀ । ଖବରକାଗଜରେ ବୋଧହୁଏ ପୋଡ଼ର ବିବରଣୀ ପଢ଼ି ସାନ୍ତ୍ୱନା ଦେବାକୁ ବୋଧହୁଏ ମରିବାର ପାଞ୍ଚ ଦିନରେ ଆସିଥିଲେ । ଆସିବା ତାରିଖ ଠିକ୍ ରଖିଲେ କଥାଟା ସାଧାରଣ । କିନ୍ତୁ ତାରିଖ ପଛକୁ ଘୁଞ୍ଚାଇ ଦେଲେ ମର୍ଡ଼ରର ମୋଟିଭ ବା ଉଦ୍ଦେଶ୍ୟ ବା କାରଣ ପାଇଁ ଯଥେଷ୍ଟ ସାମଗ୍ରୀ ।

କଟେଣରେ ଏମିତି ହୁଏ ।

ଚଣ୍ଡୀପୁରରେ ମେଜର ବେଜାଲଗେଟ୍ ଖୁନ୍ ହେଲେ । ମକଦମା ଚଳାଉଥିଲେ କଟକର ଶ୍ରୀ ସଚ୍ଚିଦାନନ୍ଦ ଗୁଟାର୍ଜି ଆଲମଗୁନ୍ଦ ବଜାର ଓ ବଙ୍ଗାଳ ସାହିର ଶ୍ରୀ ଦୀନବନ୍ଧୁ ସାହୁ । ଉକ୍ତ ହରେକୃଷ୍ଣ ମହତାବଙ୍କୁ ଗୁନ୍ଥିବାକୁ ଅପଚେଷ୍ଟା ଚାଲିଥାଏ ।

ଆର୍ଗୁମେଣ୍ଟ ବା ସୁଆଲ ଜବାବ ଆରମ୍ଭରେ ସଚ୍ଚିବାକୁ କହିଲେ—ଏଇ ମକଦମାରେ ବେଜାଲଗେଟ ନିଖୋଜ ହୋଇଥିବାର ସତେଇଶିଟି ଥିଓରି ଅଛି ।

ସାହେବ ଚଢ଼ି ଯାଇ ପଚାରିଲେ—ତେବେ କହୁଛନ୍ତି ଯେ ବେଜାଲଗେଟ ମରି ନ ଥାଇ ପାରନ୍ତି । ମର୍ଡ଼ର ହୋଇ ନାହିଁ ।

—ହଁ । ଏକଜାକଟଲି ।

—ନନ୍ସେନ୍ସ ।

ସଚ୍ଚିବାବୁ ଚିଡ଼ିଗଲେ । ସାହେବ ରାଗିଗଲେ । ...ସେଇଠୁ ସଚ୍ଚିବାବୁ କହିଲେ—ଧାନବନ୍ଧୁ । ତୁମି ଚୁଲାଓ । ଏଇ ନେଡ଼େ ଆମର ଉପର ଚଟେଗେଛେ ।

ଯିଏ ଆଗେ ପୁଲିସକୁ ଏଇ ଧଳା ମଟର କଥା କହିବ ତାହାର ସୁବିଧା ନ ହୋଇ ଅସୁବିଧା ହୋଇପାରେ । ତେଣୁ ଚାଲିଲି ଖବର-କାଗଜରେ ପ୍ରଚାର—ପୁଲିସ ମଡ଼ର ଥିଓରିକୁ ଧରୁ ନାହିଁ । ମଡ଼ର ସତ । ଇତାଲିରେ ମଡ଼ର କଥା ଅଛି ।

ଓଡ଼ିଶା ହାଇକୋର୍ଟର ଅବସର ପ୍ରାପ୍ତ ଜଜମାନେ ଡାକ୍ତରଙ୍କର ମନା ଘରେଇ ପ୍ରାକ୍ଟିସ ପରି ଜଜମାନଙ୍କୁ ମନା ଘରେଇ ପ୍ରାକଟିସ କରୁ ନାହାନ୍ତି । କିନ୍ତୁ ପ୍ରାଇଭେଟ ମତାମତ ଦେଇ ପାରିବେ ତ । ସେମାନେ ମତ ଦେଲେ ଯେ ଯାହା ବା ହେଉ କି ନ ହେଉ ଶାଶୁ ପୂର୍ଣ୍ଣପ୍ରଭା ଗିରଫ ନ ହେଲେ ଆଉ ବୋହୂମାନେ ଶାଶୁ ଘରକୁ ଆସି ପାରିବେ ନାହିଁ ।

ଜନ୍ମାଶୂନ୍ୟା ଶାଶୁମାନେ ଗିରଫ ହେଲେ ଓଡ଼ିଆ କରଣ ସମାଜର ପରମ୍ପରା ବଦଳିବ । ଝିଅ ବାହାହେଇ ଶାଶୁ ଘରେ ଆଠ ମଙ୍ଗଳା ସାରି ଦେଇ ଜୋଇଁକୁ କାନ୍ଦରେ ବାନ୍ଧି ଆସି ବାପ ଘରେ ପହଞ୍ଚି ଯିବ । ମାଆ ତାର ଠାକୁରାଣୀ ମାନସିକ କରିବ । ଭାଇମାନେ ପେଡ଼ା ବାଣ୍ଟିବେ । ଆଉ ଖବର କାଗଜରେ ସରକାରଙ୍କର ବିଶେଷ ସୁଖ୍ୟାତି ହେବ ।

ଏଇ ଭାରତରେ ମଧ୍ୟ ଏଇ ପ୍ରଥା ଚଳୁଥିଲା । ଏବେ ମଧ୍ୟ ଦକ୍ଷିଣ ଭାରତର କେରଳ ରାଜ୍ୟରେ କିଛି କିଛି ଏଇ ମାତୃ ଅଧିକାରର ପ୍ରଥା ଅଛି । ଝିଅ ସବୁ—ପୁଅ କିଛି ନୁହେଁ । ଏପରି ବି ହେଇଥିଲି ଯେ ପୁଅ ଆସି ଝିଅର ପିଲା ହେଲା ପରେ ଆଉ ପୁଅ ଘରକୁ ଆସିବ ନାହିଁ । ବାହାଘରର ପରମାୟୁ ଥିଲା କେଉଁଠି ଆଠ ପନ୍ଦର ଦିନ ତ କେଉଁଠି ଆଉ ଟିକିଏ ଲମ୍ବା ।

ଜୋଇଁର କାମ ହେଲା ଦେବ ପ୍ରଥମ ସନ୍ତାନଟିଏ ଦେଇ ବିଦାୟ ନେଇଯିବା । ସନ୍ତାନ ପାକଳ ହେବାକୁ ନଅ ମାସ ଲାଗିବ । ଜୋଇଁ କ'ଣ କରିବ ଏଠି ? ଯାଉ ଚାଲି ।

ଓଡ଼ିଆ ଲୋକେ ବୁଦ୍ଧିଆ ନୁହନ୍ତି । ତେଣୁ ଝିଅକୁ ନେଇ ଜୋଇଁ ଘରେ ପାହୁଛନ୍ତି । ଏଇ କାମରେ ଝିଅବାଲାଏ ଏକଜୁଟ ହୋଇ ଲାଗିଛନ୍ତି । —ବିଶେଷରେ ଏଇ କରଣ ସମାଜରେ । ଅନ୍ୟ ପାଠକମାନେ ଶାସ୍ତ୍ରକୁ ଧରି ଚାଲୁଛନ୍ତି । କିନ୍ତୁ କରଣମାନେ ନୂଆ ଶାସ୍ତ୍ର ଗଢ଼ିବାରେ ତତ୍ପର ।

ମୋର ସମୁଧି ଏଇ ମଡ଼ର ବିଷୟରେ ନିସନ୍ଦେହ ହେଇଗଲେ ଅବସର ପ୍ରାପ୍ତ ଜଜଙ୍କର ଫୌଜଦାରୀ ଆଇନର ବିଚକ୍ଷଣତା ଦେଖି । ନିଜେ ସତ୍ରୁଙ୍କ ସାଙ୍ଗରେ ଯାଇଁ ଆଲୋଚନା ସାରି ଆମ୍ଭମାନଙ୍କୁ ଜଣାଇ ଦେଲେ ଯେ ସୁପ୍ରେମକୋର୍ଟ ଜଜଙ୍କର ମତ ହେଉଛି ଯେ ଅମିତା ଆତ୍ମ-ହତ୍ୟା କରି ନାହିଁ । ତାକୁ ହତ୍ୟା କରି ଦିଆ ହୋଇଛି ।

କାଳେ ଫାଶରୁ ଶାଶୁ ଖସି ଯିବ ସେଥିପାଇଁ ବିକଳ୍ପ ଥିଓରି ରଖିବା ଦରକାର । ସେଇଟି ହେଲା ଯେ ନଣନ୍ଦ ନନ୍ଦନୀ ଲଭ୍ ମ୍ୟାରେଜ୍ କରିବ ବୋଲି ଗୋଟିଏ ଲୋକ ସାଙ୍ଗରେ ହସ କୌତୁକ ହେଉଥିଲାବେଳେ ଆମର ମାମାଁ ଦେଖି ନେଲାରୁ ତାକୁ ଦୁହେଁ ମିଶି ନିଆଁରେ ପୋଡ଼ି ଦେଲେ ।

ବାଃ । ଡବଲ ଥିଓରି ମିଳିଲା । ସାକ୍ଷୀ ଅମିତା ଯାଇ ମରଣର ପରପାରରେ । କିନ୍ତୁ ସେ ଦେଖିନେଇଛି ଦୁଇଟା ଦୋଷ—ଗୋଟିଏ ଶାଶୁଙ୍କର ଓ ଆରଟି ନଣନ୍ଦଙ୍କର । ଦୋଷକୁ ସେ ସହିପାରେ ନାହିଁ ।

ସେଥିପାଇଁ ଏଇ ମାଆ ଝିଅ ବାବୁ ନଥିଲାବେଳେ ଖରାବେଳେ ବୋହୂକୁ ଦେଲେ ଖତମ କରି । ଘରୁ ପୋଡ଼ାକାମ ସରିଥିବ । ମଶାଣିରେ ପୋଡ଼ା ହେଲେ ହଉ ନ ହେଲେ ନ ହେଉ ।

ଓକିଲ ନେଲା ପତକା ଦେଖାଇ ଗାଡ଼ି ଛୁଡ଼ଦେଲେ । ଗାଡ଼ି ଚାଲିଲା ଭୁବନେଶ୍ୱର ଚିଫ୍ ମିନିଷ୍ଟର ମାନ୍ୟବର ଜାନକୀବାବୁଙ୍କ ଅଫିସକୁ । ଦେଖାଯାଉ ଆମର ସି. ଏମ୍ ତାଙ୍କର ଏ ଏଫ୍. ଏ କଥାକୁ କେମିତି ଫୋପାଡ଼ିବେ ।

କିନ୍ତୁ ସେଇଠୁ ଧକ୍କାଟିଏ ପାଇଲେ ଆମର ସମୁଧି ବ୍ରଜବାବୁ । ମାନ୍ୟବର ସି. ଏମ. କହିଲେ—ମୁଁ ମଡ଼ର କଥା ବିଶ୍ୱାସ କରିବି ନାହିଁ ।

ସେମାନଙ୍କୁ ମୁଁ ଜାଣେ । ସେମାନେ ଖରାପ ଲୋକ ହୋଇପାରନ୍ତି କିନ୍ତୁ ମନ୍ତର କରିବା ଟାଇପ ନୁହନ୍ତି ।

ସମୁଖ ଭେ ଭେ କାନ୍ଦି ଉଠିଲେ । ମୁଖ୍ୟମନ୍ତ୍ରୀ କାବା ହୋଇ ଗୁହିଁଲେ ।

—ସାର୍, ସବୁ ମାୟାବୀ ସେମାନେ । ସବୁ ଯୋଗାଡ଼ । ସବୁ ଯିଆଣିଆ । ଏଇ ଦି ବରଷଟା ମାଧରେ ମୋର ନଅନପିବୁଲା ମାମୀକୁ ଭସ୍ମ କରିଦେଲେ ।

—ହଉ । ପୁଲିସ ଦେଖୁଥିବେ ତ ।

—ହଜୁର୍ କ'ଣ ଜାଣନ୍ତି ନାହିଁ ସେମାନଙ୍କ କଥା । ସେମାନେ କ'ଣ ସତକଥାକୁ କେବେ ଚାଇବେ ?

—ଅପେକ୍ଷା କରି ଦେଖନ୍ତୁ । ପୁଲିସର ଉପରକୁ ଉପରକୁ ଅନେକ ଭଲ ଲୋକ ଅଛନ୍ତି । ଆଗ ସେମାନେ ବୁଝାବୁଝି କରନ୍ତୁ ।

ସମୁଖ ଫେରିଲେ କଥା ହୋଇ ହୋଇ । ଅକାରଣରେ ମଣିଷ ଆସିଲ ଏଇ ଦୁଆରକୁ । ରାଧାନାଥବାବୁ ଯାହା ଜାନକୀବାବୁ ସେଇଆ । ଏକାପରି ବେ— । ସିଏ ଶୁଣିଲ ନାହିଁ । ଇଏ ମଧ୍ୟ ନ୍ୟାୟ ଦେଲ ନାହିଁ । ଘୋର କଳରେ ନ୍ୟାୟ ମିଳିବ ନାହିଁ ବୋଲି ଅଚ୍ୟୁତାନନ୍ଦ ମାଳିକା ଡାକୁଛି ।

ଏମିତି ପ୍ରତ୍ୟେକ କଥାରେ ନିଜର ମତ ଜାହିର କରିବାକୁ ମାହାନ୍ତି ବାପୁଡ଼ା ବ୍ରାହ୍ମଣ—କରଣ, ରାଧାନାଥ ବାବୁ—ଜାନକୀ ବାବୁ, ଝିଅ ଘର—ପୁଅ ଘର, ଓଡ଼ିଆ—ଅଣଓଡ଼ିଆ ଶେଷରେ ଜଗନ୍ନାଥ—ଲୋକନାଥ, ପୁରୀ—କଟକ, ବ୍ରାହ୍ମଣ ସମିତି—ସାମନ୍ତ ହଷ୍ଟେଲ, ଆଦି ଅନେକ କଥା କରିଦେଇ ଘରେ ଯାଇ ନିର୍ବିକାର ହୋଇ ଘୁଙ୍ଗୁଡ଼ି ମାରେ ।

ବରକ୍ତ ହେବାର କଥା ଏଥିରେ ନାହିଁ । କାୟସ୍ଥ ଓ କରଣମାନେ ବୁଦ୍ଧିରେ ଅନେକ ଉଦାହରଣ ସୃଷ୍ଟି କରିଛନ୍ତି ।

କଲିକତାରେ ଜଣେ ବଡ଼ ସାହେବଙ୍କର ମେମ୍ ଭାରତକୁ ଆସିଲେ ଅସୁସ୍ଥ ହୋଇ ପଡ଼ିଥିଲେ । କଲିକତା ଛାଡ଼ି ଲଣ୍ଡନରେ ପହଞ୍ଚିଲେ ଭଲ ହେଉଥିଲେ । ଭଲ ହୋଇ କଲିକତାରେ ଆଠ ପନ୍ଦର ଦିନ ରହିଲେ ସେମିତି ଅସୁସ୍ଥ ।

କଲିକତାରେ ବହୁତ ନାଁ ଥାଏ ଡାକ୍ତର ବିଧାନ ଚନ୍ଦ୍ର ରାୟଙ୍କର । କିନ୍ତୁ କଲିକତାର ଅପରାଧ—ତହୁଁ ବଡ଼ା ତହୁଁ ବଡ଼ା—ସାହାବ ଡାକ୍ତର ରୋଗକୁ ଧରି ପାରୁ ନଥାନ୍ତି ।

ବିଧାନ ବାବୁ ଆସିଲେ । ସବୁଆଡ଼େ ବୁଲି ଦେଖିଲେ । ମେମ୍ ସାହେବ ଜଣେ ଦକ୍ଷ ରନ୍ଧନବାଲୀ ବୋଲି ଜାଣିଲେ । ମେମ ସାହେବଙ୍କଠାରୁ ରୋଗର ସମସ୍ତ ବିଷୟ ବୁଝି ଚାଲିଗଲେ ।

ପ୍ରେସକ୍ରିପସନ କାହିଁ ? ଲୋକ ଗଲା ।

ବିଧାନବାବୁ କହିଲେ—ଭାବଚନ୍ତି ପ୍ରେସକ୍ରିପସନ୍ ଦେବି । ଆଜି ଭଲ ମଧ୍ୟ କରିଦେବି ।

ସେଇଠୁ ବିଧାନବାବୁ କହିଲେ ଯେ ତାଙ୍କର ଦରକାର ସେଇ କୋଠିର ତିଆରି ନକ୍‌ସା, ପାଣି ପାଇପ, ଗ୍ୟାସ ପାଇପ, ପାଇଖାନା ଆଦିର ଡ୍ରେନ ନକ୍‌ସା ।

ସାହାବ ରାଗିଗଲେ—ଫୁଲ୍, ଇଡ଼ିଅଟ୍ । ସ୍ତ୍ରୀର ପ୍ରେସକ୍ରିପସନ ନାହିଁ । ଏଣେ ମୋର ପେଡ଼ିଗ୍ରି ଖୋଜୁଛି । ନେଟିଭ । ଆଉ ଜଣେ ଡାକ୍ତରକୁ ଡାକ ।

ଯେଉଁ ସାହାବ ଉଲଲୋକ କରିବାକୁ ଯାଇଥିଲା ସେଇ ବିପଦରେ ପଡ଼ିଲା । ନେଟିଭ ଡାକ୍ତର ଗଲା—ପାଞ୍ଚ ହଜାର ଟଙ୍କା କହିଥିଲା । ନଜର ରାଜକର ପଦବୀ ଚାଲିଯିବ ।

ମେ ଧାଇଁଲା । କିନ୍ତୁ ବିଧାନ ବାବୁ ହସି ହସି କହିଲେ—ତୁମର ସ୍ତ୍ରୀ ଡକ୍ଟ୍ରେ ସବ ଖବର ଅଛି । ସେଇଠୁ ମତେ ଆଣି ଦିଅ ।

ବାଧରେ ଏଇ ମିଡ଼୍‌ଲ୍‌ମାନ ସବୁ ଆଣି ପ୍ରଧାନବାବୁଙ୍କୁ ଦେଲେ । ସେ ନକ୍‌ସାକୁ ଦେଖି ତାହାର ତିଆରି ଇତ୍ୟାଦି ତ୍ରୁଟି କହିଲେ—ନଅ ପ୍ରେସର୍‌ଟି ପ୍ରସନ ।

—ଗ୍ୟାସ ପାଇପକୁ ବଦଳାଇ ନୂଆ କରିଦିଅ ।

ଏଇ ପ୍ରେସର୍‌ଟି ପଢ଼ନ ପାଇ ମିଡ଼୍‌ଲ୍‌ମାନ ମଧ୍ୟ ଲାଗିଗଲେ । ପ୍ରଧାନ ବାବୁ କହିଲେ—କରି ଦେଖନ୍ତୁ । ତା'ପରେ କହିବେ ।

ପାହାବ ଖବର ପାଇ ଆଉରି ଲାଗିଲେ । ନେଟିଭମାନେ ଫୁଲ ଭୋଜ୍ ଚାଳ ଖାଇଲେ । ବଙ୍ଗାଳୀମାନେ ସରକାରରେ ଭରପୂର ।

ଏଇ ଅମିତାଭ ହନ୍ୟା କାହାଣୀ ପରି କଲିକତାର ସରକାରୀ ଚାକିରିଆ ବଙ୍ଗାଳୀ ସମାଜ । ଆଜି ସେମାନଙ୍କର ଅନୁସରଣିଆ ଜମିଦାର ସମାଜ ଏବଂ ସମସ୍ତଙ୍କର ଗୋଡ଼ାଣିଆ ବଙ୍ଗାଳୁଣୀ ସମାଜ ଏକାବେଳକେ ଗୁଞ୍ଜରି ଉଠିଲା ।

କାଏଥ ଡାକ୍ତାର କଥା ବଲ୍‌ଛେ ସାହେବ କେ । ପାଞ୍ଚ ହାଜାର ଟାକା ନେବେ ଆର କୋଠିର ନକ୍‌ସା ଦେଖ୍‌ବେ । ହାଲୁଡେ—

ମିଡ଼୍‌ଲ୍‌ମାନ ଭାବିଲା—ଯାହାହେଉ ପୁରୁଣା ପାଣି ପାଇପ, ପୁରୁଣା ଗ୍ୟାସ ପାଇପକୁ ସୁଧାରି ଦେଲେ କ୍ଷତି ନାହିଁ ଘରର ।

ସେଇଆ ହେଲା ।

ଆଠ ଦିନରେ ମେମ୍ ଟିକିଏ ଅଧିକ ସୁସ୍ଥ ହେବା ପରି ଜଣାଗଲେ । ସେ ମନେକଲେ ତାଙ୍କର ହଳଚ ଚିକିତ୍ସା କମ ଦେଖାଉଛୁ ।

ପୂରା ଭଲ ହୋଇଗଲେ । ତେଣୁ ଔଷଧ ଓ ଚିକିତ୍ସା ବନ୍ଦ । ଦିନକୁ ଦିନ ଭଲ ଲାଗିଲା ।

ବଡ଼ କୌତୂହଳର କଥା—ଦେହ ଭଲ ହେଲା କେମିତି ? ବଳଟରେ ଭଲ ରହୁଥିଲା ଓ ଘରଟରେ ବିଗିଡ଼ୁ ଥିଲା ।

ସାହାବଙ୍କୁ ରାଜି କରାଇ ସବୁ ରହସ୍ୟ ବୁଝିବାକୁ ମେମ୍ ଗଲେ ପ୍ରଧାନବାବୁଙ୍କ ପାଖକୁ ।

ବଧାନବାବୁ ବୁଝାଇ ଦେଲେ ଯେ ନକ୍‌ସାରୁ ଜାଣିଲେ ଗ୍ୟାସ ପାଇପରେ ଲିକ୍ ହେଉଥିବାରୁ କାଞ୍ଚନ ମନୋଜପାଇଡ ବିଷ ଧରୁଛନ୍ତି । ସେଥିପାଇଁ ବଲାତରେ ଦେହ ଭଲ ଓ ଏଠି ଖରାପ ।

ଏଇ ବଧାନବାବୁଙ୍କ ନାମରେ କଲକତା ରାସ୍ତାରେ ବଧାନ ସରଣୀ ଲେଖା ଅଛି । କଟକରେ ସେଇଟା ହେଲା—ବାଳକୃଷ୍ଣ ଘୋଡ଼, ଲକ୍ଷ୍ମୀନାରାୟଣ ସରଣୀ, ମୁରାରିମୋହନ ଜେନା ମାର୍ଗ ଇତ୍ୟାଦି ।

ଓଡ଼ିଆ କରଣମାନଙ୍କର ତନ୍ତାଧାରୀ ଜିଲ୍ଲା ଓ ଅଞ୍ଚଳ ନେଇ ଅଲଗା । ଏଇ ବୃତ୍ତି ବିଦ୍ୟାର ପ୍ରଭେଦ ନେଇ ତାଙ୍କ ଭିତରେ ବହୁତ ଦଳ ।

କରଣମାନଙ୍କର ମତ ଯେ, ଓଡ଼ିଶାର ଶାବକ କରଣ ହେଉଛନ୍ତି ଦାସ ଓ ମହାନ୍ତି । କାନଗୋଇ, ଚଉଧୁରୀ, ପଟ୍ଟନାୟକ ଆଦି ହେଉଛି ରାଜାଙ୍କର ଲଗେଇ କରିବା ଲୋକଙ୍କୁ ଦିଆ ପଦବୀ ।

ସେଇଠୁ ହେଲା ବୋମାଲି କରଣ, ଶିଷ୍ଟ କରଣ ଆଦି । ଜଣେ ଆଉଜଣକ ଘରେ ବନ୍ଧୁ ବାନ୍ଧବ ନାହିଁ ।

ଗଞ୍ଜାମରେ କଟକର ଏମ. ପି ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କ ଘରେ ଆମ ଘରୁ ଝିଅ ନେବେ ନାହିଁ । ତାଙ୍କ ଘରର ମତରେ ଆମେମାନେ ତଳୁଆ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କର ଦେଶ ଖୋର୍ଦ୍ଧା ମୂଳକର ମତ ଯେ ପ୍ରକୃତରେ କରଣ ମାତ୍ର ଅଢ଼େଇ ଘର । ସେଥିରୁ ଦୁଇଘର ଖୋର୍ଦ୍ଧାରେ ଓ ଆଉ ଅଧଘର ଏଠି ସେଠି ।

କରଣିଆ ବୁଦ୍ଧିରେ ଏହି ଅଢ଼େଇ ଘର ଭିତରୁ ଯେଉଁ ଅଧ ଘର ଗୁଡ଼ିଦେଲେ ତାକୁ ନଜର ବୋଲି ଦାବୀ କରିବାକୁ ଋଷିକୁଲ୍ୟା ନଦୀଠାରୁ ସୁବର୍ଣ୍ଣରେଖା ଯାଏ ଓ ଏପାରି ଜଉରିଲୁ ମେଦିନୀପୁରର ମାଇତିମାନେ ମଧ୍ୟ ଆଖି ରଖିଛନ୍ତି ।

ଏତେ କରଣ ଏଇ ଅଢ଼େଇ ଘରୁ ବାହାରିଲେ କେମିତି ବୋଲି ପ୍ରଶ୍ନ ଉଠିବାରୁ ସେମାନେ ବୁଝାଇ ଦେଲେ ଯେ କରଣ ଯାନ୍ତେ ଘରର

ଅନ୍ୟର ପିଲାଙ୍କର ବଂଶ ବଢ଼ି ବଢ଼ି ଏତେ ହେଲାଣି । ସେଇ ଅଢ଼େଇ ଘର ହେଲେ ନାଗରାଜ ଓ ଅନ୍ୟମାନେ ହେଲେ ତାଙ୍କର ବୋଲକରା ଢ଼ମଣା, କାଉଡ଼ିଆ, ଧଣ୍ଡା ଆଦି ଅସଂଖ୍ୟ ଥାର୍ଡ଼ ଓ ଫୋର୍ଥ ଭଦ୍ରଜନ କରଣ ।

କଥାଟା ଅନେକଙ୍କୁ ସତ ପରି ଲାଗେ ।

ସମାଜ ସମ୍ପାଦକ ରାଧାନାଥ ରଥଙ୍କ ତରଫରେ ନାରୀ ସମ୍ପର୍କ ଅଭିଯୋଗ ଥିଲେ । ମୁଖ୍ୟମନ୍ତ୍ରୀ ଜାନକୀ ବାବୁଙ୍କର ବିରୁଦ୍ଧରେ ସେଇ ଅଭିଯୋଗ କରାହୁଏ । କିନ୍ତୁ ଲୋକମତ ହୁଏ ଯେ ରାଧାନାଥ ବାବୁଙ୍କର ଦୋଷ ଅଛି । ଜାନକୀ ବାବୁଙ୍କର ନାମରେ ଦୋଷର ଅଭିଯୋଗ ରହିଛି ।

ଏଇଟା ହେଉଛି ବିଜନେସ୍ ମାନେଜମେଣ୍ଟ—ଦୋଷର ମାନେଜମେଣ୍ଟ ବା ଦୋଷୀର ମାନେଜମେଣ୍ଟ ।

ଏଇ ମାନେଜମେଣ୍ଟ ହେଲା ଜୀବନ ପଥର ଗୋଟାଏ ବିଭାଗ । ଏମାନଙ୍କ ଉପରେ ସାରା କରଣ ସମାଜ ଠିଆ ହୋଇଛି । ପ୍ରତ୍ୟେକ ପ୍ରତ୍ୟେକଙ୍କୁ କାମୁଡ଼ନ୍ତି—ଓଲା, ଚଉଧୁରାନ ଓ ବେଧୁଆ । କିନ୍ତୁ ସମସ୍ତେ ରହନ୍ତି ।

ଏ କ'ଣ ହୋଇପାରେ ଗୋଟାଏ ବାଷ୍ଟାର୍ଡ଼ ସଂପ୍ରଦାୟ ?

କିନ୍ତୁ ବାଷ୍ଟାର୍ଡ ନୁହନ୍ତି ବୋଲି ଓଡ଼ିଶାର ଆଉ ଗୋଟାଏ ବୁଢ଼ିଆ ପାଠକ କହେ—ସେମାନେ ହେଲେ ସ୍ୱର୍ଣ୍ଣକାର ।

ରାଜାଙ୍କ ପାଖରେ ଉଭୟେ ମିଳନ୍ତି—କରଣ ଓ ସୁନାରୀ ଉଭୟେ । ଦୁହେଁ ଦୁହିଁଙ୍କୁ ବୈର ଧରନ୍ତି । ରାଜାଙ୍କୁ ବୁଝାନ୍ତି । କିନ୍ତୁ ଦୁହେଁ ଏତେ ବୁଦ୍ଧିମାନ ଯେ କେହି କାହାରିକୁ ପୂରାପୂରି ହରାଇ ପାରନ୍ତି ନାହିଁ ।

କରଣଙ୍କର ଅଢ଼େଇ ଘର ପରି ସୁନାରୀଙ୍କର ମଧ୍ୟ-ଘର ଅଛି—ଏଇ କଟକରେ—ନଅସାହୀ, ସାତସାହୀ, ପାଞ୍ଚସାହୀ ଓ ତିନିସାହୀ ।

ପ୍ରତ୍ୟେକ ସାହିରେ ଗୋଟାଏ କସମର ବୁଢ଼ିଆ ଥାନ୍ତି ଓ ସାହିର ସମସ୍ତେ ଶୁଳନ୍ତି ମୁଖିଆ କଥାରେ ।

କିନ୍ତୁ କରଣଙ୍କର ମୁଖିଆ ନାହାନ୍ତି । ପ୍ରତ୍ୟେକ କରଣ ଜଣେ ଜଣେ ଦଳପତି । ଏକାଏକ ଦଳପତି । ବାପା କଥାରେ ପୁଅ ନଥାଏ । ପୁଅ କଥାରେ ବୋହୂ ନଥାଏ । ତଥାପି ଏକାଠି ରହିଥାନ୍ତି ।

ରଜାମାନଙ୍କୁ ସୁନାରିମାନେ ଅନେକ ସତର୍କବାଣୀ ଶୁଣାଇଛନ୍ତି । ଫଳ କିଛି ହୋଇ ନାହିଁ । ମ୍ୟାନେଜମେଣ୍ଟ ଦକ୍ଷତା ପାଇଁ କରଣମାନେ ପୂଣି ବଡ଼ ଦେଉଳରୁ ଆରମ୍ଭ କରି କଟକର ଜମ୍ବୁ ବଣିଆର ପାଏ ସର୍ବତ୍ର ବିଦ୍ୟମାନ ।

ସୁନାରି ଗୋଟିଏ ରଜାଙ୍କୁ ବ୍ଝାଇ କହିଲେ ଯେ,

କଣା, କରଣ, କଣି
ଯାଙ୍କୁ ବରଷକେ ଥରେ
ଦେଉଥିବ ଗୁଣି
ଯେବେ ନଦେବ ଗୁଣି
ସେ' ତୁମକୁ ଖାଇବ ବାଣ୍ଟିକୁଣି ।

ରଜା ବହୁତ ଭାବିଲେ । କିଛି ସ୍ଥିର କରିପାରିଲେ ନାହିଁ । ତାଙ୍କର ଆଖିରେ ଅସହାୟତା ଦେଖି କରଣ ହାତଯୋଡ଼ି ପଚାରିଲା—ହଜୁର, ଏଇ ସେବାକାରୀଙ୍କୁ ବ୍ୟସ୍ତ ଲାଗୁଛି ମଣିମାଙ୍କ ଶ୍ରୀମୁଖ ଦେଖି ।

—ହଁ ! ଆରେ ପାଞ୍ଜିଆ, ଏଇ ସୁନାରିଗୁଡ଼ାକ କମିତକା ଲୋକ ?

—ମଣିମା, ଭାରି ବଦମ ଲୋକ ।

—କେମିତ ?

—ଯେଉ ସୁନାରି ଯିଏ ଆସିଥିଲା, ସିଏ ସବୁଠାରୁ ବଦମ ।

—କେମିତ ?

ସେ କହେ—ଭୁକିଲେ ରକ୍ତଏ । ଛୁଇଁଲେ ମସାଏ । ଷଣ୍ଢ଼ୁଆସୀ ଧଇଲେ ତାମସା ଦେଖାଏ ।

ରାଜାଙ୍କ ମନକୁ କଥାଟା ପାଇଗଲା—ହଁ, ହବ ତ ଠକଟାଏ ।

ସୁନାଗ ଡକା ହେଲା । ରାଜା ପଚାରିଲେ—ଏକଥା କ'ଣ ଠିକ ?

ଗୁହିଁଲେ ରହଏ, ଛୁଇଁଲେ ମସାଏ । ଷଣ୍ଢ ଆସି ଧଇଲେ ତାମସା ଦେଖାଏ ।

ସୁନାଗ ଗୁହିଁଲା ପାଞ୍ଜିଆ ଆଡ଼େ । ସେତେବେଳକୁ ସେ ତାହାର ଓ୍ୱାଟରେ ଲାଗିଗଲାଣି । ବୋମା ଖଞ୍ଜି ଦେଇଛୁ । ରାଜା ପାଖରେ ଭାରିକି ହୋଇଥିଲା ପଧରେ । ନିଷ୍ଟୟ କାହା ବିରୁଦ୍ଧରେ କହୁଥିଲା । ବିରୁଦ୍ଧରେ କହିଥିଲେ ନିଷ୍ଟୟ କହୁଥିବ ପାଞ୍ଜିଆ ବିରୁଦ୍ଧରେ । କୁହୁର ବଡ଼ଲୋକଙ୍କ ଭିତରେ ପଡ଼ିବ କେମିତି ?

ଉପାୟ ନ ପାଇ ସୁନାଗ କହିଲା—ମହିମା ସତ । ତେବେ କେବଳ ଲୋକ ଚଳନ୍ତି ସେମିତି । ଓକିଲ, ମୋହରିର, ମାମଲତକାର, ମିନି ମାଷ୍ଟ୍ରୀ, ଆଉ କା ପେଟ ପୋଷିବେ କେମିତି ? ହଟଚମଟ ନ କଲେ ଭୋକରେ ମରିବେ ।

—ଠିକ୍ କହୁଛୁ । ମରିବା କଷ୍ଟ । ଭୋକ ବି ଘାର କଷ୍ଟ । ଭୋକର ମରିବା ପୋଡ଼ହୋଇ ମଲା ଭଳିଆ । ପାଣିରେ ବୁଡ଼ି ମରିବା ସହଜ । ବିଷ ଖାଇ ମରିବା ତା'ଠୁ ସହଜ । ଦଉଡ଼ି ଦେଇ ମରିବା ତା'ଠୁ ସହଜ । ···ଗୁଡ଼ମ । ମୁଁ ସବୁ ଜାଣେ । ତୁ ଚଳୁ କ'ଣ ସେମିତି ?

—ହଜୁର !

—କେମିତି ? ଆଉଥରେ କହ । ଗୁହିଁଲେ ରହଏ, ଛୁଇଁଲେ ମସାଏ, ଷଣ୍ଢ ଆସି ଧଇଲେ ତାମସା ଦେଖାଏ ।

—ପ୍ରମାଣ ଦେଇପାରିବୁ ? କାମରେ ଦେଖାଇ ନପାରିଲେ ମୁଣ୍ଡକାଟ ।

ପାଞ୍ଜିଆ ତାହାର ଲେଖାପଢ଼ିରେ ଲାଗିଥାଏ—ସୁନାଗ କେମିତି ମରଣ ଆଡ଼କୁ ଗଲାଣି ।

ରାଜା ମାଞ୍ଜିଆକୁ ହୁକୁମ ଦେଲେ ଯେ ତାଙ୍କର ଗୋଟାଏ ବସ୍ତୁ ମୂର୍ତ୍ତି ଦରକାର—ସୁନାରେ ତିଆରି ହେବ ।

ସୁନାଖି କହିଲା—ମଣିମା ! ଖାଲି ଭଲ କଥା ! ସୁନା ତିଆରି ବସ୍ତୁ ମୂର୍ତ୍ତି ନଅରରେ ପୂଜା ହେବେ ! ତେବେ ମୂର୍ତ୍ତି ଦଶଆଙ୍ଗୁଳ ଉଚ୍ଚା ହେବେ ! ଅନେକ ସୁନା ଲାଗିବ !

—ଲାଗୁ !·····ପାଞ୍ଜିଆଙ୍କୁ ହୁକୁମ ହେଲା ଯେ ସେ ସୁନା ଯୋଗାଇବ ଆଜ ଜଗିବ !

ପାଞ୍ଜିଆ ହାତ ଯୋଡ଼ି କହିଲା—ମଣିମା ଦୁଇଟା ବରକନ୍ଦାଜ ନ ରହିଲେ ମୋର ସାହାସ ପାଇବ ନାହିଁ !

ସେଇଆ ହେଲା ! ପାଞ୍ଜିଆର ଖୋଦ୍ ଜଗାରଖାରେ ଓ ବରକନ୍ଦାଜ ଜଗୁଆଳରେ ସୁନା ଆସି ମୂର୍ତ୍ତି ତିଆରି ଆରମ୍ଭ ହେଲା !

ସୁନାଖି ରଜା ଘରେ ମୂର୍ତ୍ତି ଗଢ଼େ ! ଏଥିପାଇଁ ହରବଖତ କଣବା ଦରକାର ! ବକତେ ଖାଇ ମୂର୍ତ୍ତି ଗଢ଼େ ! ଆଜ ଘରକୁ ଯାଇ ପିତଳରେ ସେଇ ମାପର ମୂର୍ତ୍ତି ଗଢ଼ୁଥାଏ ! ନଅରରେ ଯେତକ କାମ କରୁଥାଏ ସୁନାରେ—ଘରେ ସେତକ କରେ ପିତଳରେ !

ଘର୍ଯ୍ୟା ପଚାରିଲେ କହେ—ରାଜାଙ୍କର ହୁକୁମ ! କେହି ଜାଣିବେ ନାହିଁ ଏ କଥା !

ମୂର୍ତ୍ତି ତିଆରି ସରିଲା ! ଦୁଇ ଆଡ଼େ ମୂର୍ତ୍ତି ପୂରି ହେଲା !

ରାଜା କହିଲେ—ଅଣାଅ ଦରବାରକୁ ଦେଖିବା !·····ସୁନାଖି କହିଲା ଭଲ ଯୋଗରେ ଭୋର ଭୋର ହିଁରେ ଗାଧୋଇ ମୂର୍ତ୍ତି ପ୍ରତିଷ୍ଠା ହେଲେ ଦରବାରକୁ ଆସିବ !

ଏଣେ ଘରେ ବରାଦ ହେଲା ଯେ ସୁନାଖି ସ୍ତ୍ରୀ ଗଜଡ଼ୁଣୀ ବେଶରେ ନଅର ଆଗରେ ହିଁ ନେଇ ଯାଉଥିବ ! ସୁନାଖି ଡାକିଲେ ହିଁ ହାଣ୍ଡି ଦେବ ! ଏକଥା ଜଣା ପଡ଼ିଲେ ହାତରୁ ଚୁଡ଼ି ଭାଙ୍ଗିବାକୁ ପଡ଼ିବ !

ସବୁ ଠିକ୍ ଚାଲିଲା ! ପାଞ୍ଜିଆ, ବରକନ୍ଦାଜଙ୍କର ଧୈର୍ଯ୍ୟ ତୁଟିଲାଣି ! ଧ୍ୱଂସ ଦେଖିବାକୁ ତିଆର ! କଥା ହେଲାଣି ଯେ ସୁନାଖି ଶୂଳ ପାଇବ—ଫାସି ! ମରିବ !

ରାଜାଙ୍କର ବ ଧୈର୍ଯ୍ୟ ଛୁଟିଲଣି । ସେ ବ ଫାସି ଦେବାକୁ ତିଆର । ଡେରି ହେଲଣି ।

ସୁନାରି ମାଣୁଥାଏ ।······ଆଜ ବେଳ ଭଲ ନୁହେଁ । କାଲି କାଳ ଭଲ ନୁହେଁ । ଆଜ ନଶ୍ୱାସ ଚାଲୁଛି ଡାହାଣରେ ଅବା ବାଁ ଆଖି ଫଡ଼କୁଛି । ଏଣେ ଦହିବାଲା ଯାଉଥାଏ । ସୁନାରି ଡାକୁ ନଥାଏ ।

ଦିନେ ସେ ଭଣଯାକୁ ଜଣାଇ ଦହି ହାଣ୍ଡିରେ ପିତଳ ମୂର୍ତ୍ତି ଥୋଇ କହିଲା- କାଲି ମୁଁ ଡାକିବି । ଦହି ହାଣ୍ଡିରେ ଆଉ ଗୋଟିଏ ମୂର୍ତ୍ତିକୁ ନାଧୋଇ ଦେଇ ଫେରାଇ ଦେବ । ଘରକୁ ଆସିଲେ ମୂର୍ତ୍ତି ନେଇ ରାଜାଙ୍କୁ ଦେବ ।······ସାବଧାନ ନ ରହିଲେ ମୁଁ ମରିବି ଆଉ ତୁ ରାଣ୍ଡି ହେବୁ ।

ତହିଁଆରଦିନ ସୁନାରି ହଠାତ୍ ଆରମ୍ଭ କଲା ଯେ ଦିନ ଭଲ । ବେଳ ଭଲ । କାଳ ଭଲ । ଆଜ ମୂର୍ତ୍ତି ଗାଧୋଇବେ ।

ଦହିବାଲୀକୁ ଜଗି ବରକନ୍ଦାଜ ଡାକି ଆଣିଲେ । ମୂର୍ତ୍ତି ବଦଳ ହୋଇଗଲା । ଦହିବାଲୀ ହାଣ୍ଡି ନେଇ ଘରକୁ ଫେରିଲା ।

ପିତଳ ମୂର୍ତ୍ତିକୁ ପାଟ ଲୁଗାରେ ଢାଙ୍କି ଦେଇ ସୁନାରି ଘରକୁ ଫେରିଲା ।

ଘରେ ସୁନା ମୂର୍ତ୍ତିକୁ ହାଣ୍ଡିରୁ କାଢ଼ି ପାଟ ଲୁଗା ଢାଙ୍କି ସାଙ୍ଗରେ ନେଇ ଦରବାରକୁ ଆସିଲା ।

ଦରବାର ଆରମ୍ଭ ହେଲା—ରାଜା ପଚାରିଲେ ସୁନାରିକୁ ସେ ଚଳେ କେମିତି ? ସୁନାରି ସେଇ ଏକା ଉତ୍ତର ଦେଲା ।

—ଆଜ୍ଞା, ନଅଗଡ଼ରେ ଜଗୁଆଳୀ ଭିତରେ ଆମର ସୁନାରେ ମୂର୍ତ୍ତି ଗଢ଼ା ହୋଇ ପ୍ରତିଷ୍ଠା ହେଲା । ଏଠି ତ ସେମିତି ହୋଇଥିବ ।

ଡରି ଡରି ସୁନାରି କହିଲା—ମହିମା ସେଇଆ ହବା କଥା ।

ରାଜା ରାଗିଯାଇ କହିଲେ—ଯଦି ନ ହୋଇଥିବ ତେବେ ଫାଶି । ବୁଝିଛୁ ?

—ହଜୁର ମହିମା ।

—ଦେଖା କେମିତି ?

ରଜାଘର ମୂର୍ତ୍ତିକୁ ପାଞ୍ଜିଆ କାଢ଼ି ପାଟ କନା ଉପରେ ଥୋଇଲା ।

ତେବେ—

—ହଜୁର ମଣିମା ସେଇଟା ପିତଳ । ସବୁଯାକ ସୁନା ଗୁଲି-ଯାଇଛୁ ।

ଦରବାରରେ ଚହଳ ପଡ଼ିଗଲା । ରାଜା ରାଜାଘରର ଲୋକଙ୍କ ଆଗରେ, ବରକନ୍ଦାଜ ଆଖି ଆଗରେ ସୁନା ଚୋର ହୋଇଗଲା । ପୁଣି ଦୁରପୁର ।

ପରୀକ୍ଷାରେ ଜଣାଗଲା ଯେ ମୂର୍ତ୍ତିଟା ପିତଳ ।

ସୁନାରୀ ସେତେବେଳେ ଡର ଡର ଡର ନିଜର ପାଖରୁ ସୁନା ମୂର୍ତ୍ତି କାଢ଼ି ଥୋଇଦେଲା ।

ଥରୁ ନେଇ ଗୁଲିଯାଇଛୁ ସୁନାରୀ । କାରଣ ପାଞ୍ଜିଆ ସେତେ-ବେଳକୁ ଇଷ୍ଟଦେବତା ସ୍ମରଣରେ ଲାଗିଗଲାଣି—ନିଜେ ହୁଏତ ମରିବ ଏଥର । ନିଜ ଶିଆର ଖାତରେ ପଡ଼ଯାଇଛୁ । ମନେ ମନେ ଠାକୁର—ତହୁଁ ବଡ଼ା ତହୁଁ ବଡ଼ା—ଉଚ୍ଚା, ତେଜା, ପ୍ରତ୍ୟକ୍ଷ, ଶୁନନେଓ୍ୱାଲା, ଦେନେଓ୍ୱାଲା, ହନୁମାନ, ମଙ୍ଗଳଷଷ୍ଠୀ, ନେପାଳୀ, କଳକତ୍ତ ସବୁ ପ୍ରକାରର ଠାକୁରଙ୍କୁ ଡାକୁଥାଏ ଆଉ ସହସ୍ର ନାମ ପଢ଼ୁଥାଏ ।

ଦରବାରରେ ବହୁତ ଆଲୋଚନାରୁ ବୁଝା ପଡ଼ିଲା ଯେ ଦନ୍ତବାଲ ଯୋଗୁ ଏଇ କାମ ।

ରାଜା ବୁଝିଲେ ଯେ ଏଇ ପାଞ୍ଜିଆ ଆଉ ବରକନ୍ଦାଜ ଯେମିତି ମାଇକିନିଆଁ ଦେଖିଲେ ସେଇଠୁ ତାଙ୍କର କାମରେ ଖିଲାପ ଆରମ୍ଭ କଲେ । ସେମାନଙ୍କୁ କଡ଼ା ଶାସନରେ ନ ରଖିଲେ ଦୁଷ୍ଟ ମୂଳକ ଉଜୁଡ଼ି ଯିବ—ସିଏ ଦନ୍ତବାଲ ହେଉ ଅବା ପାନବାଲ ହେଉ । ଫଳ ସମାନ ।

ସ୍ତ୍ରୀମାନଙ୍କର କଥା ପଡ଼ିବାରୁ ତେଜ ଉଠୁଥିବା ରାଗ ଶାନ୍ତ ପଡ଼ି ଆସିଲା । ସମସ୍ତେ ଗୁହୁଁଥାନ୍ତି ଦନ୍ତବାଲ ସାଙ୍ଗରେ ତଦାରଖିଆ

କରିବାକୁ । କିନ୍ତୁ ତାହାର ପରିଚୟର ଖୁବ ସୁନାରି ପାଖରେ । ସେ କହୁଥାଏ ଯେ ବରକନ୍ଦାଜ ଆଣିଥିଲା ଦହିବାଲିକୁ ।

ଫଳରେ ବରକନ୍ଦାଜ କିଛି ଶାସ୍ତି ପାଇଲା । ପାଞ୍ଜିଆ ଉପରୁ ଶିନିଟାଆ ଦୋଷ କଟିଗଲା ସତ । କିନ୍ତୁ ତାକୁ ସୁନାରି ପାନେ ଦେଲା ।

ସୁନା ମିଳି ଯିବାରୁ ସମସ୍ତେ ଖୁସି ହୋଇଗଲେ କିନ୍ତୁ ସୁନାରି-ମାନେ ଜଳକା କରି ନେଇ ଯାଇ ପାରିବେ, ଏତିକ ହୋଇଗଲା ଧ୍ରୁବ ସତ୍ୟ ।

ଏମିତି ଧ୍ରୁବ ସତ୍ୟର ଧାରା ଓଡ଼ିଶାରେ ବହିଚାଲି ରହିଛି ମାହାନ୍ତିମାନଙ୍କ ବିଷୟରେ । ମାହାନ୍ତି, ମହାନଦୀ ସାଙ୍ଗରେ ସମାନ । ମହାନଦୀ ଓ ମାହାନ୍ତି ମହାପ୍ରସାଦ ସାଙ୍ଗରେ ସମାନ—ଅବଶ୍ୟ ଗୋଟିଏ ପ୍ରକାରର ବିଷୟରେ ।

କିନ୍ତୁ ମାହାନ୍ତି ମଲା ନାହିଁ । ଓଳଟି ନିଜ ଚଉପାଢୀକୁ ଛାଡ଼ି ଅନ୍ୟାନ୍ୟ ପାଠକ ଭିତରେ ପଶିବାରେ ଲାଗିଲାଣି । ଏବେ ଓଡ଼ିଶାସାରା ମାହାନ୍ତିଆ ରୋଗରେ ଆକ୍ରାନ୍ତ ।

ବିଚରା ମାହାନ୍ତି ଭେଉ ଗଣି ପଇସା କରିଥିଲା । ଏବେ ଭେଉକୁ ନ ଗଣି ଅର୍ଥାତ୍ ଉଜାଡି ନକରି; ବୁଦ୍ଧିକୁ ଲଗାଇବାରେ ଖିଲାପ କରି ଅଣ-ମହାନ୍ତିମାନେ ଭେଉ ଗଣା ପଇସା କରିବାରେ ଗୁରିଆଡେ ଲାଗି ପଡ଼ିଲେଣି । ଖୁବ ପାଟି ହେଉଛି । କିଛିତ ଧରା ପଡ଼ୁଛନ୍ତି । କିନ୍ତୁ ତାହାର ସୂତ୍ର ବା କୌଶଳ ବା ଟେକନିକ୍ ପାଇ ପାରୁନାହାନ୍ତି ।

ଶେଷରେ ଧରିଛନ୍ତି ଚରିତ୍ର ସଂହାରକୁ ନିଜର ହତିଆର ଭାବରେ । ଚରିତ୍ରସଂହାର ତରବାରିର ଖୋଳ ହେଲା ପତ୍ରପତ୍ରିକା ଓ ଖବର କାଗଜ ।

କଟକର ଆଠଗଡ଼ ନିର୍ବାଚନ ମଣ୍ଡଳୀକୁ ମୂଳ କରି ସମାଜ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଶାସନର ଗଫଲତି ଦେଖାଇ ଚୂଲି ଗୁରିବର୍ଷ ଲାଗିଲାଣି । କିଛି ଫଳ ହେଉନାହିଁ ।

ଏହାର କାରଣ ହେଲା କରଣମାନଙ୍କ ମଧ୍ୟରେ ଏଇ କରଣ-ବିରୋଧୀ କାର୍ଯ୍ୟ ପାଇଁ କରଣ ଦରକାର । ରାଧାନାଥ ବାବୁ କରଣ ପୋଷି ନାହାନ୍ତି । କାର୍ଯ୍ୟୋଦ୍ଧାର କରିବେ କେମିତି ?

ପଦାଲମାନଙ୍କୁ ପଟ୍ଟକଣ ଦେଲେ ସିନା ସେ ଶତ୍ରୁପଟାଙ୍ଗ ହବ । ତାହାର ହାତ ଗୋଡ଼କୁ ଅବା ମୁଣ୍ଡକୁ ଭରି ଟାଣରେ ଚପି ମୁଠେଇଲେ ସେ କ'ଣ ଶତ୍ରୁ ମାରିବ ?

ଏଣେ ସମାଜ ଅଫିସରୁ ଫକୀର ବାବୁଙ୍କର ଅବସର ଗ୍ରହଣ । ଓଡ଼ିଆ କରଣ ସମାଜରେ ଘୋର ବିଷାଦର ମେଘ ଜମା ହୋଇଛି । ··· ଆପଣ ଜାଣନ୍ତି ନା, ସମାଜ ଅନୁଷ୍ଠାନରେ କେହି କରଣ ନାହାନ୍ତି ।

—ତମର କ'ଣ ବିଗିଡ଼ିଲା ?

—ଆଉ ? ସମାଜ କ'ଣ ଜାତୀୟ ସମ୍ପତ୍ତି ନୁହେଁ ? କରଣ ରହିପାରିବେ ନାହିଁ ? ଏଇ ସକାଶେ ତୁମର କୁଣ କଅଁଳିଲା ନାହିଁ ।

—କାହିଁକି ? ମହତାବ ବାବୁ ବ୍ରାହ୍ମଣଙ୍କ ଦ୍ୱାରା ପ୍ରଜାତନ୍ତ୍ରକୁ ସଂପାଦନ କରିପାରିଲେ । ସେ ଦେଖିଲେ ଯେ ଖବରକାଗଜ ସଂପାଦନାରେ ବ୍ରାହ୍ମଣମାନେ କରଣଙ୍କଠାରୁ ସରସ । ତଥାପି ସେ ଏପାଖ ସେପାଖ ହେଉଛନ୍ତି ଏହି ମାହାନ୍ତିଅ ରୋଗରେ ପଡ଼ି । ସମସ୍ତଙ୍କୁ ରଖିବ । ଭଗବାନ ସମସ୍ତଙ୍କର । ବୁଦ୍ଧି ବି ସମସ୍ତଙ୍କର ।

ଡିଆଇଇଫ ରଖିବ । ରିସେପସନିଷ୍ଟ ଲେଡ଼ି ରଖିବ । ନିଜ ମହିଳା ଷ୍ଟେନୋଗ୍ରାଫର ଓ ମହିଳା ସେକ୍ରେଟାରୀ ଓ ମେଡ଼୍ ସମସ୍ତଙ୍କୁ ରଖିବ । ତାହା ହେଲେ ଦେଖିବ ଯେ ତୁମେ ଉଠୁଛ ଉପରକୁ । ଖାଲି ବାବାଜିଆ, ବଇଷ୍ଣମିଆ ହେଲେ ଉଠି ପାରିବ ନାହିଁ । ଓଲଟି ଭଣ୍ଡ ଟିଏ ବୋଲି ସାଟିଫିକେଟ ଅମଳ କରିବ ।

ଏବେ ଓଡ଼ିଶାରେ ଚଉରାଅଶିର ନୂଆ ଏକସପେରିମେଣ୍ଟ ହେଲା 'ସମବାଦ' ଦୈନିକ—ଓଡ଼ିଆ ଇଲେକ୍ଟ୍ରୋନିକ୍ ମେଥଡ଼ରେ ଏହାର କାର୍ଯ୍ୟ ।

ବମ୍ବେଇରେ ଏମିତି ଗୋଟିଏ ଦୈନିକ ଇଂରାଜୀ କାଗଜ ପଚାଶ ବର୍ଷ ତଳେ ତାହାର ଆତ୍ମମୁଖୀ ଦେଇଥିଲା—କାଗଜର ସ୍ୱତନ୍ତ୍ର ସଂସ୍କରଣ ବଡ଼ ବଡ଼ର (ବମ୍ବେଇ ସେଣ୍ଟ୍ରାଲରୁ) ଛାଡ଼ୁଥିବା ପ୍ରତ୍ୟେକ ଟ୍ରେନରେ ମିବ ।

ବାଲେଶ୍ୱରରେ କାଗଜ ମରିଗଲା । ଅନେକ ଗୁଡ଼ିଏ ଧନକୁ ମଧ୍ୟ ନଷ୍ଟ କରିଦେଲା । ଏବଂ ସମବାଦ କାଗଜର ଅତି ଜଟିଳ ପ୍ରକାରର ମୁଦ୍ରାପକଙ୍କ ଓ ସାମ୍ବାଦିକ ମାନଙ୍କରେ ବ୍ରାହ୍ମଣ ଅଭାବ । ତେଣୁ ଏହାର ଭବିଷ୍ୟତ ମଧ୍ୟ ଅନିଶ୍ଚିତ । ଏକା ତାମିଲ କୃଷ୍ଣସ୍ୱାମୀ ବାବୁ ଓଡ଼ିଶାରେ ବ୍ରାହ୍ମଣ ସନ୍ତଭାର ପ୍ରତିନିଧିତ୍ୱ କରି ପାରିବେ ନାହିଁ ।

ରାଜା ଗଲେଣି । ରାଜ୍ୟ ଦେଇଯାଇଛନ୍ତି ଦେଶକୁ—ଅର୍ଥାତ୍ ମମାନକୁ—ଅର୍ଥାତ୍ ସବୁ ପାଠକଙ୍କୁ । ଏଥିରେ ଜଣେ ଏକାଙ୍ଗ ଚକ୍ରବର୍ତ୍ତୀ ହେବ କେମିତି ?

କିନ୍ତୁ ସମାଜ ଓ ସମବାଦ ଉଭୟେ କଷ୍ଟଗ୍ରସ୍ତ ହେବେ । ସମାଜ ପକ୍ଷରେ ବ୍ରାହ୍ମଣ ଠିଆ ହେବେ ନାହିଁ । ସମବାଦ ପକ୍ଷରେ ବ୍ରାହ୍ମଣ-ବିରୋଧୀ ଠିଆ ହେବେ ନାହିଁ । କାରଣ ଯୁଦ୍ଧ କରିବା ଅର୍ଥକଷ୍ଟ ନୁହେଁ । ଯୁଦ୍ଧ ସରିଲେ ଲୁଟ ତରାଜ କରିବା ଅର୍ଥକଷ୍ଟ ।

କରଣମାନେ ଯୁଦ୍ଧ କରିବାକୁ ପସନ୍ଦ କରନ୍ତି ନାହିଁ । ସେମାନେ ଚାହାନ୍ତି ଯେ କାହାରି ଜଣଙ୍କର ପାଳଆ ହୋଇ ମନ୍ତ୍ରୀର ଭୂମିକା ନେବେ ଓ ରାଜା ସୃଷ୍ଟି କରୁଛନ୍ତି ବୋଲି ପ୍ରଶଂସାପତ୍ର ଧରିବେ ।

ଇଏ ତ ବିଧାତାଙ୍କର ସର୍ଜନା । ଏମାନଙ୍କୁ ଦୋଷ ଦେଇ ଲାଭ ନାହିଁ । ହଇଜା, ବସନ୍ତର ଜୀବାଣୁ ଅଛନ୍ତି ବୋଲି କେହି ପାଣି ପବନକୁ ବାସନ୍ଦ କରେ ନାହିଁ । ବରଂ ନିଜର ରକ୍ଷା ଓ ସୁରକ୍ଷା ପାଇଁ ବ୍ୟବସ୍ଥା ରଖେ ।

ଚଉଦ ଅଗଷ୍ଟ—ଓଡ଼ିଶା ବନ୍ଦ । ମଙ୍ଗଳବାର ।

ସେଇଦିନ କଟକ ମଙ୍ଗଳାବାଗରେ ଗୋଟିଏ ସାଧାରଣ ଲୋକ ଘରେ କରଣ ସମାଜ ତାହାର କାର୍ଯ୍ୟ ଦେଖାଇ ଥିଲା ।

ଏମିତି ହୁଏ ମଫସଲରେ । ଦେଞ୍ଜଡ଼ୀଟିଏ ବସ୍ତ କରେଇ ଦେଇ ସମ୍ପୃଧବର ଠାକୁର ମାଜଣାରେ ଲଗିଯାନ୍ତି ସେ ବୃଦ୍ଧି ବଳରେ ଦେଞ୍ଜଡ଼ୀଟିଏ ଆଣି ଛଡ଼ ଦେଇଛନ୍ତି ଗୋଟିଏ ବରର ବେକରେ ।

ତେବେ ନେଇ ଗବଣା ଆଉ ବାସନ । ତା'ପରେ ଦୁଇ ପକ୍ଷର ଦୁଇପକ୍ଷ ଉପରେ ଦୋଷାରୋପ ।

କଟକ ସହରରେ ହେଲା ସେଇକଥା ।

ମଙ୍ଗଳବାର ଚଉଦ ଅଗଷ୍ଟ ୧୯୮୫ରେ ବୋହୂ ଅମିତା ଦିନ ଅଢ଼େଇଟା ବେଳେ ପୋଡ଼ି ହୋଇ ସେଇ ଅଢ଼େଇଟା ବେଳେ ମଙ୍ଗଳାବାଗ ସରୁ ଆମ୍ବୁଲାନସରେ ନିଆ ଯାଇ ଦିନ ତିନିଟା ବେଳେ କଟକ ମେଡ଼ିକାଲର କାଜୁଆଲଟିର ରଖା ହେଲା । ତାଙ୍କର ଆଡ଼ମିସନ କରାଇଥିଲେ ଜଣେ [illegible] ଶ୍ରୀ ବ୍ରଜବନ୍ଧୁ ମହାନ୍ତି । ସେ ଅମିତାଙ୍କର ସ୍ୱାମୀ ନାମ ଲେଖାଇଥିଲେ – ଜୀବନ ପଟ୍ଟନାୟକ ।

ଜୀବନ ବାବୁଙ୍କର ସରକାରୀ ନାମ ଶୁଭେନ୍ଦୁ ବୋଲି ସେ ମଧ୍ୟ ଜାଣନ୍ତି ନାହିଁ । ଡାକ ନାମ ଥିଲା —ବବି । ଏଇ ନାମ ମାଆ ପୂର୍ଣ୍ଣପ୍ରଭା ଦେବୀ ଦେଇଥିଲେ । ତାଙ୍କର ଶାଶୁ ଶ୍ରୀମତୀ ରତ୍ନମାଳୀ ଦେବୀ ନାମ ଦେଇ ଥିଲେ ଜୀବନ । ତେଣୁ ମଙ୍ଗଳାବାଗରେ ମଧ୍ୟ ଅନେକ ଲୋକ ଓ ବନ୍ଧୁ-ବାନ୍ଧବ ଶୁଭେନ୍ଦୁଙ୍କୁ ଜୀବନ ନାମରେ ଜାଣିଥିଲେ । ଅମିତାଙ୍କର ଶାଶୁ ଘର ନାମ ଥିଲା ଅମୃତା ।

ଅମିତା ଦେବୀଙ୍କର ସିରିଆଲ ନମ୍ବର ସେଇ ତାରିଖର ତେର ଓ କ୍ରମିକ ସିରିଆଲ ଦଶହଜାର ଆଠଶହ ଚଉସ୍ତରୀ ।

ସେଇଦିନ ଅମିତା ଦେବୀଙ୍କର ଶାଶୁ ପୂର୍ଣ୍ଣପ୍ରଭା ଦେବୀ ଅମିତା ଦେବୀଙ୍କର ନିଆଁ ଲଗାଇବାରେ ଆହତ ହୋଇ ସେଇ କାଜୁଆଲଟି ଓ୍ୱାର୍ଡ଼ରେ ସେହିଦିନର ଷୋହଳ ନମ୍ବର ସିରିଆଲ ଓ କ୍ରମିକ ଦଶହଜାର ଆଠଶହ ଅଠସ୍ତରୀ ନମ୍ବର ନେଇ ପାଖାପାଖି ବେଡ଼ରେ ରହିଥିଲେ ।

ବୋହୂଙ୍କର ନବେ ପରସେଣ୍ଟ ବର୍ନ୍ ଓ ଶାଶୁଙ୍କର ପାଞ୍ଚ ପରସେଣ୍ଟ ବର୍ନ୍ ।

ପନ୍ଦର ଅଗଷ୍ଟ ବୁଧବାର ରାତିରେ ଅମିତା ଦେବୀଙ୍କର ଶବ ସତ୍କାର । ପନ୍ଦର ତାରିଖରୁ ସତର ତାରିଖ ସକାଳ ଯାଏ ତୋଫାନିଆଁ ବର୍ଷା । ଚଉଦ ତାରିଖରେ ବାପା ବ୍ରଜବଲ୍ଲଭ ବାବୁଙ୍କର ଇତାଲ୍— ହତ୍ୟା ନା ଆତ୍ମହତ୍ୟା ।

କିନ୍ତୁ ପନ୍ଦର ତାରିଖ ଦିନ ଓକିଲ ପରାମର୍ଶ ମିଳିଥିଲା ଯେ ଦୁର୍ଘଟଣା ମୃତ୍ୟୁ ବୋଲି କରାଇବାକୁ । କିନ୍ତୁ ଚଉଦ ତାରିଖ ଇତାଲ୍ ବଦଳାଇବା ସମ୍ଭବ ହେଲା ନାହିଁ ।

ବୁଧବାର ପନ୍ଦର ତାରିଖରେ ପୋଷ୍ଟମର୍ଟମ ଦାୟିତ୍ୱରେ ଥିବା ଡାକ୍ତର ଶ୍ରୀମତୀ ସୁବର୍ଣ୍ଣ କରଙ୍କୁ ଅମିତା ଦେବୀଙ୍କର ସାମ୍ବାଦିକ ପିଶୁ ଭାଇ ଉରଫ ଦେବୀ ପ୍ରସନ୍ନ ପଟ୍ଟନାୟକ ବାବୁ ଅନୁରୋଧ କଲେ ଯେ ଅମିତା ଦେବୀଙ୍କର ମୃତ୍ୟୁର କାରଣ ସ୍ପାର୍କ ଓ ଇନଫ୍ଲାମେସନ (spark and inflamation) ଲେଖା ହେଉ ।

କିନ୍ତୁ ପୋଷ୍ଟମର୍ଟମ କଲେ ଅନ୍ୟ ଡାକ୍ତର । ସେଇ କଥା ଟାଇମସ୍ ଅଫ୍ ଇଣ୍ଡିଆ ଖବର କାଗଜରେ ଲେଖାଅଛି । ଏଥିରେ କାରଣ ଦିଆ-ଯାଇଛି "shock and peripheral circulatory failure" ଅର୍ଥାତ୍ ମନର ଆକସ୍ମିକ ଓ ସ୍ନାୟୁବିକ ଉତ୍ତେଜନା ଓ ଦେହର ବର୍ହି-ଭାଗର ଧମନୀ ଓ ଶିରାର ସମ୍ବେଦନ ଶକ୍ତିର ଅଭାବ ।

ଏହା ଅମିତା ଦେବୀଙ୍କର ଡେଥ୍ ସାର୍ଟିଫିକେଟରେ ଲେଖାଅଛି । ତେଣୁ ବିଜୁଳି ସ୍ପାର୍କିଙ୍ଗ ପାଇଁ ଶରୀର ପ୍ରଜ୍ୱଳନ କଥା ପନ୍ଦର ଅଗଷ୍ଟ ବୁଧବାର ଦିନ ହୋଇ ପାରିଲା ନାହିଁ ।

ଫଳରେ ଆତ୍ମହତ୍ୟା ବା ହତ୍ୟାର ପୁଲିସ ଇତାଲ୍ କାଏମ ରହିଲା ।

ଷୋହଳ ଅଗଷ୍ଟ ଗୁରୁବାର କିଛି କାମକୁ ଶୁଭ ନୁହେଁ ବୋଲି ଅନେକ ଲୋକଙ୍କର ବିଶ୍ୱାସ । ତେଣୁ ସତର ତାରିଖରେ ଖବର କାଗଜରେ ଲେଖାଇବା ଆରମ୍ଭ ହେଲା ।

ଦେବୀ ପ୍ରସନ୍ନ ବାବୁ ତାଙ୍କର ପଡ଼ୋଶୀ ପ୍ରଗତିବାଦୀ ଦୈନିକ ସମ୍ବାଦ ପତ୍ରରେ ଜଣେ ରିପୋର୍ଟର ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କର କର୍ମପ୍ରବଣତାର ମୂଲ୍ୟାୟନ କରି ପ୍ରଗତିବାଦୀ ତାଙ୍କୁ ଖବର କାଗଜରୁ ବିଦାୟ ଦେଇ "ତୃତୀୟ ନୟନ" ମାସିକ ସମ୍ବାଦ ସମୀକ୍ଷା ପତ୍ରିକାକୁ ପଠାଇ ଦେଲେ । ଦେବୀ ବାବୁ ମଧ୍ୟ ତୃତୀୟ ନୟନ ପତ୍ରିକାର ମୁଦ୍ରକ ଓ ପ୍ରକାଶକ । ସେପ୍ଟେମ୍ବର ପହିଲାରେ ପ୍ରଥମ ସଂଖ୍ୟା ପ୍ରକାଶ କରାଇଛନ୍ତି ।

କିନ୍ତୁ ଦେବୀବାବୁ "ତୃତୀୟ ନୟନ"ରେ ନିଜର ସାନ ଭଉଣୀ ଅମିତା ଦେବୀଙ୍କର ଅପମୃତ୍ୟୁ ବିଷୟରେ କିଛି ଲେଖାଇ ନାହାନ୍ତି ।

ସତର ଅଗଷ୍ଟ ଶୁକ୍ରବାର ଦିନ ବାପା ବ୍ରଜବାବୁ, ପୁଅ ଦେବୀ ବାବୁ, ଭୁବନେଶ୍ୱରର ଦୁଇଜଣ ସାମ୍ବାଦିକ, ସମାଜ ଅନୁଷ୍ଠାନ ସହିତ ସଂପୃକ୍ତ କାଳିଆ ଜଣଙ୍କୁ ନେଇ ଡକ୍ଟର ରାଧାନାଥ ରଥଙ୍କୁ ଫଟୋ ଓ ଗୋଟାଏ ଲେଖା ଦେଇ ପ୍ରକାଶ ପାଇଁ ଅନୁରୋଧ କଲେ ।

ମାନ୍ୟ ସମାଜ ଅଫିସ ଏପରି ଗୁରୁତର ସମ୍ବାଦ ଉନନ୍ଦିନ ଧରି ନ ପାଇଥିବାରୁ ତାଙ୍କର ସନ୍ଦେହ ଆସିଲା । ସେ ସେହି ଅମିତାଙ୍କର ଅପମୃତ୍ୟୁ (story) ସେଠାରେ ବସିଥିବା ଅଧ୍ୟାପିକା ଶ୍ରୀମତୀ ମନୋରମା ମହାପାତ୍ରଙ୍କୁ ଦେଖିବାକୁ ଅନୁରୋଧ କଲେ ।

ମନୋରମା ଦେବୀ ଷ୍ଟୋରିର ଅଭିଧାନ ଅର୍ଥ ଯଥା କଳ୍ପିତ ମିଛ କାହାଣୀ ବୋଲି କହିବାରୁ ଯୀଶୁବାବୁ ବିରକ୍ତ ହୋଇଥିଲେ ।

ଅଠର ଅଗଷ୍ଟ ଚଉରାଅଶି ଶନିବାର ଦିନ ସମାଜ ଦୈନିକର ସାତ ପୃଷ୍ଠାରେ ଏହି ବିବରଣୀ ପ୍ରକାଶ ପାଇଲା । ୧୭।୮ର Date line ନେଇ ।

× × ×

ଘଟଣା ରହସ୍ୟଜନକ ।

ପୋଡ଼ି ହୋଇ ଯୁବତୀର ମୃତ୍ୟୁ ।

କଟକ ତା ୧୭।୮—ଗତ ଚଉଦ ତାରିଖ ସନ୍ଧ୍ୟାରେ ମଙ୍ଗଳାବାଗ ନୂଆପାଟଣା ଅଞ୍ଚଳରେ ରହୁଥିବା ବାଇଶି ବର୍ଷ ବୟସ୍କା ନବବିବାହିତା ଶ୍ରୀମତୀ ଅମିତା ପଟ୍ଟନାୟକ ପୋଡ଼ି ହୋଇ ମୃତ୍ୟୁ ବରଣ କରିଥିବା ଜଣା ପଡ଼ୁଛି ।

ଶ୍ରୀମତୀ ପଟ୍ଟନାୟକଙ୍କର ଶାଢ଼ୀରେ ନିଆଁ ଲାଗି ସେ ଗୁରୁତର ଭାବରେ ଆହତ ହୋଇଥିଲେ । ତାଙ୍କୁ ମୂର୍ଚ୍ଛିତ ଅବସ୍ଥାରେ ସନ୍ଧ୍ୟା ଛଅଟାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ସର୍ଜରୀ ବିଭାଗରେ ଚିକିତ୍ସା ପାଇଁ ଭର୍ତ୍ତି କରାଯାଇଥିଲା । ରାତି ଦଶଟା ବେଳେ ସେଠାରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା ।

ପ୍ରକାଶ ଥାଉ କି ଅମିତା ମାତ୍ର ତିନି ମାସ ତଳେ ବିବାହ କରିଥିଲେ ।

ତାଙ୍କ ସ୍ୱାମୀ ଶ୍ରୀ ଶୁଭେନ୍ଦୁ ପଟ୍ଟନାୟକ ଦିଲ୍ଲୀରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ଅଛନ୍ତି । ବିବାହର ଦଶ ପନ୍ଦର ଦିନ ପରେ ଶ୍ରୀମତୀ ଅମିତା ଦିଲ୍ଲୀ ଯାଇ ତାଙ୍କର ସ୍ୱାମୀଙ୍କ ପାଖରେ ଥିଲେ । ଗତ ଜୁଲାଇ କୋଡ଼ିଏ ତାରିଖ ଦିନ ସେ ସ୍ୱାମୀଙ୍କ ସହ କଟକ ଫେରିଥିଲେ ଏବଂ ଏଠାରେ ଶାଶୁ ଶଶୁରଙ୍କ ପାଖରେ ଥିଲେ । ତାଙ୍କର ସ୍ୱାମୀ ତାଙ୍କୁ ଛାଡ଼ି ଦିଲ୍ଲୀ ଫେରି ଯାଇଥିଲେ ।

ଏହି ଘଟଣା ପଛରେ ବହୁ ରହସ୍ୟ ଥିବା ଜଣା ପଡ଼ୁଛି । ଏହା ଆତ୍ମହତ୍ୟା, ଦୁର୍ଘଟଣା ବା ଅନ୍ୟ କିଛି ସେ ବିଷୟ ନେଇ ବହୁତ କଳ୍ପନା ଜଳ୍ପନା ଚାଲିଛି । ପୋଲିସ ତଦନ୍ତ ଚଳାଇଛନ୍ତି ।

ଶ୍ରୀମତୀ ଅମିତାଙ୍କର ପିତା ଶ୍ରୀ ବ୍ରଜବଲ୍ଲଭ ପଟ୍ଟନାୟକ କୃଷି ନିର୍ଦ୍ଦେଶାଳୟର ଅଣ୍ଡର ସେକ୍ରେଟେରୀ ଓ ତାଙ୍କର ବଡ଼ ଭାଇ ଶ୍ରୀ ଦେବୀ ପ୍ରସନ୍ନ ପଟ୍ଟନାୟକ ଭୁବନେଶ୍ୱରର ଜଣେ ସାମ୍ବାଦିକ । ସମାଜ ୧୮।୮।୮୪

× × ×

କିନ୍ତୁ ଅମିତାଙ୍କ ତରଫରୁ ଯାଇଥିବା ଲୋକେ ସମାଜ କାଗଜକୁ ନିମ୍ନଲିଖିତ ବିଷୟରେ ଭୁଲ ତଥ୍ୟ ଦେଲେ ।

(୧) ଅମିତା ଦେବୀ ଅପରାହ୍ଣ ତିନଟା ବେଳେ ଡାକ୍ତରଖାନାରେ ନିଆଗଲେ । କାଜୁଆଲିଟିରୁ ତାଙ୍କୁ ସନ୍ଧ୍ୟା ଛଅଟା ବେଳେ ଫିମେଲ ସର୍ଜିକାଲ ଓ୍ୱାର୍ଡକୁ ବାପା ଘରଲୋକଙ୍କର ଏକାନ୍ତ ପ୍ରାର୍ଥନାରେ ନିଆଯାଇଥିଲା । ଏହି ସମ୍ବାଦରେ ଦେଖାଇବାକୁ ଚେଷ୍ଟା କରାଯାଇଛି ଯେ ଦଗ୍ଧୀଭୂତ ହେବାର ତିନି ଘଣ୍ଟା ପର୍ଯ୍ୟନ୍ତ ଅମିତାଙ୍କୁ ଡାକ୍ତରଖାନାକୁ ନିଆ ଯାଇ ନାହିଁ । ପ୍ରକୃତରେ ରାତି ଦଶଟା ବେଳେ ବାପା ଭାଇଙ୍କର ଚେଷ୍ଟାରେ ଫିମେଲ ସର୍ଜିକାଲ ଓ୍ୱାର୍ଡକୁ ନିଆଗଲା ଓ ସେଠାରେ ରାତି ସାଢ଼େ ଏଗାରଟାରେ ମରିଗଲେ । ଫଟୋ ଉଠାଇବା ସୁବିଧା ପାଇଁ କରାଯାଇ ଥିଲା ।

ଦ୍ୱିତୀୟ କଥା ହେଲା ଯେ ସମାଜକୁ ସେମାନେ ଦୁର୍ଘଟଣା କଥା ଯୋଗ କରି କହିଲେ । କାରଣ ହତ୍ୟା ବିଷୟରେ କେହି ହେଲେ ସମର୍ଥନ ଦେଲେ ନାହିଁ । ଦୁର୍ଘଟଣା କଥା ଇତାଲରେ ନାହିଁ ।

The Times of India News Serviceରେ ଭୁବନେଶ୍ୱରରୁ ବରିଷ୍ଠ ସାମ୍ବାଦିକ ଶ୍ରୀ ଦେବମଣି ଗୁପ୍ତ ତାଙ୍କର ବିବରଣୀ ଅଗଷ୍ଟ ଅଣତିରିଶି କାଗଜରେ ଅମିତାଙ୍କର ମୃତ୍ୟୁର ପନ୍ଦର ଦିନରେ ନିମ୍ନଲିଖିତ ପ୍ରକାରରେ ଦେଲେ—

× × The death certificate, signed by Dr Guru-prasad Mohanty of the S. C. B. Hospital, attributes the death to shock and peripheral circulatory failure

ଦୈନିକ ସମାଜର ଗୋଟିଏ ବିଶେଷତ୍ୱ ଅଛି ଯେ ସମାଜରେ ପ୍ରକାଶିତ ବିବରଣୀ ଉପରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ହୋଇଥାଏ । ଏହା ମାହାଙ୍ଗା ଡାକ୍ତର ନୀଳାମ୍ବର କରଙ୍କର ଗିରଫ ଘଟଣାରେ ଏହାର ଅଳ୍ପ କିଛିଦିନ ପୂର୍ବରୁ ପରୀକ୍ଷିତ ହୋଇଥିଲା । ସମାଜର ବିବରଣୀ ୧୮।୮।୮୪ରେ ପଢ଼ି ସାମ୍ବାଦିକ ଦେବୀ ବାବୁ ସେଇ Date line ଦେଇ ତାଙ୍କର କାଗଜ ପ୍ରଗତିବାଦୀ ଦୈନିକରେ ୧୯।୮।୮୪ ରବିବାର ଦିନ ପ୍ରକାଶ କରାଇଲେ । ନିଜକୁ ପ୍ରଗତିବାଦୀର ସ୍ୱତନ୍ତ୍ର

ପ୍ରତିବାଦ କଲେ । ଯେ ସମାଜର ରିପୋର୍ଟ ପଢି ବିରକ୍ତ ସେ ତଥ୍ୟକୁ ସମାଜରେ ଛପାଇ ଦିଆଗଲା ।

× × ×

ପ୍ରଗତିବାଦୀ ଭୁବନେଶ୍ୱର—୨

ସମ୍ବାଦ ୧୮।୮।୮୪ ପ୍ରକାଶ ୧୯।୮।୮୪

କଟକ ୧୮।୮—ଗତ ଚଉଦ ତାରିଖ ଦିନ ମଙ୍ଗଳାବାଗସ୍ଥିତ ଶ୍ରୀ ହିମାଂଶୁ ମୋହନ ପଟ୍ଟନାୟକଙ୍କର ଏକମାତ୍ର ବୋହୂ ଶ୍ରୀମତୀ ଅମିତାଙ୍କର ରହସ୍ୟଜନକ ଭାବେ ପୋଡ଼ି ହୋଇ ମୃତ୍ୟୁ ଘଟିଥିବା ଜଣା ପଡ଼ୁଛି । ଅମିତାଙ୍କର ବୟସ ମାତ୍ର ୨୩ ବର୍ଷ ଅଟେ । ସେ ଗତ ଅପ୍ରେଲ ମାସ ବାଇଶି ତାରିଖରେ ବିବାହ କରିଥିଲେ ।

ତାଙ୍କର ଶାଶୁ ଶ୍ରୀମତୀ ପୂର୍ଣ୍ଣପ୍ରଭା ପଟ୍ଟନାୟକ ଜଣେ ଉଚ୍ଚ ଶିକ୍ଷୟିତ୍ରୀ ଅଟନ୍ତି ଏବଂ ଏକମାତ୍ର ନଣନ୍ଦ କୁମାରୀ ନନ୍ଦିନୀ ପଟ୍ଟନାୟକ ରେଭେନ୍ସା କଲେଜର ଶେଷ ବର୍ଷ ଇଂରାଜୀ ଛାତ୍ରୀ ଅଟନ୍ତି ।

ଅମିତାଙ୍କର ସ୍ୱାମୀ ଶ୍ରୀ ଶୁଭେନ୍ଦୁ ପଟ୍ଟନାୟକ ଦିଲ୍ଲୀରେ ଏନ. ଟି ପି. ସି.ରେ ସିନିଅର ଇଞ୍ଜିନିଅର ଅଛନ୍ତି । ବିବାହ ପରେ ପରେ ଅମିତା ସ୍ୱାମୀଙ୍କ ସହ ଦିଲ୍ଲୀରେ ଥିଲେ ଏବଂ ଗତ ଜୁଲାଇ କୋଡ଼ିଏ ତାରିଖ ଦିନ ସେ କଟକ ନିଜ ଶ୍ୱଶୁରଘରକୁ ଫେରି ଆସିଥିଲେ ।

ସ୍ୱାମୀ ତାଙ୍କୁ ଛାଡ଼ି ଦେଇ **ତେଇଶି** ତାରିଖ ଦିନ ଦିଲ୍ଲୀ ଚାଲି ଯାଇଥିଲେ । ଅମିତା (ଡାକ ନାମ ମାମି) ଯେପରି ହେଲେ ବି. ଏ. ପାସ କରିବ ଏବଂ ସମ୍ଭ୍ରାନ୍ତ ବଂଶର ଚଳଣୀକୁ ଶିଖିବାକୁ ତାଙ୍କୁ କଟକରେ ଛାଡ଼ିଦବା ପାଇଁ ଶାଶୂ ନିଜ ପୁଅ ପାଖକୁ ଜଣାଇ ଥିବାରୁ ସ୍ୱାମୀ ଶୁଭେନ୍ଦୁ ତାଙ୍କୁ ଆଣି କଟକରେ ନିଜ ମାଆଙ୍କ ପାଖରେ ଛାଡ଼ିଦେଇ ଯାଇଥିଲେ ।

ଗତ ଚଉଦ ତାରିଖ ଦିନ ଦୁଇଟାରୁ ସାଢ଼େ ଦୁଇଟା ମଧ୍ୟରେ ଅମିତାଙ୍କୁ ତାଙ୍କ ବାସଭବନ ଉପର ମହଲର ପାହାଚ ପାଖରେ ସମ୍ପୂର୍ଣ୍ଣ ଦଗ୍ଧୀଭୂତ ଅବସ୍ଥାରେ ପଡ଼ୋଶୀ ଘରର ଲୋକମାନେ ଉଦ୍ଧାର କରିଥିଲେ ।

ଘଟଣାରୁ ଜଣାପଡ଼ୁଛି ଯେ ସେହି ସମୟରେ ଉପର ମହଲାର ଷ୍ଟାଇଲଇଟ ବାଟେ ଧୂଆଁ ବାହାରୁଥିବାର ଦେଖି ଶ୍ରୀ ଶିବପ୍ରସାଦ ସାହୁ ନାମକ ଜଣେ ବ୍ୟବସାୟୀ ତାଙ୍କର ବାସଭବନ ଭିତରକୁ ପଶିଗଲା ବେଳକୁ ଅମିତାର ଶାଶୁଙ୍କୁ ଉପର ଘରର ପାହାଚ ଉପରୁ ଦୌଡ଼ି ଆସୁଥିବାର ଦେଖିଥିଲେ ।

ଶିବ ସାହୁ ଉପର ଘର ଅଭିମୁଖେ ଗଲାବେଳକୁ ପାହାଚ ଉପରେ ଅମିତାକୁ ସମ୍ପୂର୍ଣ୍ଣ ଦଗଧୀଭୂତ ଅବସ୍ଥାରେ ଦେଖି ଦୌଡ଼ିଯାଇ ସାହିର ଅନ୍ୟାନ୍ୟ ଲୋକମାନଙ୍କୁ ଡାକିଥିଲେ ।

ଅମିତା ସେତେବେଳେ "ମତେ ବଞ୍ଚାଅ" ବୋଲି ଚିତ୍କାର କରୁଥିଲେ । ମହେନ୍ଦ୍ର ବେହେରା ଏବଂ ଅନ୍ୟ କେତେ ଜଣ ଶିବସାହୁଙ୍କ ସହିତ ଅମିତାଙ୍କର ପୂର୍ଣ୍ଣ ଦଗ୍ଧୀଭୂତ ଶରୀରକୁ ଆଣି ତଳ ଘରେ ଏକ ଗଦି ଉପରେ ରଖିଥିଲେ ଏବଂ ପରେ ପରେ ଆମ୍ବୁଲାନସ୍‌ରେ କଟକ ହସପିଟାଲ କାଜୁଆଲଟିରେ ଭର୍ତ୍ତି କରିଥିଲେ ।

ଅମିତା ଇଲେକଟ୍ରିକ କରେଣ୍ଟ ଆଘାତରେ ଆହତ ହୋଇ କଟକ କାଜୁଆଲଟିରେ ଭର୍ତ୍ତି ହୋଇଛନ୍ତି ବୋଲି ତାଙ୍କର ପିତା ଶ୍ରୀ ବ୍ରଜବଲ୍ଲଭ ପଟ୍ଟନାୟକଙ୍କୁ ଜଣାଇ ଦିଆଗଲା । ସେ ଭୁବନେଶ୍ୱରରେ କୃଷିବିଭାଗରେ ଅଣ୍ଡର ସେକ୍ରେଟାରୀ ପାହ୍ୟାରେ ଅଛନ୍ତି ।

ଅମିତାଙ୍କର ପିତା ସିଧାସଳଖ ଫୋନରେ ଏ ସମ୍ବାଦ ପାଇ ନଥିବାରୁ ବ୍ୟସ୍ତ ହୋଇ କଟକର ପୁରୀଘାଟରେ ଥିବା ଅମିତାଙ୍କର ମାଉସୀ ଶାଶୁ ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକଙ୍କ ଘର ସହ ଫୋନ ଯୋଗାଯୋଗ କରିବାରୁ ଅମିତାଙ୍କର ନଣନ୍ଦ ନନ୍ଦମା ଫୋନ ଧରିଥିଲେ ।

ଭାଉଜ ଏବଂ ତାଙ୍କର ମା ଉଭୟେ ଇଲେକଟ୍ରିକ କରେଣ୍ଟ ଆଘାତରେ ହସପିଟାଲରେ ଭର୍ତ୍ତି ହୋଇଛନ୍ତି ବୋଲି ନନ୍ଦମା ଜଣାଇ ଥିଲେ । ଭାଉଜଙ୍କର ପ୍ରକୃତ ଅବସ୍ଥା କେମିତି ଅଛି ଏବଂ କେଉଁ ଅବସ୍ଥାରେ ଘଟଣା ଘଟିଲା ସେ ସମ୍ପର୍କରେ କିଛି କହି ନଥିଲେ ।

ଅମିତାଙ୍କୁ ହାଇକୋର୍ଟରେ ଦିନ ତିନିଟା ବେଳକୁ ଭର୍ତ୍ତି କରାଯାଇଥିଲା ଏବଂ ରାତି ଏଗାରଟା କୋଡ଼ିଏ ମିନିଟ୍ ସମୟରେ ତାଙ୍କର ମୃତ୍ୟୁ ହୋଇଥିଲା ।

ମୃତ୍ୟୁ ପୂର୍ବରୁ ଅମିତା ତାଙ୍କର ପିତା ଓ ଭାଇମାନଙ୍କର ବାରମ୍ବାର ପ୍ରଶ୍ନ ଉପରେ ସେ ଭଲ ହୋଇଗଲା ପରେ ତାଙ୍କୁ ଆଉ ଶଶୁର ଘରକୁ ନ ପଠାଇ ନିଜ ଘରକୁ ନେବାକୁ ବିକଳ ହୋଇ କହିଥିଲା ଏବଂ ଭଲ ହୋଇଗଲେ ସମସ୍ତ କଥା ଜଣାଇବ ବୋଲି କହିଥିଲା ।

ଅପର୍ଣ୍ଣ ଦଗ୍ଧୀଭୂତ ହୋଇ ଯାଇଥିଲେ ହେଁ ସେ ନିଜ ଘରର ସମସ୍ତ ବନ୍ଧୁ ବାନ୍ଧବଙ୍କୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଖୋଜିଥିଲା ।

ଏହି ସମୟରେ ସେ ଆଉରି ଅନେକ କଥା ତା'ର ଭାଇମାନଙ୍କ ଆଗରେ ମଧ୍ୟ କହିଛି—ଯାହାକି ତାର ପିତାମାତା ଏବଂ ବନ୍ଧୁ ବାନ୍ଧବ ମନରେ ସନ୍ଦେହ ସୃଷ୍ଟି କରିଛି ।

ଅମିତାଙ୍କର ଏପରି ମୁମୂର୍ଷୁ ଅବସ୍ଥାରେ ମୃତ୍ୟୁ ଘଟିଥିବାରୁ ଏବଂ ତାଙ୍କର ଶଶୁର କିମ୍ବା ସମ୍ପର୍କୀୟମାନେ ମୃତ୍ୟୁର ସଠିକ ଖବର ଦେଇ ପାରି ନଥିବାରୁ ତାଙ୍କ ପିତା ଶ୍ରୀ ବ୍ରଜବଲ୍ଲଭ ପଟ୍ଟନାୟକ ଏହି ମୃତ୍ୟୁ ଉପରେ ସନ୍ଦେହ ପ୍ରକାଶ କରି ମଙ୍ଗଳାବାଗ ଥାନାରେ ଏକ ଏତାଲ ଦେଇଥିଲେ ।

ବିବାହ ସମୟରେ କୌଣସି ଯୌତୁକ ଦାବୀ ନ ଥିଲେ ମଧ୍ୟ ଅମିତାଙ୍କୁ ବାହାଘର ପରେ ବାପଘରର ଜିନିଷପତ୍ର, ଶାଢ଼ୀ ଓ ବେଭାର ନେଇ ତାଙ୍କ ଶାଶୂ ପୁଣ୍ୟପ୍ରଭାଙ୍କ ନିକଟରୁ ଅନେକ କଥା ଶୁଣିବାକୁ ପଡ଼ିଥିଲା ।

ନିଜ ଶାଶୁର ବ୍ୟବହାର ନେଇ ଅମିତା ନିଜ ସ୍ୱାମୀଙ୍କୁ କହିଥିଲେ ହେଁ ଏ ଦିଗରେ ସେ ବିଶେଷ ପ୍ରତିକାର କରିପାରି ନଥିଲେ । ଅମିତା ଏ ବିଷୟରେ ନିଜର ମାଆ ଓ ଭାଇମାନଙ୍କ ପାଖକୁ ମଧ୍ୟ ଲେଖିଥିଲା ।

ଅମିତା ସଂପୂର୍ଣ୍ଣ ପୋଡ଼ି ହୋଇ ଯାଇଥିଲା ବେଳେ ତା'ର ଶାଶୁଙ୍କର ହାତ ଦୁଇଟି ମଧ୍ୟ ପୋଡ଼ିହୋଇ ଯାଇଥିଲା ଏବଂ ତାଙ୍କୁ ଯନ୍ତ୍ରଣା ଉପଶମ ବଟିକା ଦିଆଯାଇ ପନ୍ଦର ତାରିଖ ପାଞ୍ଚଟା ପର୍ଯ୍ୟନ୍ତ ଶୁଆଇ ରଖାଯାଇଥିଲା ।

ଅମିତା ଚଉଦ ତାରିଖ ରାତି ଏଗାରଟା କୋଡ଼ିଏ ମିନିଟ୍‌ରେ ପ୍ରାଣତ୍ୟାଗ କରିଥିଲେ ହେଁ ପନ୍ଦର ତାରିଖ ସନ୍ଧ୍ୟା ପାଞ୍ଚଟା ସୁଦ୍ଧା ଶଶୁର ଘର ଆଡ଼ୁ କୌଣସି ବନ୍ଧୁବାନ୍ଧବ ଆସି ନ ଥିଲେ ।

ଅମିତାଙ୍କ ସ୍ୱାମୀଙ୍କୁ ଦିଲ୍ଲୀ ଖବର ଦିଆଯିବାରୁ ସେ ଉକ୍ତ ଦିନ ପାଞ୍ଚଟା ସମୟରେ ଆସି ପହଞ୍ଚିଲେ ।

ଅମିତାଙ୍କର ମୃତ୍ୟୁ ଘଟଣା ସମ୍ପର୍କରେ ମଙ୍ଗଳାବାଗ ପୁଲିସ ତଦନ୍ତ ଚଳାଇଛନ୍ତି ।

ପୋଷ୍ଟମର୍ଟମ୍ ପରେ ପରେ ତାଙ୍କର ମୃତ ଦେହକୁ ଶଶୁର ଘରର କେହି ନେଇ ନ ଥିବାରୁ ତାହା ଦୀର୍ଘ ଦୁଇ ଘଣ୍ଟା ଧରି ବାହାର ଲନ୍‌ରେ ପଡ଼ି ରହିଥିଲା ବୋଲି ଅମିତାର ବଡ଼ ଭାଇ ଅଭିଯୋଗ କରିଥିଲେ ।

ଉକ୍ତ ଦିନ ରାତି ସାତଟା କୋଡ଼ିଏ ମିନିଟରେ କଟକରେ ଥିବା ବୈଦ୍ୟୁତିକ ଚୁଲାରେ ଶେଷ କ୍ରିୟା ସମ୍ପନ୍ନ କରାଯାଇଥିଲା ।

ଶେଷ କୃତ୍ୟ ସମୟରେ ତା'ର ଶାଶୁ ନଣନ୍ଦ ମଧ୍ୟ ଉପସ୍ଥିତ ରହି ନ ଥିଲେ ।

ଅମିତାକୁ ହସପିଟାଲରେ ଭର୍ତ୍ତି କରିଥିଲା ବେଳେ ତା'ର ହାତରେ କେବଳ ଦି'ପଟ ପ୍ଲାଷ୍ଟିକ ଚୁଡ଼ି ଛଡ଼ା ଅନ୍ୟ କୌଣସି ସୁନା ଅଳଙ୍କାର ନ ଥିଲା ।

× × ×

ମୋର ବୋହୂ ଅମିତାର ଭୁବନେଶ୍ୱର ଘରେ ଚହଳ ପଡ଼ିଗଲା । ସମାଜ କାଗଜ ସତ କଥା ଲେଖିବାକୁ ସାହାସ କରୁ ନାହିଁ । ବାବୁ ଫକୀର ଚରଣ ଦାସ ଥିଲେ ଅନ୍ଧ କରିଣ ସମାଜର ଆଖି ପର । ସେ ଅବସର ନେବା ପରେ ସମାଜ ଅନୁଷ୍ଠାନ ପୁରାପୁରି ଗୋଟିଏ ସମ୍ପ୍ରଦାୟ ହାତକୁ ଚାଲି ଯାଇଛି । ତେଣୁ ନ୍ୟାୟ ଦେଇ ପାରିବ ନାହିଁ ।

ନିଜ କଥା ଗ୍ରହଣୀୟ ନ ହେଲେ ଆମେ ସମସ୍ତେ ଜାତି ଓ ପାଠକ ନିର୍ବିଶେଷରେ ଶ୍ଵୀକାର କରୁ ଯେ ନ୍ୟାୟ ବିଗ୍ରହର ଲୋପ ପାଇଗଲା ।

ସେକେଣ୍ଟରଏଣ୍ଟର ଜଣେ ଅଣ୍ଡର ସେକେଣ୍ଟରୀ କରଣ ସମାଜରେ ଅର୍ଦ୍ଧରଥୀ କର୍ଣ୍ଣଙ୍କ ପରି । ତାଙ୍କର ଉପସ୍ଥିତି ଓ ତାଙ୍କର ସାମ୍ବାଦିକ ପୁଅଙ୍କର ଲେଖା ସମାଜ ଗ୍ରହଣ କରିପାରି ନାହିଁ—ନିଶ୍ଚିତରେ ଉଦ୍ଦେଶ୍ୟ-ମୂଳକ ଭାବରେ । କାରଣ ପୁଲିସ ଇତାଲିକୁ ବଳ ଦିଆଇ ନ ପାରିଲେ ନିଜର ସୁଇସାଇଡ଼ ହୋମିସାଇଡ଼ ଦୁର୍ବଳ ହୋଇ ଯାଉଛି ।

ଝିଅ ଯଦି ମଲା—ତେବେ ଶାଶୁ ନଣନ୍ଦ ଜେଲଖାନା ଦେଖନ୍ତୁ । ଶଶୁର ଓ ଜୋଇଁଙ୍କର କପାଳ ଭଲ ଯେ ଘଟଣା ବେଳେ କଟକରେ ଓ ଘରେ ନ ଥିଲେ । ଥିଲେ ଜାଣିଥାନ୍ତେ ଯେ ମଡ଼ି ବୁଢ଼ାଳୀଙ୍କୁ ବିଢଖୁଆଲେ ଯେଉଁ ଆର୍ଥୀ ବୋଲି କହିଥାନ୍ତି । ସେତକ ପୂରଣ ହୋଇଥାନ୍ତା ।

ନ ଥାନ୍ତୁ । ଆଜି ନ ଥିଲେ କାଲି ଆସିବେ । ଆଜି ନିର୍ଦ୍ଦୋଷ ମନେ ହେଉଥିଲେ କାଲି ଦୋଷୀ ହୋଇପାରିବେ । ସତ ଓ ଅନୁମାନ ଭିତରେ ପ୍ରଭେଦ ଆସିବ ଅଭିଯୋଗପତ୍ରରୁ ।

ଅନ୍ୟ ସବୁ କାଗଜ କରଣ ମାନଙ୍କର । ଖାଲି ଦିନଲିପି ଓ ମାତୃଭୂମି ବ୍ରାହ୍ମଣମାନଙ୍କ ହାତରେ । କିନ୍ତୁ ଦିନଲିପି କାଗଜଠାରୁ ପ୍ରଗତିବାଦୀ ଦୈନିକ ଅଧିକ ଗୁରୁତ୍ୱପୂର୍ଣ୍ଣ । ମାହାନ୍ତି ମାନଙ୍କୁ ବିଶ୍ୱାସ ନାହିଁ । ମାହାନ୍ତି ମଧ୍ୟ ମାହାନ୍ତିକୁ ସାବଧାନ ଥାଏ ।

ସେଥିପାଇଁ ପ୍ରଗତିବାଦୀର ସ୍ଥାନ ପ୍ରଥମ ହେଲା । ଏଥିରେ ରହିଲା ପ୍ରଥମ ଅଭିଯୋଗ ପତ୍ର । କ'ଣ ପାଇଁ ଝିଅ ତାହାର ଶଶୁର ଘରକୁ ଆସିଲା ।

ସେଇଠୁ ବାହାରିଲା ଶତକଡ଼ା ନବେ ପରସେଣ୍ଟ ଦଗ୍ଧୀଭୂତ ରୋଗୀ ଡାକ୍ତରଖାନା ଆଡ଼ମିସନର ଛଅ ଘଣ୍ଟା ପରେ ମୃତ୍ୟୁର ଦୁଇ ଘଣ୍ଟା ଆଗରୁ କ୍ଲେଶ ଓ ଯନ୍ତ୍ରଣା ନିବାରକ ଔଷଧ ଓ ଇଞ୍ଜେକସନ ମଧ୍ୟରେ ନିଜର ଶଶୁର ଘର ବିରୁଦ୍ଧରେ ଅଭିଯୋଗର ବିବରଣୀ ।

ଏତକ ଦରକାର ହେଲା ମଡ଼ର ଅଭିଯୋଗର ପୃଷ୍ଟପୋଷକତା କରିବା ପାଇଁ । ସେଥିରେ ଥିଲା ଯେ ଶାଶୁଘର ବୋହୂକୁ ହତ୍ୟା କରିବା ଆଗରୁ ତାହାର ଗହଣା ପତ୍ର ଖୋଲିଦେଇଛନ୍ତି ।

ତଥାପି କହିବାକୁ ହେବ ଯେ ଯୀଶୁ ବାବୁ ଓରଫ ଦେଖାବାବୁଙ୍କର କାହାଣୀ ହିତାହିତ ବିଚାରର ଅଛି । ପ୍ରଧାନ କଥା ହେଲା ଅଣ୍ଡର ସେକ୍ରେଟେରୀଙ୍କର ଝିଅ । ଖାଲି ଶୁଣିଗଲେ ପଦେ ଯେ ସାହାବଙ୍କର ବଡ଼ ପୁଅକୁ ବତିଶି ବର୍ଷ କିନ୍ତୁ ସାହାବଙ୍କର ଗୃହିଣୀକୁ ବୟସ ପଚିଶି ବର୍ଷ । ଗୃହିଣୀ ଓ ଅମିତା ସମାନ ପାହାଚରେ ।

ବାହାଘରର ଗୁରିମାସ ପୂରିବା ଆଗରୁ କେବଳ କରଣ ସମାଜରେ ସମ୍ବନ୍ଧୀ ତାହାର ସମନ୍ଧିଣୀଙ୍କୁ ଓ ଝିଅର ନଣନ୍ଦକୁ ମଡ଼ର କେସରେ ପକାଇବାକୁ ଉଚିତ ମନେ କରେ ।

ବିନା ଯୌତୁକ ବିବାହର ପରିଣତି କରଣ ଘରେ ଏହି ପ୍ରକାରର ହୁଏ । କିନ୍ତୁ ଦୁର୍ଦ୍ଦଶାଗ୍ରସ୍ତ ଝିଅକୁ ଦେଖିବାକୁ ନିଜର ଜନ୍ମକଲା ମାଆ କୋଡ଼ିଏ କିଲୋମିଟର ପକ୍‌କା ରାସ୍ତା ଚବିଶ ଘଣ୍ଟା ଭିତରେ ବି ଅତିକ୍ରମ କରିପାରେ ନାହିଁ । ଇଏ ହେଉଛି ମୂଲ୍ୟବୋଧ ।

ଶେଷରେ ତଥାକଥିତ ଯୌତୁକ ପହଞ୍ଚିଗଲା । କାରଣ ମୃତ୍ୟୁ ଓ ଯୌତୁକ ମିଶିଲେ ସମାସ ହୋଇ ଡାଓରୀ ଡେଥ୍ ହୋଇଯାଏ । ଡାଓରୀ ଡେଥ୍ ଆଂଶିକ ପ୍ରମାଣ ହେଲେ ଡାଓରୀ ଧରିଥିବା ଶାଶୁ ଅନ୍ତତଃ କଟକ ଦରଘାବଜାର ଜେଲଖାନା ଦେଖିବ । ଆଉ ତାକୁ ଦେଖାଇବା ମଧ୍ୟ ଦରକାର ।

ଏଇ ଡାଓରୀ ଡେଥ୍ ଓଡ଼ିଆ କାଗଜ ଗ୍ରହଣ କଲେ ନାହିଁ ବୋଲି ଅଗଷ୍ଟ ଅଣତିରିଶିର ଟାଇମ୍‌ସ ଅଫ୍ ଇଣ୍ଡିଆରେ ଡାଓରୀ ଡେଥ୍ ହୋଇଗଲା; କାରଣ ସାମ୍ବାଦିକ କଲିକତାବାସୀ ହୋଇଥିବାରୁ ଓ ସମକାଳୀନ ବ୍ୟକ୍ତି ବିଶେଷଙ୍କ ବିଷୟରେ ଅବହିତ ହୋଇପାରି ନଥିଲେ ।

ଏଇ ଯୌତୁକ ବା ଡାଓରୀ ଆଜି ବିଭିନ୍ନ ସଂପ୍ରଦାୟର ସମସ୍ୟା । ଏଥିରେ ମିଛ ଓ ସତ ଏପରି ଭାବରେ ମିଶେ ଯେ କଥାଟା ଝଟଝଟିଆ ପାହାନ୍ତା ପରି ହୋଇଯାଏ ।

ମୋର ମାମୁଁଘର ଏରସମାର ନିକଟ ଧୂଆଁସାହିରେ ମୋର ଗୋଟାଏ ସମ୍ପର୍କୀୟ ମାମୁଁଘର । ମୋର ମାମୁଁ ଝିଅ ଭଉଣୀ ହେଲେ ଶ୍ରୀ ନଶାମଣି ଖୁଣ୍ଟିଆଙ୍କ ଶାଶୁ ।

ତାଙ୍କର ମଧ୍ୟ ଏହି ଯୌତୁକ ଅତି ବେଶି ହେଲା ବୋଲି ମତେ ବିଶିଷ୍ଟ କରଣ ସାମନ୍ତ ପ୍ରତିଷ୍ଠିତ ଆଡ଼ଭୋକେଟ୍ ଶ୍ରୀ ଅମିତାଭ ମହାପାତ୍ର କହିଥିଲେ ।

ମୁଁ ଜାଣେ ଯେ ମୋର ଜୋଇଁ ଖୁଣ୍ଟିଆ ବାବୁ ଯୌତୁକ ନେଇ ନାହାନ୍ତି । ତାଙ୍କର ସମ୍ବନ୍ଧୀ ମଧ୍ୟ ଯୌତୁକ ଦାବୀ କରି ନାହାନ୍ତି । କନ୍ୟାପକ୍ଷ କରୁଛି ନିଜ ଘରକୁ ଆଣି ନାହାନ୍ତି । ସେଥିପାଇଁ ମୁଁ ଅମିତାଭବାବୁଙ୍କୁ ପ୍ରତିବାଦ କଣାଇଥିଲି ।

କିନ୍ତୁ ଅମିତାଭବାବୁ ମତେ ବୁଝାଇ ଦେଲେ ଯେ ଖୁଣ୍ଟିଆବାବୁ କଟକରେ ଜମି କିଣିବା ପାଇଁ ତାଙ୍କର ସମୁଧିଙ୍କୁ ପ୍ରାୟ କେତେ ହଜାର ଟଙ୍କା ଦେଇଥିଲେ । ଆଉ ଝିଅ ଯେଉଁ ଆଠଦିନ ଖୁଣ୍ଟିଆବାବୁଙ୍କ ଘର ଗୁଡି ଶଶୁର ଘରକୁ ଆସିଥିଲେ ସେଥି ମଧ୍ୟରେ ସବୁ ପ୍ରକାରର ଯୌତୁକ ପଦାର୍ଥ ତିଆରି ହୋଇ ଆସିଥିଲା ଓ କଟକନ୍ତୁ ଗାଏବ ହୋଇଯାଇଛି ।

ଇଏ ହେଲା କରଣ ଘରର ସତ କହିବାର ପ୍ରଣାଳୀ । ଏହାକୁ କହିବା ଲୋକ ଅଛନ୍ତି । ଏହି ଏକସପର୍ଟ ସତ କଥାକୁ ସତ ବୋଲି ବୁଝିବା ପାଇଁ ଅନେକ ବିଚକ୍ଷଣ ଲୋକ ଅଛନ୍ତି । ତେଣୁ ଯୌତୁକ ନ ନେଇ ବାହାଘର କଲେ ମଧ୍ୟ ଲୋକମତ ତା'ଙ୍କୁ ଗ୍ରହଣ କରିପାରେ ଓ ନ କରିପାରେ ।

ମୋର ବୋଧ, ଅମିତାର ସମସ୍ୟାକୁ ଜଟିଳ କରିଥିଲେ ଅମିତା ଘରର ଲୋକେ ।

ସାବିତ୍ରୀ ଉଆଁସ ମଇ ତିରିଶି । ବାହାଘର ପରେ ପ୍ରଥମ ବେଭାର ନେଇ କଟକ ମଙ୍ଗଳାବାଗକୁ ନିଜେ ସାମ୍ବାଦିକ ଯୀଶୁ ଯାଇ ଓ ବାପି ଯାଇ ଆସିଲେ । ଆଣିଥିଲେ ପାଚିଲା କଦଳୀ ଦୁଇ ଫେଣା, ବଡ଼ ପଣସ ଗୋଟିଏ, ବାଇଗଣ ପୋଲେଇ ଆମ୍ବ ବାରଟା, ଦେଶୀ ଖଜୁରୀ କୋଳି

ଆଠଟା, ଶୁଖିଲା କଣ୍ଟା ଡାଳ ଗୁଚ୍ଛଟା, ନଡ଼ିଆ ଦୁଇ, ଗୋଟାମୁଗ ପ୍ରାପ୍ତ ହେଉଥିଲେ, କେନ୍ଦୁ ଗୁଚ୍ଛଟା ଓ ସପୁରି ଗୋଟିଏ ।

ସେତେବେଳକୁ ଅମିତା ଓ ତାହାର ସ୍ୱାମୀ ଦୁଇ ସପ୍ତାହ ହେଲା ଦିଲ୍ଲୀ ଗଲେଣି । ଶାଶୁ ପୂର୍ଣ୍ଣପ୍ରଭା ଦେବୀ ଯୀଶୁ ବାବୁଙ୍କୁ କହିଲେ ଯେ ତାଙ୍କର କେହି ଗୃହକର ନାହାନ୍ତି । ଏସବୁ ଜିନିଷକୁ ବାଣ୍ଟିବାକୁ ଅସୁବିଧା । ଏଣେ ଝିଅ ଦିଲ୍ଲୀରେ । ଏହି କାରଣରୁ ଏସବୁ ବେଭାର କଟକକୁ ନ ପଠାଇ ବୋହୂ ପାଖକୁ ଟଙ୍କା ମନିଅର୍ଡ଼ର କଲେ ସୁବିଧା ହେବ ।

ସେତେବେଳେ ଯୀଶୁବାବୁ ବାନ୍ଦର ବସ ଉପରେ କହିବାକୁ ଆରମ୍ଭ କଲେଣି । ବସ୍‌ରେ ଭିଡ଼ ବହୁତ । ଫଳ ବ୍ୟାଗରେ କିଏ କ'ଣ ଲଦି ଦେବା ଯୋଗୁଁ ଅଧେ ଆମ୍ବ ଚକଟି ହୋଇଯାଇଛି ଓ ଆଣିଥିବା ପଚିଶଟା ପାନ ହଜିଗଲା । ଯୀଶୁବାବୁ ଯାଇ ମଙ୍ଗଳାବାଗରୁ ପାନ ଓ ଗୁଆ କିଣି ଆଣିବେ । ତରବରରେ ଗୁଆ ରହିଯାଇଛି ଭୁବନେଶ୍ୱରରେ ।

ପୂର୍ଣ୍ଣପ୍ରଭା ଦେବୀ କହିଥିଲେ ଯେ ମଙ୍ଗଳାବାଗରେ କେହି ପାନ ଖାଆନ୍ତି ନାହିଁ । ତେଣୁ ପାନଗୁଆ ନଷ୍ଟ ହୋଇଯିବ ।

ଏଇ ହେଉଛି ପ୍ରଥମ ଓ ଶେଷ ବେଭାର । ରଜସଂକ୍ରାନ୍ତି ଓ ଗହ୍ମା ପୂର୍ଣ୍ଣିମାକୁ ନଗଦ ଟଙ୍କା ବେଭାର ଦେଇଥିଲେ । ରଜକୁ ଅମିତା ଦିଲ୍ଲୀରେ । ଗହ୍ମାକୁ ଅମିତାର ଶେଷ ଯାତ୍ରା ଶହେ ଘଣ୍ଟା ବି ବାକି ନଥିଲା ତାହାହେଲେ କେଉଁ ବେଭାର ପାଇଁ କିଏ ବୋହୂ ଅମିତାକୁ ବା ବୋହୂର ଶାଶୁ ଦେବୀ ବାବୁଙ୍କୁ କେତେବେଳେ କ'ଣ କହିଥିବା ସମ୍ଭବ ?

ଦେବୀବାବୁ ଜଣେ ସମ୍ପାଦକ । ବେଶ୍ ଚତୁରତା ସହିତ ନିଜକୁ ପ୍ରକାଶ କରାଇ ଭଉଣୀ ଅମିତାର ମୃତ୍ୟୁ ବିଷୟରେ ସେ ବିଭିନ୍ନ ସତ୍ୟ ବିବରଣୀ ପ୍ରକାଶ କରାଇଛନ୍ତି । ସେଗୁଡ଼ିକ ହେଲା—

ଅମିତାର ମୃତ୍ୟୁ ୧୪।୮।୮୪

ସମାଜ (କଟକ) ୧୮।୮।୮୪ ପୃ ୭

ପ୍ରଗତିବାଦୀ (ଭୁବନେଶ୍ୱର) ୧୯।୮।୮୫ ପୃ ୪

ପ୍ରଜାତନ୍ତ୍ର (କଟକ) ୨୧।୮।୮୪ ପୃ ୮

ମାତୃଭୂମି କଟକ ୨୧।୮।୮୪ ପୃ ୪

ଦିନଲିପି (ଭୁବନେଶ୍ୱର) ୨୨।୮।୮୪ ପୃ ୩

Times of India (ଦିଲ୍ଲୀ) ୨୪।୮।୮୪ ପୃ ୪

ରାଷ୍ଟ୍ରଦୀପ (କଟକ) ୩।୯।୮୪ ପୃ ୧୦।୨।୪

ଏଜନ୍ ପୁଲିସ ଡ଼. ଆଇ. ଜି ୩।୯।୮୪ ପୃ ୧୦

* ଟିଭିକଲେ ଭୁବନେଶ୍ୱର ୪।୯।୮୪ ପୃ ୧

ଧରିତ୍ରୀ ଭୁବନେଶ୍ୱର ୧୯।୮।୮୪ ପୃ ୩

ଖବର କାଗଜ, ଭୁବନେଶ୍ୱର ୧୦।୯।୮୪ ସମ୍ପାଦକୀୟ

Telegraph (କଲିକତା) ୨୦।୯।୮୪ ପୃ ୭

ସତକଥା (ମାସିକ) କଟକ ୧।୧୦।୮୪

ସନ୍ଦେଶ (ମାସିକ) ୧।୧୦।୮୪

ସୂଚନା (ମାସିକ) ଭୁବନେଶ୍ୱର ୧।୧୦।୮୪

ଏହାଛଡ଼ା ଷ୍ଟେଟସମାନ, ସ୍ୱରାଜ୍ୟ ଆଦି ଅନେକ କାଗଜ ରହିଛି ।

ପ୍ରତ୍ୟେକରେ ନୂତନ ନୂତନ ବିଷୟର ଅବତାରଣା ହୋଇଛି । ତେଣୁ କରଣ ଝିଅକୁ ବିବାହ ଦେଉଥିବା ପ୍ରତ୍ୟେକ ପରିବାର ଏହି ସମସ୍ତ ସମ୍ବାଦ, ବିବରଣୀ, ସମୀକ୍ଷା ଓ ଆଭିମୁଖ୍ୟ ଜାଣିଥିବା ଆବଶ୍ୟକ । କାରଣ କରଣ ସମାଜ ବର୍ତ୍ତମାନ ଏଇ ଅମିତାର ମୃତ୍ୟୁ ଘଟଣାରେ ନୂତନ ଦିଗନ୍ତ ଦେଖାଇଛି ।

ଅମିତା ଦିଲ୍ଲୀ ଯିବା ଆଗରୁ ମୋର ଦୁଇଟି ଭଣଜାଙ୍କର ବାହାଘର ଠିକ୍ କା ହୋଇଥାଏ । ଦୁଇଟି ଯାକ ବୋହୂ ଏମ. ଏ. ପାସ କରିଛନ୍ତି ।

ସେ କଥା ଶୁଣି ବୋହୂ ଅମିତା ଉଚ୍ଛୁଳା କାନ୍ଦ କାନ୍ଦି ବସିଲି ବହୁତ ସମୟ । ତାହାର ଅଭିଯୋଗ ଯେ ଏମାନେ ଏମ. ଏ. କାହିଁକି ବାହା ହେଉଛନ୍ତି ?

ଆମର ବଳ କ'ଣ ? ତାଙ୍କ ଘରେ ତାଙ୍କ କଥା । ଆମେ ପଢ଼ି ବି. ଏ. ଓ ଏମ. ଏ. ପାସ କରିଯିବା । ତାଙ୍କର ଏମ. ଏ. ବୋହୂ ସାଙ୍ଗରେ ଆମର କ'ଣ ଅଛି ?

ଯୀଶୁ ବାବୁ ମଧ୍ୟ ସାବିତ୍ରୀ ଅମାବାସ୍ୟା ଦିନ ଏଇ ସମାଧାନରେ ସହମତ ହେଲେ । କିନ୍ତୁ ରହିଗଲା ଟିକିଏ ଗୁରୁତର ମିଛ ।

ଅମିତା ପିଲା ଦିନରୁ କିଛି ପଢ଼ି ନାହିଁ । କେମିତି କେମିତି ସେ ନାଲି ବା ଅସଲ ସାର୍ଟିଫିକେଟ ବଳରେ ଏଚ. ଏସ. ସି.କୁ କମ୍ପାର୍ଟ-ମେଣ୍ଟାଲରେ ଓ ଆଇ. ଏ. ପାସ କରିଛି ।

ତାହାର ପରୀକ୍ଷା ଫଳକୁ ନେଇ ଆଜି ଥରେ ଖୋଳ ତାଡ଼ କରାଇଲେ ଅମିତାର ମୁରବୀମାନେ ନିଜର କାର୍ଯ୍ୟପନ୍ଥା ଓ କର୍ମପ୍ରଣାଳୀ ବୁଝି ପାରିବେ ।

ଆଉ ମଧ୍ୟ ଜାଣିଯିବେ ଯେ ଏମିତି ଶିକ୍ଷାହୀନତା ଭିତରେ କୌଶଳକ୍ରମେ ସାର୍ଟିଫିକେଟ ଯୋଗାଡ଼ କରି ଝିଅକୁ ଦିଲ୍ଲୀ ସମାଜକୁ ପଠାଇ ଦେଲେ ସେ ବୋଧହୁଏ ଅପମାନର ଭାର ସହି ନ ପାରି ଆତ୍ମାହୂତି ଖୋଜିବ ।

ମୋର ସମ୍ମୁଖ ଅଣ୍ଡିର ସେକ୍ରେଟରୀ ସାହେବଙ୍କୁ ମୋର ଅନୁରୋଧ ଯେ ଥରେ ପଶ୍ଚାତ୍ ବିଚାରରେ ଅମିତାର ଫଳାଫଳର ସମୀକ୍ଷା କରା-ଗଲେ ସେ ଅମିତାର ମୃତ୍ୟୁ ପାଇଁ କିଏ ଦାୟୀ ବୁଝି ପାରିବେ ।

ଶ୍ରୀଯୁକ୍ତ ପ୍ରତାପଚନ୍ଦ୍ର ଦେବ, ଆଡଭୋକେଟ୍ (ସ୍ୱତନ୍ତ୍ରଦଳ) ଶ୍ରୀ ଭକ୍ତକିଶୋର ବଳ (ପ୍ରଗତିବାଦୀ) ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର (ପ୍ରଜାତନ୍ତ୍ର) ଶ୍ରୀ ବନବିହାରୀ ମହାନ୍ତି (ପ୍ରଜାତନ୍ତ୍ର) ଓ ଉତ୍କଳ ମହିଳା ସମିତିର କେତେକ ସଭ୍ୟା ମୋର ବୋହୂ ଅମିତାର ଇଂରାଜୀ ଜ୍ଞାନ ଏଚ. ଏସ. ସିର ପାସ ଅବସ୍ଥାରେ ମଧ୍ୟ ନ ଥିବାର ଦେଖିଛନ୍ତି । ମୋର ବୋହୂକୁ ଏହି ପ୍ରକାରର ଅବସ୍ଥାରେ ପକାଇବା ଅଣ୍ଡିରସେକ୍ରେଟେରୀଙ୍କର ବିଚାରର ଭ୍ରମ ।

କେନ୍ଦୁଝର ଉଆସର ଘୋଡ଼ା ଦଉଡ଼ ପଡ଼ିଆରେ ଥରେ କେନ୍ଦୁଝର ରାଜା ତାଙ୍କର ଜଣେ ଘୋଡ଼ା ଚଢ଼ା ଜାଣି ନ ଥିବା ବାଲ୍ୟ-ବନ୍ଧୁ ପାଣ୍ଡୀ ବାବୁଙ୍କୁ ଜବରଦସ୍ତି ବସାଇ ଘୋଡ଼ାକୁ ଛୁଟେଇ ଦେଲେ ।

ଘୋଡ଼ା ଧାଇଁଲା । ରାଜା ସାହେବ ହସି ହସି ବେଦମ୍ । ବନ୍ଧୁଙ୍କୁ ଘୋଡ଼ା ପକାଇ ଦେଲା । ବନ୍ଧୁଙ୍କର ଗୋଡ଼ ଦୁଇଟି ଭାଙ୍ଗି ଗଲା । ସେ ଚିରଦିନକୁ ଅଥର୍ବ ହୋଇଗଲେ ।

ସମସ୍ତେ ଆସି ରାଜା ସାହେବଙ୍କ ପାଖରେ ଗୁହାରିଆ ହେଲେ । ରାଜା ତାଙ୍କର ବନ୍ଧୁଙ୍କର ଜୀବନ ସାରା ଖାଦ୍ୟ ବସ୍ତ୍ର ବ୍ୟବସ୍ଥା କରିଦେଲେ । ସେଇ ରାଜାଙ୍କର ବନ୍ଧୁ ପାଣ୍ଡିବାବୁ ନିର୍ଦ୍ଦୋଷରେ ହୋଇଗଲେ ପଙ୍ଗୁ । ଆଉ ପଙ୍ଗୁ ହେବାର ଅଳ୍ପ ଦିନରେ ରାଜାଙ୍କର ରାଜ୍ୟ ଚାଲିଗଲା । ତେଣିକି ବନ୍ଧୁ ହୋଇଗଲେ ନିରମାଖି ।

ଦୈବ ଚକ୍ର ବୁଲୁଛି । କେତେ ବର୍ଷ ପରେ ମଦ ନିଶାରେ ପାହାଚ ଝୁଣ୍ଟି ରାଜା ସାହେବ ହୋଇଗଲେ ଲେଙ୍ଗଡା । ଚିକିତ୍ସା ପାଇଁ ମଧ୍ୟ ପଇସା ମିଳିଲା ନାହିଁ । ପ୍ରିଭି ପର୍ସକୁ ଖାଇଯିବାକୁ ଚାରିଆଡ଼େ ଅସଂଖ୍ୟ ମାରାତ୍ମକ ଲୋକ ଭିଡ଼ କରିଥାନ୍ତି । ଲେଙ୍ଗଡାର ଲେଙ୍ଗଡା ଗୋଡ଼ କଥା ବୁଝିବ କିଏ ?

ମୋର ସମ୍ବନ୍ଧି ବ୍ରଜବାବୁ ଝିଅଟିକୁ ଏପରି ଶିକ୍ଷା ଦେଇଦେଲେ ଯେ ବିମ୍ବିଶ ଦିଲ୍ଲୀରେ ସାଧାରଣ ଇଂରାଜୀ ଓ ସାଧାରଣ ହିନ୍ଦୀ ବୁଝି ପାରିଲା ନାହିଁ । କହିବାର ପ୍ରଶ୍ନ ଆସିବ କୁଆଡୁ ?

ସେଥିରେ ପୁରୁଣା ଭୁଲକୁ ନ ଧରି ସାମାନ୍ୟରେ ଚଳନ ସହି ହିନ୍ଦୀ ଓ ଇଂରାଜୀ ବ୍ୟବସ୍ଥା କଲାବେଳକୁ ଶାଶୁ ପୂର୍ଣ୍ଣପ୍ରଭା ଦେବୀ ହୋଇ-ଗଲେ ରାକ୍ଷସୀ ଓ ଅମିତାର ହତ୍ୟାକାରୀ ।

ଏହି ଅଭିଯୋଗ କରିପାରିଲେ ମୋର ସମ୍ବନ୍ଧି ବ୍ରଜବଲ୍ଲଭ ବାବୁଙ୍କର ପରିବାର । ଆଉ ସେତକ ମଧ୍ୟ ସାରା ଓଡ଼ିଶା ଓ ସାରା ଭାରତରେ ବିଛେଇ ଦେଇ ନିଜର ଜାଣିବାନା ଉଡ଼ାଇଛନ୍ତି । ଏହିପରି ଲୋକଙ୍କୁ ସମାଜ ବିରୋଧୀ କୁହାଯାଇ ପାରିବ କି ? ନା, କାରଣ ସମାଜରେ ନୁହେଁ ।

ଏଣେ ବୋହୂ ଅମିତାର ଦିଲ୍ଲୀରେ କାନ୍ଦ ଉଚ୍ଛାଳ । ତାକୁ ନିଆ ହେଉ ନାହିଁ ଶାଶୁ ପୂର୍ଣ୍ଣପ୍ରଭା ଦେବୀଙ୍କର ପୁତୁରାବୋହୂ ଘରକୁ । ସେ ମଧ୍ୟ ଦିଲ୍ଲୀରେ ଓ ଜଣେ ଇଞ୍ଜିନିୟର ।

ମୋର ସାନ ଭାଇ ସାର ବାବୁଙ୍କର ପୁଅ ଗୌତମ ବାବୁ ତାଙ୍କର ବର୍ଷେ ତଳେ ହୋଇଥିବା ବାହାଘରେ ଯେଉଁ ନଗଦ ପୁରସ୍କାର ପାଇଥିଲେ ତାହାର ମୂଲ୍ୟ ସମ୍ଭବତ ଭଉଣୀ ପୁଣ୍ୟପ୍ରଭା ଦେବୀଙ୍କର ପୁଅ ଶୁଭେନ୍ଦୁ ବାବୁଙ୍କର ବୋହୂର ଚହଣା ତୁଳନାରୁ କମ ନୁହେଁ, ଅନ୍ୟମାନେ କହିବେ ।

ଗୌତମ ବାବୁଙ୍କର ସ୍ତ୍ରୀ ଇଂରେଜୀ ସ୍କୁଲରୁ ଆସିଥିଲେ, ଇଂରାଜୀ ଅଧ୍ୟାପନାରେ ଥିଲେ । ଚାକିରିରୁ ଇସ୍ତଫା ଦେଇ ଚାଲିଗଲେ ।

ଗୌତମ ବାବୁ ଓ ଶୁଭେନ୍ଦୁ ବାବୁ ସମସାମୟିକ ଓ ସେମାନଙ୍କର ବାପ ମାଆଙ୍କର ବିବାହ ଏକା ସପ୍ତାହରେ । ଏଣେ ମୋର ଭଣଜା ବୋହୂ ଅମିତା ମୁଁ ଯାଇଥିଲିକୁ କହୁଛି ଆଇ ଗୋଏଡ୍ ଅବା ଆଇ ଓ୍ୱାନ୍ ଓ୍ୱେଣ୍ଟିଙ୍ଗ୍ ।

ଏହାକୁ ସୁଧାରିବାକୁ ଯାଇ ପୁଣ୍ୟପ୍ରଭା ଦେବୀ ପହଞ୍ଚି ଗଲେଣି ଜେଲ ସାମନାରେ । ଏମିତି ହୁଏ ଭାଗ୍ୟର ଅଙ୍କା ପହଲୀ । ଯେବେ ହେଉଛି ଆମର ସ୍କୁଲ, କଲେଜ, ପରୀକ୍ଷା ଓ ହାକିମଙ୍କର ହାକିମାତି ।

ଏଥିରେ ଦୋଷ ରହିଛି ପୁଣ୍ୟପ୍ରଭା ଦେବୀଙ୍କର । ଓଲମି ଲୋକ ନିଜକୁ ଭାରି ବୁଦ୍ଧିଆ ଭାବିଲେ ଏମିତି ଅଡୁଆ ବାହାରେ ।

କଟକର ଜଣେ କରଣ ଏସ. ଡ଼. ଓ ତାଙ୍କର ବୋହୂ ବାଛିଲା ବେଳେ ଟ୍ରାନ୍ସଲେସନ, ଗ୍ରାମାର, ସ୍ପିକିଙ୍ଗ, ରାଇଟିଂର ପରୀକ୍ଷା ନେଇ ସାର ଧାଁ ଦଉଡ଼ ମଧ୍ୟ ଚେଷ୍ଟା କରିଥିଲେ ।

ସେତେବେଳେ କଟକରେ ଅନେକ ଲୋକ କହିଲେ—ସେ ପାଗଳ । ଏମିତି କ'ଣ ବୋହୂ ବାଛନ୍ତି ? ବ୍ରିଟିସ ସରକାର ବେଳର ଏସ୍. ଡ଼. ଓ. । ପେନସନ ନେଇଗଲେ । କିନ୍ତୁ ଦକ୍ଷତା ଥିଲା ଏବେ ଥିବା ଆଇ. ଏ. ଏସ.ଙ୍କଠାରୁ ଅଧିକ ।

ସେଇ ବୋହୂଟି ଘର ସମ୍ଭାଳି ନେଇଛନ୍ତି ଓ ଯେ କୌଣସି ପରିସ୍ଥିତିକୁ ସମର୍ଥ ।

ପୁଣ୍ୟପ୍ରଭା ଦେବୀ ନିଜେ ପୂର୍ବ ଗୃହକର୍ମ ନେଇଗଲେ । ଶାଶୁ ଚଳେଇବ ବୋହୂକୁ । ତେଣୁ ଶଶୁରଙ୍କର କିଛି କହିବାର ନାହିଁ ।

ସ୍ତ୍ରୀଙ୍କର ଓଲପଣ ଦେଖି ଅମିତାଙ୍କର ମା 'ମାଉଷୀ ଦେଖି ଯାଇ ପୂଣ୍ୟପ୍ରଭା ଦେବୀଙ୍କୁ ଓ ତାଙ୍କର ଝିଅ ନନ୍ଦମା ଦେବୀଙ୍କୁ ଏପରି ଭାଷାରେ ପ୍ରଶଂସା ଓ ତାରିଫ୍ କଲେ ଯେ ଏମାନେ ଏମ. ଏ. ଝିଅ ଗୁଡ଼ କମ୍ପାର୍ଟମେଣ୍ଟାଲ ଆଇ. ଏ. ଧରିନେଲେ ।

ସେଇଠୁ ସମୁଧି ବ୍ରଜବଲ୍ଲଭ ବାବୁଙ୍କ ସମୁଦୁଣୀ ସାହାଯ୍ୟ କଲେ । ତାଙ୍କର ବଡ଼ ଜୋଇଁ ଆମେରିକା ଗିବେ । ତାଙ୍କୁ ବ୍ରଜବାବୁ ଦଶହଜାର ଟଙ୍କା ସାହାଯ୍ୟ କଲେ । ଜୋଇଁ ଚନ୍ଦ୍ର ବାବୁ ଓ ଝିଅ ଆମେରିକା ଯାଇ ପାରିଲେ ।

ଏବେ ବ୍ରଜବାବୁ ଟଙ୍କା ଅଭାବରୁ ବ୍ରଞ୍ଜ ଚୁଡ଼ି ଓ ଲୁଗା ବଦଳରେ ରଖିଥିବା ଷ୍ଟେନଲେସ ବାସନ ଆଦି ଦେଇ ଗୁରିମାସ ପରେ ଅଭିଯୋଗ କରୁଛନ୍ତି ଯେ ଝିଅର ନଣନ୍ଦ ଡାଓରୀ ଡେଥ୍ ।

ଆଉ ଝିଅ ଅମିତାକୁ କୋଡ଼ିଏ ଦିନ ମଧ୍ୟରେ ଅତ୍ୟାଚାର କରି କରି ମନକୁ ଦୋହଲାଇ ଦୋହଲାଇ ନିଜର ପରସ୍ପରୁଷ ପ୍ରୀତି ଢାଙ୍କି-ବାକୁ ନିଆଁରେ ପୋଡ଼ି ଦେଇଛନ୍ତି । ଶାଶୁ ଓ ନଣନ୍ଦଙ୍କୁ ଜେଲ୍ ଦେବା ଦରକାର ।

ପୂଣ୍ୟପ୍ରଭା ଦେବୀ ଜଣେ ଓଲୁ କିସମର । ସେ ଏକା ନୁହନ୍ତି । ତାଙ୍କର ବାପଘରର ପ୍ରାୟ ସମସ୍ତେ ଓଲୁ । ତେଣୁ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ରହିପାରେ ନାହିଁ ।

ଆଉ ଓଲମି ସାଙ୍ଗରେ ଆଉ ଗୋଟିଏ ସାଧାରଣ ଗୁଣ ମିଶିଥାଏ—ପ୍ରତ୍ୟେକ ଓଲା ଓ ଓଲି ଭାବେ ଯେ ସେ ଭାରି ବୁଦ୍ଧିଆ ।

ତେଣୁ ତନ୍ତ୍ରୀ ମହାଶୟ ନିଜକୁ ବୁଦ୍ଧିଆ ଭାବି ଗଛ ଉପରେ ଚଢ଼ି ଡାଳର ମୂଳକୁ ଛେଦିଲା ପରି ଏହି ପରିବାରଟି କେବଳ ବାକ୍ୟ ଦ୍ୱାରା ତାଙ୍କର ଠିଆ ହୋଇଥିବା ଡାଳ ଓ ଗଛକୁ କାଟିବାରେ ଲାଗିଯାନ୍ତି । ଏଥିରେ ବହୁତ ସମୟ କଟେ । ଆଉ ପ୍ରତ୍ୟେକ ନିଜକୁ ଅସଲ କର୍ମଯୋଗୀ ଓ ଜ୍ଞାନଯୋଗୀ ବୋଲି ଭାବନ୍ତି ।

ଏତିକିରେ ଶେଷ । ଜ୍ଞାନଯୋଗୀ ଭକ୍ତିଯୋଗୀ ହୁଏ ନାହିଁ । ଏମାନଙ୍କର ସିଦ୍ଧି ଆସିଛି । ପ୍ରାପ୍ତ ସମସ୍ତେ ତଦାତ୍ମୀପୂଜା ଅର୍ଥାତ୍ ମୁଁ ଯାହା, ସେମାନେ ମଧ୍ୟ ସେଇଆ—ଭଲ କରି ଆୟତ୍ତ କରିଛନ୍ତି ।

ଏବେ ବୋହୂ ମାମି ଓରଫ ଅମିତା ଓରଫ ଅମୃତା ମଲନାହିଁ ଯେ ମୃଗପୂର ଧର୍ମଶାସ୍ତ୍ରକୁ ଅକାମି କରି ଦେଇଗଲା । କାରଣ ତଦ୍-ଆତ୍ମିପୂଜା ତିଆରି କରିଦେଲା ଦଳେ ହତ୍ୟାକାରୀ ।—ଯିଏ ଜାଣି ଜାଣି ମିଛରେ ହତ୍ୟାର ଅଭିଯୋଗ ପ୍ରଚାର କରାଇ ପାରନ୍ତି ।

ଏଣେ ମୋର ଭଣଜାବୋହୂ ବାପ ଘରେ ହସ ଖେଳି ପଡ଼ୁଥାଏ । ଏକା ଥରକେ ଝିଅର ଦୋଷକୁ ଢାଙ୍କି ଦେଇ ସୁନାରେ ଗୁଳିବା ଭଳି ଗୋଟିଏ ଘରକୁ ପଠାଇ ଦେଇ ପାରିଲୁ ।

ଅମିତାର କଟକ ସନସାଇନ ପଡ଼ିଆ ମାଉସୀ କହୁଥିଲେ—ଦେଖିବ ମାମୀ ତୁମ ଘରକୁ ଗଲେ ଘର ହସି ଉଠିବ । ପୁରୀର ମାଉସୀ ସେଇକଥା କହୁଥିଲେ । ପୂଣ୍ୟପ୍ରଭା ଦେବୀ ନିଶ୍ଚିନ୍ତ ହୋଇଗଲେ ଯେ ସେ ତାଙ୍କର ପରିଚିତ ସମାଜକୁ ଚମକାଇ ଦେବେ ।

ଘଟଣା ସ୍ରୋତରେ ସୂର୍ଯ୍ୟଙ୍କର ଗତି ଦକ୍ଷିଣ ପଥରୁ ବାହାରି ଉତ୍ତର ପଥରେ ପହଞ୍ଚି ଫେରିବା ଆଗରୁ କରଣ ସମାଜ ଚମକପ୍ରଦ ଲୋମହର୍ଷଣୀ କାହାଣୀଟିଏ ପାଇଗଲା । ଶାଶୂ ପନ୍ଦର କୋଡ଼ିଏ ଦିନ ଭିତରେ ଖାଲି ଅତ୍ୟାଚାର ବଳରେ ବୋହୂକୁ ମାରି ଦେଇଛି ।

ସମସ୍ତେ ବିଶ୍ୱାସ ଗଲେ ।

ଓଡ଼ିଆ କୁଳପତି ଡକ୍ଟର ସଦାଶିବ ମିଶ୍ର କହିଲେ—ତୁମେ ଜାଣ ନାହିଁ ସେମାନଙ୍କୁ । ମୁଁ ଜାଣେ । ସେମାନେ ମା ଓ ଝିଅ ମିଶି ମଡ଼ର କରିଛନ୍ତି ।

ଓଡ଼ିଆ ଜଜ ଶ୍ରୀ ବିଜୟ କିଶୋର ରାୟ କହିଲେ—ତୁମେ ଜାଣ ନାହିଁ ସେମାନଙ୍କୁ । ସେମାନେ ମୋର ଝିଅର ବନ୍ଧୁଙ୍କର ବନ୍ଧୁ । ମା ଓ ଝିଅ ମିଶି ମଡର କରିଛନ୍ତି । ···ପୁଲିସ କ'ଣ ତଦନ୍ତ କରୁଛି ? ମୁଁ ହୋଇଥିଲେ ଆଠ ଦିନରେ ହାଜତରେ ପୂରେଇ ଦେଇଥାନ୍ତି ।

*

ଓଡ଼ିଆ ସମ୍ପାଦକ ଶ୍ରୀ ଦେବେନ୍ଦ୍ର ନାଥ ମହାନ୍ତି କହିଲେ—ତୁମେମାନେ ଜାଣ ନାହିଁ । ମୋର ଝିଅ ଓ ମାମିର ବଡ଼ ଭଉଣୀ ଏକାଠି ଆମେରିକା ଗଲେ । ସେମାନେ ଭିତର କଥା ସବୁ ଲେଖି ମତେ ଜଣାଇଛନ୍ତି । ମୁଁ ଜାଣେ ମା ଓ ଝିଅ ମିଶି ବୋହୂଟିକୁ ମାରି ଦେଇଛନ୍ତି । ପୁଲିସ ତାହାର ଅନ୍ତର କରୁଛି । ମୋ' ପାଖରେ ତଥ୍ୟ ଅଛି ।

ଓଡ଼ିଆ ଅଫିସର ଶ୍ରୀ ଧର୍ମାନନ୍ଦ ସ୍ୱାଇଁ ରେଭିନ୍ୟୁ ବୋର୍ଡ଼ ଅଫିସର କହିଲେ—ପୁଅଟା ସାଆ ବୋଲି । ମା ଓ ଝିଅ ମିଶି ମଡ଼ର କରିଦେଇଛନ୍ତି ବୋଲି ଖବର କାଗଜ ଲେଖୁଛି । ପୁଅ ତ ବାଧା ଦେଲା ନାହିଁ ।

ଓଡ଼ିଆ ସାମ୍ବାଦିକମାନେ ଏକମତ ହୋଇଗଲେ ଯେ ଏଇଟା ଗୋଟିଏ ମଡ଼ର ।

ନିଜର ବନ୍ଧୁ ବାନ୍ଧବ ମଧ୍ୟ ବାରଅଣା ସ୍ଥିର ନିଶ୍ଚିତ ହୋଇଗଲେ ଯେ ମଡ଼ର ନ ହେଲେ କେହି ଆପେ ଆପେ ପୋଡ଼ି ହୁଏ ନାହିଁ । ଆଧୁନିକ ସମାଜରେ ହତ୍ୟାକୁ ଆତ୍ମହତ୍ୟାର ରୂପ ଦେବାକୁ ଏହିପରି ସକ୍ରେଟିସଙ୍କୁ ବିଷ ଦିଆଗଲା ପରି । ରାଜପୁତ ଜଉଆସରେ ବୋହୂ ଓ ଝିଅମାନଙ୍କୁ ବିଷ ଦିଆଗଲା ପରି ଏଠି କଟକ ମଙ୍ଗଳାବାଗର ତଥାକଥିତ ପାଠୁଆ ଲୋକେ ଖଣ୍ଡୁରିଆ ଅମିତାକୁ ପୋଡ଼ି ହୋଇ ମରିବାକୁ ବାଧ କରିଛନ୍ତି । ଆଉ ସେ ପୋଡ଼ି ହୋଇଗଲା ପରେ ଏମାନେ ଲୁଚି ଉଡ଼ାଜାହାଜରେ ଭୁବନେଶ୍ୱରରୁ କଲିକତା ଓ ଦିଲ୍ଲୀ ହୋଇ ବିଲାତକୁ ଚାଲିଗଲେଣି ।

କଟକ ମଙ୍ଗଳାବାଗରୁ କଟକର ପୁରୀଘାଟ ବାପ ଘର । ସେଇଠୁ ସିଧା ଅଲେନ ପାର୍କ ଓ ବିଲାତ ଯାତ୍ରୀ ।

ଖବର କାଗଜ ହେଉଛି ସତ । ସେଇଟା ସତ କଥାର ପୁଲିସ । ଯାହା ଖବର କାଗଜରେ ବାହାରି ନାହିଁ—ତାକୁ ମିଛ କଥା ବୋଲି ଧରାଯାଏ ।

ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଦେବ ଦେଢ଼ ଶହ ବର୍ଷ ତଳେ କଲିକତା ଲୋକଙ୍କୁ ଏଇ ଖବର କାଗଜ ବିଷୟରେ କହିଥିଲେ । ଗୋଟିଏ

ପୁରୁଣା ଘର ଭାଙ୍ଗି ପଡ଼ିଥିବା କଥା ପରମହଂସ କହିବାରେ ପାଠୁଆ ବଙ୍ଗାଳିବାବୁ ଆପତ୍ତି କଲେ—ଏଇଟା ଗୁଜବ୍ । ଖବର କାଗଜରେ ବାହାରି ନାହିଁ ତ ।

ଘରଟାକୁ ଦେଖାଇ ଦେଇ ପରମହଂସ କହିଲେ—ଖବର କାଗଜକୁ ନିଜର ମନ ଠାରୁ ବଡ଼ ବୋଲି ଭାବିବା ହେଉଛି ପାପ ।

କାହିଁ ଓଡ଼ିଶା—କାହିଁ ବଙ୍ଗଳା ।

କେଉଁଠି ଶ୍ରୀ ରାମକୃଷ୍ଣ—କେଉଁଠି ଅବା ଶ୍ରୀ ବାଘୁଆ ବାବା । ମଝିରେ ରହିଗଲା ଗୋଟିଏ ଶତାବ୍ଦୀରୁ ବେଶି ।

ଓଡ଼ିଆ ବାବାଙ୍କ ବିରୁଦ୍ଧରେ ଅଭିଯୋଗ ଉଠିଲା ଯେ ତାଙ୍କର ଚରିତ୍ର ଖରାପ । ତାଙ୍କର ଝିଅ ବୋହୂଙ୍କ ପ୍ରତି ଦୃଷ୍ଟି ଖରାପ । ସେ ଝିଅ-ମାନଙ୍କର ଗୋଡ଼ ଘସେଇ ଦେଇ ନିଜକୁ ସାଧୁ ବାବା ବୋଲାଉଛନ୍ତି ।

ଠିକ୍ ଅମିତା ମରଣର ମରଣୋତ୍ତର ପ୍ରଚୁର ପର ଗୋଡ଼ଘସା ଝିଅର ଘଟଣା ପରବର୍ତ୍ତୀ ପ୍ରଚୁର ଆଜକୁ ତିନ ଦଶନ୍ଧି ତଳେ ଶ୍ରୀକ୍ଷେତ୍ରକୁ କମ୍ପାଇ ଦେଲା । ଏଇ ଆନ୍ଦୋଳନ ଏତେ ବେଶି ହେଲା ଯେ ନିଜେ ବାବା ଚାଲିଗଲେ ବୃନ୍ଦାବନ ।

ସେଠି ବାବା ରହିଲେ । ବାବାଙ୍କର ଶିଷ୍ୟ ରହିଲେ । ଝିଅ ରହିଲା । ସମସ୍ତେ ଯାଇଛନ୍ତି ପାତକ ନାଶ କରିବାକୁ ।

ସ୍ୱପ୍ନ ନା ସତ—ଏହାର ବିବରଣୀ ଦେବାକୁ କଟକ ଓ ପୁରୀ ଜିଲ୍ଲାରେ ଅନେକ କଳିଷଠା ଲୋକ ଅଛନ୍ତି । ସେମାନେ କହନ୍ତି ଯେ କରଣମାନେ ଯେଉଁଠି ବାବାଜୀ ବା ସାଧକ ଦେଖି ପକାଇବେ ଆଗ ପହିଞ୍ଚ ତବାମ୍ପିଯୂତା ଆରମ୍ଭ କରିଦେବେ । ···ସେଇଠୁ ଦେବେ ଦୋଷ ।

କ୍ରୋଧ ହେଲେ ମଣିଷ ଯେ କୌଣସି ଉପାୟରେ ଦୋଷକୁ ଲଦି ଦେଇପାରେ ।

ଦୋଷ ହେଉଛି କର୍ମର ମୂଳ—କର୍ମର ଚେର । ଦୋଷ ନ ଥିଲେ କର୍ମ ନାହିଁ । କର୍ମ ନ ଥିଲେ ଅପଯଶ ନାହିଁ । ଅପଯଶ ନ ହେଲେ

ଯୋଗ ସାଧନା କ'ଣ ଦରକାର ? ଅଳ୍ପ ଜ୍ଞାନ ମିଥ୍ୟା ପ୍ରତ୍ୟୟକୁ ଧ୍ରୁବ ସତ୍ୟ ବୋଲି ଧରିବ ।

ସେଇ ପୁଅ ସଦର ଥାନା ଭିତର କରଣ ପରିବାରରେ ବାବାଙ୍କୁ ନେଇ ଭଗ ଭଗ ହୋଇଗଲା । ପରସ୍ପର ସମ୍ବନ୍ଧ ତୁଟିଗଲା । ବାବା ନିଜର ଦୋଷ ଅଛି କି ନାହିଁ—କହିବାର ସୁବିଧା ପାଇଲେ ନାହିଁ । କିଏ ବା ତାଙ୍କ କଥା ଶୁଣିବ ?

ମୁରବୀମାନେ ଦୋଷ ଦେଉଛନ୍ତି ।

ଅମିତା ବଞ୍ଚି ନାହିଁ ଯେ କଥା କହିପାରିବ । ତାହାର ଅପମୃତ୍ୟୁର କାରଣ ଅନ୍ୟକୁ ଦେଖାଇ ପାରିବ ।

ଅମିତାର ମୁରବୀମାନେ ଦୋଷ ଦେବାରେ ଲାଗିଛନ୍ତି । ତେଣୁ ଦୋଷ ସାବ୍ୟସ୍ତ ହେଉଛି ।

ତେବେ ପ୍ରଶ୍ନ ଉଠେ ଯେ ଝିଅର ବାହାଘର ପରେ ତାହାର ମୁରବୀ କିଏ—ନିଜର ବାପା ଭାଇ ନା ତାହାର ସ୍ୱାମୀର ପରିବାର ?

ଗୋଟିଏ ଝିଅ ଚଉତିରିଶି ବର୍ଷ ଅଟରେ ବାହା ହବା ଆଗରୁ ପ୍ରମାଣ କରି ଦେଇଥିଲା ଯେ ତାହାର ମୁରବୀ ହେଉଛନ୍ତି ବାପା, ଦାଦି ଇତ୍ୟାଦି ।

ତାଙ୍କର ଝିଅ ବାହା ହବା ପରେ ପୁଣି ଥରେ ପ୍ରମାଣ କରି ଦେଇଥିଲା ଯେ ତାହାର ମୁରବୀ ହେଉଛନ୍ତି ବାପା, ଦାଦି, ଭାଇ ଇତ୍ୟାଦି ।

ତେଣୁ ଉତ୍କଳ ଖଣ୍ଡରେ ମାଆ ରାଜ୍ୟ ଆଗେଇ ଆସିଲାଣି । ବାପା ରାଜ୍ୟ ବୁଡ଼ିବା ଉପରେ । ବଙ୍ଗଳା, ଆନ୍ଧ୍ରପ୍ରଦେଶ, ବିହାର ଇତ୍ୟାଦି ରାଜ୍ୟରେ ଏହାର ସମାନ ନଜିର ମିଳିବା କଷ୍ଟକର । ସେଠି ସମସ୍ତେ ବୁଝନ୍ତି ଯେ ଝିଅ ବିଭା ହେବା ପରେ ଶଶୁର ଘରର ହୋଇଯାଏ । ଏଠି ବୁଝନ୍ତି ଯେ ଝିଅ ହେଉଛି ଗୋଟିଏ ଥୋପ—ବରଟିଏ ଧରି ତାକୁ ଦୁହିଁବା ପାଇଁ । ତାହାର ପରିବାରକୁ ସର୍ବସ୍ୱାନ୍ତ କରିବା ପାଇଁ ।

ସମାଜ ୧୪।୧୦।୮୪ ପୃ ୪ କଲମ ୭

Matches for Woman Lecturer (26) and Doctor (23) from enlightened Karan Family, No bars. (ବୋଧହୁଏ ଯୌତୁକ ନାହିଁ କନ୍ୟା ଧୂଆ ଅଧଆ କରଣ ଭେଦାଭେଦ ନାହିଁ), Write with details to Post Box 320 Samaj.

ସମାଜ ୧।୧୧।୮୪

Matrimonial

Wanted a fair attractive bride for Bengali Kayastha (govt) Lecturer Rs 2000 - P. M. 32 years/168 cms. Write Post Box No. 39. Samaj.

ସମାଜ ୨୭।୧୦।୮୪

Marriage

Without dowery for Celebration at Mangalabag, Cuttack City in January, 1985 according to Hindu rites and Hindu Marriage Registration for the second marriage of my nephew, a Delhi—based Electrical Engineer of austere habits and for final choice through proper channel from Oriya / Bengali / Hindi / Telugu speaking Oriya or domiciled in Oriya or out-of Orissa girls aged 23-25 with Cosmopolitan and moral background and reliance on horoscope. Girl should agree to stay at Cuttack for atleast twelve weeks a year

R. K PATNAIK
Cuttack—9

ଏଭ ତକୋଟି ସମକାଳୀନ ସ୍ବାଦ କୋଟିସରୁ ସମକାଳୀନ କରଣ ସମାଜ କଥା ଭଲ ବୁଝି ହୁଏ । କିନ୍ତୁ ଏହି ବିଜ୍ଞାପନମାନ

ନୂଆ ନୁହେଁ । ଏଥିରୁ ମଧ୍ୟ ଅନେକ ମନେ ରଖିବା ପରି ସମସ୍ୟା ବାହାରୁଛି ।

ଗୋଟିଏ ଡାକ୍ତରଣୀ ବୋହୂଙ୍କର ଡାକ୍ତରଣୀ ମାଆ ଆସି ବାହାଘରର ଶୁଭଦିନରେ ତାଙ୍କର ସମୁଦୁଣୀଙ୍କୁ ହସି କହିଲେ—ମୁଁ ତୁମକୁ ଅପା ବୋଲି ଡାକିବା କଥା ।

—କାହିଁକି ?

—ତମେ ପରା ବଡ଼ ?

—କେମିତି ? ତୁମର ବାହାଘରବେଳେ ତୁମେ ଡାକ୍ତରଣୀ ହେଇ ସାରିଥିଲ । ଝିଅ ଡାକ୍ତରଣୀ ହେବା ପରେ ବାହା ହେଲ । ତେବେ ତୁମେ କ'ଣ ଚଉଦ ପନ୍ଦର ବର୍ଷ ବୟସରେ କଟକ ମେଡ଼ିକାଲ କଲେଜରୁ ଡାକ୍ତର ହେଇଥିଲ ? ...ହଁ, ହେଇଥିବ । ନ ହେଲେ ତୁମେ ଏତେ ବୁଦ୍ଧି କେମିତି ପାଆନ୍ତ ?

କଥା ବନ୍ଦ ହେଇଗଲା । ଉଚ୍ଚ ଶିକ୍ଷିତ ଓ ଉଚ୍ଚ ପଦସ୍ଥ ଡାକ୍ତରଣୀ ବସିଗଲେ ଏଇ ମଫସଲିଆମାନଙ୍କର ବହୁତରବୁଦ୍ଧି ଦେଖି ।

ତଥାପି ସମୁଦୁଣୀ ତ । କିଏ ପାଗଳୀ ଅବା କିଏ ଓଲି ? କଥାଟାକୁ ଥଟ୍ଟାରେ ଧରିଗଲା ଗୋଟାଏ କୌତୁକିଆ କଥା ବୋଲି । କିନ୍ତୁ ଜଣାଗଲା ଯେ ଏଇ ରାଜ୍ୟ ଘରେ ଡାକ୍ତରଆଁ ଙ୍କର ଡାକ୍ତରଆଣୀ ଝିଅ ଚଳି ପାରିବ ନାହିଁ ।

ଏହି ଘଟଣା ତୁଳନାରେ ମୋର ସମୁଧି ଓ ତାଙ୍କର କଟକ ସହରୁ ନଷ୍ଟସୂଚ୍ଚ ହେବତା । କାରଣ ସେମାନେ ଶହେ ପନ୍ଦର ଦିନ ଧୈର୍ଯ୍ୟ ଧରି ରହିଲେ ଭେଦୁଆ ସାର୍ଟିଫିକେଟ୍ ଦେବା ଆଗରୁ । କିନ୍ତୁ ଡାକ୍ତର ନ ହୋଇ ଓକିଲ ହୋଇଥିବାରୁ କୋର୍ଟ କଚେରୀ ପ୍ରମାଣ ପାଇଁ ଶାଢ଼ି ଖୋଜିବାରେ ଲଗିଗଲେ—ଶହେ ପନ୍ଦର ଦିନକୁ ଏକଷଠୀ ଖଣ୍ଡ ଶାଢ଼ି ।

ଏତେ ଶାଢ଼ି କ'ଣ ବୋଲି ପୁଲିସ, ଦେଖଣାହାରୀ, ଖବର କାଗଜବାଲା ପଚାରିବାରୁ ସେମାନେ ଛଉକା ପଡ଼ି କହିଲେଣି—କଟକ ମଙ୍ଗଳାବାଗ ଘର ଗୋଟାଏ ବନ୍ଦୀଶାଳା । ମାମୀ ପରି ଝିଅ ଶାଢ଼ି

ଲେଖିବ କେମିତି ? ଦିଲ୍ଲୀ ସହରରେ ଓଡ଼ିଆ ଭୁଆସୁଣୀ କୁଆଡ଼ୁ ଚିଠି ଦେଇ ପାରିବ ? କିଏ ତାକୁ ଚିଠି କାଗଜ ଦବ ଓ କିଏ ସାହାଯ୍ୟ କରିବ ?

ତେଣୁ ଚିଠି ସଂଖ୍ୟା ଏବେ ଶୂନ୍ୟ ବୃତ୍ତ ଖଣ୍ଡରେ ଆସି ରହିଛି । ବିଚରା ସମୁଧି ମତେ ହେଲେ କହିଥାନ୍ତି ମୁଁ ଯୋଗାଡ଼ କରି ଅନେକ କାରବାରି ଚିଠି ତାଙ୍କୁ ଦିଆଇ ଦେଇଥାନ୍ତି । ତାକୁ ମଡ଼େଲ କରି ସେ ଅନ୍ୟ ବାହାଘରେ ନହିଲ ଗୋଲ କରିଥାନ୍ତି ।

କରଣମାନେ ସର୍ବକୁଳର । କେତୋଟି ନାଗମ ଗୋତ୍ର ଅଛନ୍ତି । କିନ୍ତୁ ଅଧିକାଂଶ ଋଷି ଗୋତ୍ରର ଲୋକ । ତାଙ୍କ ଭିତରେ ପରସ୍ପର ସମ୍ବନ୍ଧ ଚରସ୍ପର ବିଦ୍ୱେଷୀ ସର୍ବ ସମାଜର ନିୟମରେ ବନ୍ଧା ।

କରଣ ଡାକ୍ତରଆଣୀ ବୋହୂ ମଧ୍ୟ ଖୁବ୍ ବୁଦ୍ଧିମନ୍ତ । ନହେଲେ ସେ ଏତେ କଷ୍ଟକର ଡାକ୍ତରୀ ପାଠ ପଢ଼ିଥାନ୍ତେ କେମିତି ? ମୋର ବୋହୂ ବି. ଏ. ଟଙ୍କାରେ ଖତମ୍ । ସେ ତ ମୋଟେ ଆଡ଼ମିସନ ପାଇ ପାରି ନ ଥାନ୍ତା ।

ଡାକ୍ତରଆଣୀ ବୋହୂ ତାହାର ଶାଶୁଙ୍କରେ ବ୍ୟସ୍ତ ହେଇ ଉଠିଲା—ଆଟେ ମାଇକିନିଆ । ସେ ସମସ୍ତଙ୍କୁ କ'ଣ ବୁଲି ବୁଲି ମାନ-ଥାନ କରୁଥିବ ? ମେଡ଼ିକାଲ କଲେଜରେ ମାଲ ମାଲ ମାଡ୍ରାମ୍—ଏଠି ବି ଦେଖାଯାଉଛି ଅସଂଖ୍ୟ ଗୁରୁଜନ । ଧେତ୍, ମରିଯିବା କଥା ଯେ ତେବେ ଏତେ ପାଚୋଇ ମରିବ କାହିଁକି ?

ଏଠୁ ପଳାଇବା । ଚଲେ ଦିଲ୍ଲୀ । ସେଠି ତ ଆମେ ରହିବା କଥା । ଏଇ କଣ୍ଟକ—ଗାଉଁଲୀମାନଙ୍କ ପାଇଁ । ଆମେ ଦିଲ୍ଲୀ ଗଲେ ଏଇ ଗାଉଁଲୀମାନଙ୍କଠାରୁ ଛୁଟି । ଆଉ ଏଇ ମଫସଲଆଣୀମାନେ ଦିଲ୍ଲୀ ମାଡ଼ିଲେ ବୁଝିବେ ବୁଦ୍ଧି ବା ଇଣ୍ଟେଲିଜେନସ୍ କି ପ୍ରକାରର ମସଲା ?

ଏଇ ବାଜେ କରଣ ସମାଜରେ ଗୋଟିଏ ବି ପଣ୍ଡା ନାହାଁନ୍ତି । ବଡ଼ ପଣ୍ଡା କୁଆଡ଼ୁ ଆସିବେ ? କଟକର ରାସ୍ତାରେ ସାଇକଲ, ମଟର ସାଇକଲ, ସ୍କୁଟର, ଲୁନା, ସାଇକଲ ରିକ୍ସା ଓ ବୁଲା ଷଣ୍ଢ ବି—

ତାହାଙ୍କ—ମଣିଷ କିଛି ନ ମାନି କିଛି ନ ବାରି ଧକମଧକ୍କା ଆତ୍ମମୁଖ୍ୟ ନେଇ ଚଳିଲା ପରି କରଣି ସମାଜରେ ସବୁ ଆଇନ ଅପଭ୍ରଷ୍ଟ ହୋଇ ଯାଇଛି । ତେଣୁ ପ୍ରତ୍ୟେକ ଘରେ ଅଲଗା ଅଲଗା ଆଇନ ।

ଆଜି ଆଇନର ତର୍ଜମା ଶାଶୁ, ବୋହୂ, ନଣନ୍ଦ ସମସ୍ତେ ପ୍ରକାରେ ପ୍ରକାରେ କରି ଚାଲିଲେ ପରେ ବାପଘରର ନିୟମ ବି ଚଳିବ ।

ଯଦି ବାପଘରର ନିୟମ ବିଷୟରେ କେହି କିଛି ଜାଣିବାକୁ ଚାହିଁଲେ ତେବେ କଥାଟାକୁ ଧରାଯିବ ବାପଘରର ପ୍ରତି ଅପମାନ । ଆଉ ସେଠୁ ସେନାବାହିନୀ ଛୁଟିବେ ବୋହୂର ସୁରକ୍ଷା ପାଇଁ ।

ମୋ ବୋହୂ ଅମିତା ପୁଛିଥିଲା ଯେ ନାରୀ ମାନେ ହେଉଛି ଇଂରାଜୀରେ ଉଇମେନସ ।

—ନା, ଉଇମେନ ବହୁବଚନ । ସେଥିରେ ଆଉ ଥରେ ବହୁବଚନାନ୍ତ ଏସ୍ ଲଗି ନ ପାରେ ।

—ମୁଁ ମୋର କଲେଜର ସାଇନବୋର୍ଡ଼ ଦେଖିଛି । ବାଟଘାଟ ସବୁଠାରେ ଉଇମେନସ ।

ବଡ଼ ଗଣ୍ଡଗୋଳ । ଶାଶୁ ଓ ବୋହୂ ଇଂରାଜୀ ଉପରେ ନିର୍ଭିଲେ । ଏତେ ସାଇନବୋର୍ଡ଼ ଭୁଲ୍ ?

—ହେଇ, ଏମିତି କଲେ କି ବି. ଏ. ପରୀକ୍ଷା ଦେବୁ ? ତୋର ବାପଘରେ କ'ଣ କିଛି ପଢ଼ାଇ ନାହାନ୍ତି ?

—କାହିଁକି ? ସେଠି ମୋର ଅନେକ ଭାଇ ପ୍ରଫେସର । ସେଠି ଖାଲି ପଢ଼ା ହୁଏ । ଆଉ କିଛି ହୁଏ ନାହିଁ । ତେବେ ଉଇମେନସ୍ ପାଇଁ କ'ଣ ମୋର ବାପଘରର ନାଁ ପଡ଼ିବ ?

ଶାଶୁ ଉଠିଯାଇ ମୋର ବୋହୂକୁ ଅନାଇଲା କରୁଣ ଦୃଷ୍ଟିରେ । ବୋହୂ ଜିତି ଯାଇଛି ବୋଲି ବଡ଼ ଦର୍ପରେ ଚାହିଁଲା । ନିଜେ ନ ଜାଣି ବାପ ଘରକୁ ଖୁଣିବାକୁ ବାହାରିଲେଣି ।

ସେଦିନ ଇଂରାଜୀ ପଢ଼ା ସେତିକରେ ବନ୍ଦ ରହିଲା । ପଢ଼ା ଛୁଟି । ବୋହୂ ଗଲେ ଭାତ ବାଢ଼ିବାକୁ । ଶାଶୁ ଗଲେ ମୁହଁ ଧୋଇବାକୁ ।

କଥା ତ ଶେଷ ହେବାର ନୁହେଁ । ହେଁ ମନେ ରଖିଲେ ଏଇ ଗଣ୍ଠି କଥାଟାକୁ ।

ପଢ଼ୁଥିଲେ ଅଧ୍ୟାପକ ଯୀଶୁ ଭାଇ । ସେ କିଛି ଦିନ ଆଗ୍ରୁର୍ଯ୍ୟ ହରିହର କଲେଜ ଭୁବନେଶ୍ୱରରେ କ୍ଲାନ ବାନ୍ଧୁଥିଲେ । ସେ ମଧ୍ୟସ୍ଥତା କଲେ ।

—ମାଉଷୀ, ତୁମେ ଠିକ୍ ଆଉ ମାମି ଠିକ୍ ।

—କେମିତି ? ଦୁଇଜଣ ଠିକ୍ ହେଲୁ ?

—ସାଇନବୋର୍ଡରେ ସେମାନେ ଉପରେ ଗୋଟିଏ କମା ଗୁଡ଼ ଦେଇଥିବାରୁ ଏଇ ଭୁଲଟା ସାଇନବୋର୍ଡ଼ ଲେଖାଳୀର ଆଉ ମୁନସି-ପାଲଟିର ।

ସେଦିନ ମୋର ବୋହୂର ହୋଇଲା ଆତ୍ମବିଶ୍ୱାସ ଫେରି ଆସିଥିଲା । ଯୀଶୁ ଭାଇ ପ୍ରକୃତରେ ଜଣେ ଆନ୍ତର୍ଜାତୀୟ ସ୍ତରର ଲୋକ ବୋଲି ଶ୍ରେଷ୍ଠ ଭଉଣୀର ବିଶ୍ୱାସ ଦୃଢ଼ ହେଲା । ଆଉ ଏଇ ଆଣ୍ଟେଇ ଶାଶୁକୁ ପାନେ ଦିଆଗଲା । ସବୁବେଳେ ପାଟି ଇଂରେଜ ପାଇଁ ।

ହବାର କଥା । ମୋର ବୋହୂ ମରକାଶ ବାଳିକା ହାଇସ୍କୁଲ୍ ଉତ୍ତରକେଳା (ବାର) ରୁ ଅଣାଅଣୀ ମସିହା ଅପ୍ରେଲରେ ଇଂରାଜୀରେ ତେର ଓ ଏକୋଇଶି ପାଇ ସପ୍ଲିମେଣ୍ଟାରୀ କମ୍ପାର୍ଟମେଣ୍ଟାଲରେ ସମସ୍ତଙ୍କୁ ଆଚମ୍ବିତ କରି ଏକାବନ ଓ ତେପ୍ପାଳିଶି ପାଇଗଲା । ଦୁଇ ଶହରୁ ସେ ମାମକ ଭିତରେ ମୋଟ ଚଉଡ଼ିରଶିରୁ ଚଉରାନବେକୁ ଗାଇଗଲା ।

ମୋର ସମୁଧି ଦୁଃଖ କରନ୍ତି ଯେ ତାଙ୍କର ଝିଅ ଇଂରାଜୀରେ ଫାଷ୍ଟକ୍ଲାସ ପାଇବା କଥା । ସେମାନେ ପାତର ଅନ୍ତର କରି ହାଇ ସେକେଣ୍ଡ ଡ଼ିଭିଜନ ଦେଲେ । କେହି ସି. ଟି.ଓଙ୍କୁ ପଚାରୁ ନାହାଁ । ସମସ୍ତେ ଆର, ଆଇ ଓ ଏସ. ଆଇମାନଙ୍କୁ ଡରି ମରୁଛନ୍ତି ।

ଏଇ ହେଉଛି କରଣି ସମାଜର ଢଙ୍ଗ । ଉଖୁଡ଼ା ହାଣ୍ଡିକ ଛ'ଅଣା ପଇସା । ହାଣ୍ଡି ଯାକ କୋଟି କମ ।

ଅତି ବୁଦ୍ଧିମତୀ ଶ୍ରୀମତୀ ପୂର୍ଣ୍ଣପ୍ରଭା ଓ ଅତି ବିଚକ୍ଷଣ ଶ୍ରୀ ବ୍ରଜବଲ୍ଲଭ ମିଶ୍ର ତାଙ୍କର ଜୋଇଁ ଓ ପୁଅ ଖୋଜୁଥିବା ଇଂଲିସ ମିଡ଼ିଅମ୍ ଟ୍ରେନିଙ୍ଗ ଝିଅ ବଦଳରେ ଇଂଲିସ ମିଡ଼ିଅମ ଟ୍ରେନିଙ୍ଗର ଅର୍ଥ ଜାଣୁ ନଥିବା ଓ ଲେଖି ପାରୁ ନଥିବା ଝିଅଟିଏ ଆଣି ପୁରୀ ବାସେଲୀ ସାହିରୁ ଭୁବନେଶ୍ୱର ବିବେକାନନ୍ଦ ମାର୍ଗ ବାଟ ଦେଇ କଟକର ମଙ୍ଗଳାବାଗରୁ ଦିଲ୍ଲୀ ରପ୍ତାନି କରିଦେଲେ ।

ଏବେ ବୋହୂ ପାର୍ସଲ ଖତମ୍ । ଶାଶୁ କହୁଛନ୍ତି ଯେ ତାଙ୍କୁ ସେମାନେ ଗୁମ୍ଫି କରିଦେଲେ । ସମୁଧି କହୁଛନ୍ତି ଯେ ଶାଶୁର ଏକମାତ୍ର ଜୀବିକା ଭଲ ଭଲ ବୋହୂଙ୍କୁ ବାଛି ଧରିନେଇ ମର୍ଡ଼ର କରିବା । ଶାଶୁକୁ କାହିଁକି ଜେଲ ଦିଆ ହେଉ ନାହିଁ ? ପରେ ଖାଲସ ପାଇଲେ ପାଉ । ବୋହୂ ମରିଛି—ଶାଶୁ ଜେଲ ଯିବା ଦରକାର ।

ଏହି କରଣ ବୁଦ୍ଧି ତୁଳନାରେ ଜଣେ ବ୍ରାହ୍ମଣ ବ୍ୟାଙ୍କ୍ ଅଫିସର କଲିକତାରେ ଥିଲାବେଳେ ତାଙ୍କର ସ୍ତ୍ରୀଙ୍କୁ ବାଛିଲାବେଳେ ଜେରକ୍ସ କପିର ମାର୍କଲିଷ୍ଟ ଏଚ. ଏସ.ସିରୁ ଡିଗ୍ରୀ ପର୍ଯ୍ୟନ୍ତ ମଗାଇ ନେଇଥିଲେ ।

ବସ୍ତ୍ରର ବୁଦ୍ଧିର ପ୍ରଭେଦ ଏଇ କଟକରେ ବ୍ରାହ୍ମଣ ଓ କରଣ ବରମାନଙ୍କର ଏତିକି । କେହି ଯୌତୁକ ନେଇ ନାହାନ୍ତି । ଉଭୟେ ସ୍ତ୍ରୀ' ପାଇଛନ୍ତି । ଜଣେ ହେଉଛି ବସ୍ତ୍ରର ପ୍ରଶଂସକ । ଆଉ ଜଣକ ଓଲମିର ପ୍ରଶଂସକ ।

ଏହି କାର୍ଯ୍ୟରେ ଗୁଣ୍ଡାଗାରଡ଼ ନାହିଁ ବୋଲି ଅଧ୍ୟାପିକା ରେଖା ମହାନ୍ତି ଇତ୍ୟାଦିଙ୍କର ମତ । କିନ୍ତୁ ଏତେ ବଡ଼ ବୋଝ ବୋହି ନ ପାରନ୍ତି ବୋଲି ତଥାକଥିତ ଏମ୍ . ଏ. ପାସ ଶ୍ରୀମତୀ ପୂର୍ଣ୍ଣପ୍ରଭାଙ୍କର ସନ୍ଦେହ ।

ସନ୍ଦେହର କାରଣ ହେଲା ଯେ ବୋହୂ ଅମିତାର ରଙ୍ଗଟା ଏମିତି କ'ଣ ହେଲା ?

ଏଥିରେ ରହିଗଲା କରଣିଆ ଭୁଲ । ଝିଅକୁ ଘରେ ଦେଖିବ । ଝିଅ ଦେଉଳ, ଏକଜିବସନ, କି ଅନ୍ୟଠାକୁ ଯିବ ନାହିଁ । ଅଶେଷ ବୁଦ୍ଧି ଖଟାଇ ମୋର ଅଧା ଶ୍ୟାମଳ ବୋହୂକୁ ସେମାନେ ଅଧା ଗୋରା କରି

ଦେଖାଇ ଦେଇ ସମ୍ମୁଦୁଣୀ ଓ ତାଙ୍କର ସାତ ଭଉଣୀ ପାଠିଫିକେଟ୍ ନେଇ ଚାଲିଗଲେ ।

କଟକରେ ବୋଧ୍ର ନାକକୁ ଅନ୍ୟମାନେ ଖୁଣ୍ଟିଲା ପରେ ଶାଶୁ ବୁଦ୍ଧି ଖରଚ କରି ହଳଦୀ ବଟାଇଲେ ।

—ମାମୀ, ହଳଦୀ ଲଗାଇ ଗାଧୋଇବୁ । ରଙ୍ଗଟା ଫିଟିବ ।

—କାହିଁକି ? ମୋର ରଙ୍ଗ ଖୁବ୍ ସଫା ଥିଲା ଭୁବନେଶ୍ୱରରେ । କଟକର ପାଣି ଲାଗି ମଇଳା ଦିଶୁଛି ।

—ଇଏ ତ ଆମର ଚଣ୍ଡୀର ନିର୍ମଳ ପାଣି । ଏଥିରେ କ୍ଷୋଭନ ନାହିଁ ।

ଶାଶୁ ବୋଧ୍, ଦଟେ ଅଭିଯୋଗ ଚଢ଼ିଗଲେ । ମୋର ବୋଧ୍ ବୁଦ୍ଧିରେ କମ୍ ନୁହେଁ । ସେ ତା'ର ହୋରରୁ କଟି ଖେଷେଇ ଦଉ ହଳଦୀ ଗୁଣ୍ଡ ନେଇ ଟାଣ୍ଡାର ପଡ ଲଗାଇଲ ।

ଲୁଗାପଟା ହଳଦୀ । ଶାଶୁ କହିଲେ—ଏତେ ହଳଦୀ କ'ଣ ?

—କାହିଁ ? ଏଗୁଡ଼ାକ ଲକୋ ଟରମେରିକ୍ ।

ନାକକୁ ଚଳଖ ଗଲ୍ପଥିବା ଶାଶୁ ଜାଣିଲେ ଯେ ଝିଅ ଘର କ'ଣ କମିଆ କରିଦେଲେ । ନ ହେଲେ ବୋଧ୍ର କ'ଣ ମଇଳା ହେବମିବ ? ହେଇପାରେ କି ?

ତେଣିକି ଶାଶୁ ଡରିବାରେ ଲାଗିଲେ—ପୁଅ କ'ଣ ଭାବୁଥିବ କେଜାଣି । ତେଣୁ ବୁଲି ବୁଲି ପାହାକୁ ସହାନୁଭୂତି ଦେଲାବେଳେ ଭାବନ୍ତି ତାକୁ ଧକଳ ହେଇ ପଚାରନ୍ତି—ଆଚ୍ଛା, ସତ କହିବ, ମୋର ବୋଧ୍ ମାମୀ କ'ଣ ସୁନ୍ଦରୀ ନୁହେଁ ?

ଓଡ଼ିଆ ଖବରକାଗଜ ଓ ପତ୍ରିକାରେ ଭଉଣୀର ସୌନ୍ଦର୍ଯ୍ୟ ବିଷୟରେ ଅବଶ୍ୟ ଅବଶ୍ୟ ଲେଖା ଲେଖିଛି । କିନ୍ତୁ ବୋଧ୍, ସବୁବେଳେ ଗୋଟିଏ ଧାଡ଼ି କହୁଥାଏ ।

—କଣ ମୁଁ କରିବ ? ମୁଁ କେଉଁ କୂଳକୁ ହେଲି ନାହିଁ । ତୁମର ଯୋଗ୍ୟ ହେଲି ନାହିଁ । ଟଙ୍କା ନାହିଁ । ରୂପ ନାହିଁ । ସ୍ମାର୍ଟ ହେଲି ନାହିଁ । କଣ ମୁଁ କରିବ ?

ଏଇଟା ମୋର ବୋଡ଼ୁର କାଚର ବଳାପ ନୁହେଁ । ଏଇଟା ଏବେ କରଣ ସମାଜର ମର୍ମବେଦନା । ଉଚ୍ଚର ଫମ୍ପା ନେଇ ଡିଗ୍ରୀ, ମେଡ଼ାଲ, ଗ୍ରୁକର ହେଇଯାଉଛି । ତା'ପରେ—ତା'ପରେ ?

ଏଇ ମୋର ବୋଡ଼ୁ ଅମିତା ପର କ'ଣ ଓକିଲ, ଡାକ୍ତର, ମାଷ୍ଟ୍ର, ଅଧ୍ୟାପକ ଆତ୍ମହତ୍ୟା କରିବେ ? ସୁବର୍ଣ୍ଣରେଖା ଓ ବଂଶଧାରା ନଈ ଡେଇଁଲେ ଧର୍ମବାପ ପାଇବେ କେଉଁଠୁ ? ଓଡ଼ିଶାର ତିରିଶି ଜଣ ଏମ୍.ପି ଓ ଜଣେ ମୁଖ୍ୟମନ୍ତ୍ରୀ କେଇ ଡଜନ୍ ଫମ୍ପା କଣ୍ଢେଇଙ୍କୁ ବୋହି ଗ୍ଲିବେ ?

ବହାଗ୍ଲବାଗ୍ ଓ ଗୋପବନ୍ଧୁବାଗ କେତେ ଭଣ୍ଡ ଓ ବେକୁଫ୍‌ଙ୍କୁ ନେଇ ଟେକିବେ ?

ବହାଗ୍ଲବାଗ୍ ସାହିତ୍ୟ ମେଳାରେ ଉକ୍ରର ମହତାବ ଓଡ଼ିଶାର ଅବସରପ୍ରାପ୍ତ ବିଚାରପତି ଓ ବ୍ରେନଟ୍ରଷ୍ଟ ମାନ୍ୟବର ରାଜକିଶୋର ଦାସଙ୍କୁ ସ୍ୱାଗତ ଭାଷଣ ଦେବା ପାଇଁ ନେଲେ । ମାନ୍ୟବର କହିଲେ— ବନ୍ଧୁଗଣ, ଯେତେଦିନ ଏହି ଭାରତ ସମ୍ବିଧାନ ଥିବ ସେତେଦିନ ଆମର ଏଇ ବିଚିତ୍ର ମିଳନ ଅନୁଷ୍ଠାନ ରହିଥିବ······ ।

ସେଇଦିନୁ ସାହିତ୍ୟିକମାନେ ବଡ଼ ଖୁସି ହେଇଗଲେ ଯେ ଓଡ଼ିଆ ସାହିତ୍ୟର ମହର ବଞ୍ଚିଗଲେ । ପିଲିଏ ଏଣିକି ଖାଲି ପଢ଼ିବା କଥା ।

କିନ୍ତୁ ସମସ୍ତଙ୍କୁ ଅପଦସ୍ତ କରି ମହତାବବାବୁ ମଉଡ଼ମଣିଙ୍କୁ ବଦଳାଇ ଦେଲେ । ଆସିଲେ ଅବସରପ୍ରାପ୍ତ ବିଚାରପତି ଶ୍ରୀ ହରିହର ମହାପାତ୍ର ।

ସାହିତ୍ୟ ସଂସ୍ଥାରେ କମ୍ପନ ଉଠିଲା ଯେ ବର୍ଣ୍ଣବିଦ୍ୱେଷ ପାଇଁ ମହତାବ ବାବୁ ଦାୟୀ । କେଉଁ ଗୁଣରେ ହରିବାବୁ ରାଜୁବାବୁଙ୍କଠାରୁ ବଡ଼ ?

ଗୋପବନ୍ଧୁବାଗ ପାଇଁ ଲୋକ ଅଭାବ । ଏବେ ମାନ୍ୟବର ନବକୁମାର ଦାସଙ୍କୁ ଧରିବାକୁ ପଡ଼ୁଛି । ଏଣେ ଗୁଜବ ଗୁଞ୍ଜନ ଗ୍ଲିଛି

ସେ ରଥବାବୁ ସବୁଦିନେ ବର୍ଣ୍ଣବିଦ୍ୱେଷରେ ଆସ୍ଥାବାନ୍ । ସେ ତ ଖୁସିରେ ବି. କେ. ବିପ୍ଳବଙ୍କୁ ନେଇ ପାରନ୍ତେ । କିଏ କାହାକୁ ଊଣା ?

ସୁବର୍ଣ୍ଣରେଖା ଓ ବଂଶଧାରା ନଈ ଦୁଇଟି ସମସ୍ତଙ୍କୁ ରକ୍ଷା କରିଛନ୍ତି । ସବୁ ଯାଉ—ଇଜ୍ଜତ ଥାଉ । ଏଇ ଦୁଇଟି ନଈ ପାର ହେଲେ କିଏ ଆଉ ବଳିବ ? କିଏ ସେଇ ରିସକ୍ ନବ ?

ନେବେ ଓଡ଼ିଆଣୀମାନେ ।

କେବଳ ଇଞ୍ଜିନିୟର ଓ ଡାକ୍ତରଙ୍କ ଛଡ଼ା ଅନ୍ୟ ବୃତ୍ତିର ଓଡ଼ିଆମାନେ ଓଡ଼ିଶା ବାହାରକୁ ଯିବା ପାଇଁ ନାରାଜ । ଖାଲି ଏଇଠି କଟକ ଓ ଭୁବନେଶ୍ୱରରେ ଚମ୍ପିଚୋପାନ । କିନ୍ତୁ ଓଡ଼ିଶା ମାଟି ଛାଡ଼ିଦେଲେ କାଳେ ନିଜର ମାପ ତଉଲ ଜଣା ପଡ଼ିଯିବ ସେଥିପାଇଁ ଅସଂଖ୍ୟ ପ୍ରକାରର ଅପ୍ରାସଙ୍ଗିକ ଯୁକ୍ତି ଦେଖାଇ ରହୁଛନ୍ତି ।

ନିଖିଳ ଭାରତୀୟ ଚାକିରିରେ ଅନ୍ୟ ରାଜ୍ୟରେ ଥିବା ଓଡ଼ିଆମାନେ ପ୍ରାଣପଣେ ମୁଖ୍ୟମନ୍ତ୍ରୀଙ୍କର ସହସ୍ର ନାମ ଜପ କରୁଛନ୍ତି ଯେ ତାଙ୍କୁ ଜନ୍ମଭୂମିକୁ ନିଆଯାଉ । ଏଥିରେ ମଧ୍ୟ ବହୁତ ଲୋକ ସଫଳ ହୋଇ ଆସି ଓଡ଼ିଶା ଜଳବାୟୁରେ ନିଜକୁ ସାମିଲ କରୁଛନ୍ତି ।

ଏହିପରି ପରିସ୍ଥିତିରେ ମୋର ସମୁଧିଙ୍କର ଝିଅ ଅମିତା ଯଦି କଟକର ଶାଶୁଘରକୁ ବିଦେଶୀ ଶତ୍ରୁ ରାଜ୍ୟ ଭାବି ନିଜ ଘରେ ଆସି ରହିବାକୁ ବାହାଘରର ଆଠମଙ୍ଗଳା ଓ ଷୋଳମଙ୍ଗଳା ଭିତରେ କଟାଳି କଲା ତେବେ ଦୋଷ ଅବଶ୍ୟ ଶାଶୁଘରର ।

ଦିଲ୍ଲୀ ରହଣୀ ମଧ୍ୟ ମନକୁ ପାଇଲା ନାହିଁ । କାରଣ କାନ ପାଖରେ ବାପଘରର କାକଳୀ ଶୁଭିଲା ନାହିଁ । ନିଜର ଲୋକଙ୍କୁ ଦେଖିବାର ଅବକାଶ ମଧ୍ୟ ମିଳିଲା ନାହିଁ ।

ତଥାପି ମୋର ବୋହୂ ବାରମ୍ବାର ଅନୁରୋଧ କରିଛୁ ଯେ ସେ ପଛେ ଦିଲ୍ଲୀରେ ରହିବ କିନ୍ତୁ କଟକ ମଙ୍ଗଳାବାଗ ଯିବ ନାହିଁ ।

ଏଥିରେ ଝିଅର ପକ୍ଷ ନେଲେ ଗୋଟିଏ ଉତ୍ତର । ଶାଶୁଘର ପକ୍ଷ ନେଲେ ଆଉ ଗୋଟିଏ ଉତ୍ତର । କିନ୍ତୁ ଏହି କଥାଟିରେ ଶାଶୁ

ପୂର୍ଣ୍ଣ୍ୟପ୍ରଭା ଦେବୀଙ୍କର କପର ବଗୁର ଶକ୍ତି ନାହିଁ  ସେତକ ସ୍ପଷ୍ଟ । ସେ ଏତର ଜଣେ ଓଲମୀ ଲୋକ ଯେ ତାଙ୍କର ବାଛୁଲା ବୋହୂ ଅବା ବୋହୂର କୌଣସି ମାଉଷୀ, ମାମୁଁ ଓ ଭାଇଙ୍କ ବିଷୟରେ କିଛୁ ହେଲେ ଜାଣି ନଥିଲେ । ଏପରିକ ଡାକ ନାମ ବାହାରେ ଭଲ ନାଁ ତାଙ୍କୁ ଜଣା ନଥିଲା ।

ନିଜର ବଚକ୍ଷଣତାରେ ଯୁକ୍ତି କରିଥିଲେ ଯେ ବୋହୂର ଭଲ ନାଁ ଓ ଡାକ ନାଁ ଯିବା ଦରକାର । କିନ୍ତୁ ତାହାର ଜ୍ଞାତି ବନ୍ଧୁ କୁଟୁମ୍ବଙ୍କର ନାମ ଧାମ କି ଦରକାର ?

ପୁଲିସ ଆସି ତଦନ୍ତ କଲା ବେଳକୁ ମୁଁ ଦୈବାତ୍ ଉପସ୍ଥିତ ଥିଲି । ଜଣେ ଜଣେ ଅଫିସର ପଚାରିଲେ—ବାଥରୁମ୍ କେଉଁଠି ?

ଦାନ୍ତ ନିଫାଡ଼ି କହିଲି—ଜାଣେ ନାହିଁ । ଏବେ ପଚାରି କହୁଛି ।

ସେ ହସି କହିଲେ—କ'ଣ ଆଜି ଏ ଘରକୁ ଆସିବା ପ୍ରଥମଥର ?

—ନାହିଁ, ଦଶ ବାର ଥର ଆସିଛି । କିନ୍ତୁ ଏଇ ପିଣ୍ଡା ବାରଣ୍ଡାରୁ ଅଧିକ ଭିତରକୁ ଯିବା ଦରକାର ପଡ଼ି ନାହିଁ ।

ପୁଣି ସେ ହସିଲେ । କିନ୍ତୁ ମୁଁ ଯେ ଗୋଟାଏ ନିପଟ ଓଲୁ ଏତକ କହିଲେ ନାହିଁ ସୌଜନ୍ୟତା ଦେଖାଇ । ଏଣେ ମୁଁ ଭାବୁଥାଏ ଯେ ମୁଁ କେଡ଼େ ଅନାସକ୍ତ ଯେ ଏଇ ଘରେ କେଇଟି ବଖରା ଅଛି ସେଇ ଜ୍ଞାନ ମଧ୍ୟ ସଂଗ୍ରହ କରି ନାହିଁ ତିରିଶି ବର୍ଷ ଭିତରେ ।

ଯାହା ହେବାର ହେଉ, ମୋ ଉପରେ ମଡ଼ର ଗୁର୍ଜ ନାହିଁ । ମୁଁ ବାହାରର ଲୋକ । ପୂର୍ଣ୍ଣ୍ୟପ୍ରଭା ଦେବୀ ଯେମିତି ଆପେ ଆପେ ବୋହୂ ବାଛିଛନ୍ତି ସେମିତି ପାନେ ପାଇଛନ୍ତି ।

ଏଣେ ଦେଖାଗଲାଣି ଯେ ମୋର ପରିବାରର ଅନେକ ଲୋକ କାଳେ ପୁଲିସ ଆଖିରେ ପଡ଼ିଯିବେ ସେଥିପାଇଁ ପୂର୍ଣ୍ଣ୍ୟପ୍ରଭା ଦେବୀଙ୍କୁ ସଖିଲିବା ବନ୍ଦ କରି ଦେଇଥାନ୍ତି । କିନ୍ତୁ ଭୋଜୀ ଖାଇବା ଓ ଉପହାର ଦେଇ ସ୍ମିତ ହସ ଓ ଉଲ୍ଲାସ ଦେଖାଇବାରେ ସେମାନେ ଥିଲେ ଆଗୁଆ ବାହୁନୀ ।

ଆଉ ସେମିତି ପରସ୍ପର ପ୍ରତିଦ୍ୱନ୍ଦିତା କରୁଥିଲେ କରଣ ସମାଜର ବଡ଼ବଡ଼ିଆ ମହିଳାମାନେ । କି ଧାସ—ଡ୍ରେସ ହୋଇ ହସିବାକୁ ଗୁଳି ଆସୁଥିଲେ । କିନ୍ତୁ ମୋର ବୋହୂ ମରିଗଲା ପରେ ସେହିମାନେ ପ୍ଲାକାର୍ଡ଼ ଧରି କଟକ ରାସ୍ତାରେ ବୁଲିଲେ—ଅମିତାର ଅପମୃତ୍ୟୁ ପାଇଁ ଦାୟୀ କିଏ ?

କାଗଜରେ ଲେଖି କଟକର କଲେକ୍ଟର ସାହେବଙ୍କୁ ଦାବୀପତ୍ର ଦେଲେ—ଶାଶୂଙ୍କୁ ଯଥାଶୀଘ୍ର ଗିରଫ କରିବାକୁ । ଆଉ ଏକା ନୁହେଁ ସବୁଠୁ ଧେନୁ—ଅର୍ଥାତ୍ ଶାଶୂ ଓ ନଣନ୍ଦ ଦୁହିଁଙ୍କୁ ।

ସେପ୍ଟେମ୍ବର ଏକୋଇଶିରେ ଉତ୍କଳ ମହିଳା ସମିତିର ମାନନୀୟା ସଭ୍ୟାମାନଙ୍କର ପଦଯାତ୍ରା ସମୟ ଦିନ ସାଢ଼େ ତିନିଟା ।

ସେତେବେଳେ ମୁଁ କଚେରୀରୁ ଘରକୁ ବାହାରିଥିଲି । ଫାଟକ ପାଖରେ ପଦଯାତ୍ରିଣୀ ଦଳ ।

ଦେଖିଲି ଯେ ଦଳରୁ ଅନେକ ଲୋକ ମୋ ଆଡ଼େ ଗୁହୁଁଛନ୍ତି । କଥା କ'ଣ ?

ଅନେକ ଲୋକ ମତେ ଲକ୍ଷ୍ୟ କଲାରୁ ଫେରି ଆସିଲି ଭିତରକୁ । ସେମାନଙ୍କର ଗୁହିଁବାର ଉଦ୍ଦେଶ୍ୟ ଯେ ସେମାନେ ମୋର ପରିଚିତ ଓ କେତେକ ବନ୍ଧୁ ଓ କେତେକ ବନ୍ଧୁର ବନ୍ଧୁ ।

କଲେକ୍ଟର ସାହେବ ଶ୍ରୀ ହରମୋହନ ପଟ୍ଟନାୟକ ଆଇ.ଏ.ଏସ୍ ଦାବୀପତ୍ର ନେଲେ । ଗିରଫ୍ ଡେରି ହେବାରୁ ପ୍ରଗ୍ୱର ହୋଇଗଲା ଯେ କଲେକ୍ଟର ସାହେବ ଏଇ ଦୋଷୀମାନଙ୍କର ବନ୍ଧୁ ହୋଇଥିବାରୁ ଗିରଫ କଲେ ନାହିଁ ।

ବୋହୂର ଭାଇ ଡାକ୍ତର ସବ୍ୟସାଚୀ ମହୋଦୟ କଲିକତାରେ ତାଙ୍କର ହେଡମାଷ୍ଟର ଡକ୍ଟର ଜଲନ୍ଙ୍କଠାରୁ ଜାଣିଥାନ୍ତି ଯେ ଓଡ଼ିଶା ପୁଲିସ ଗିରଫରେ ହେଳା ବା ଉକ୍ତର କଲେ ପ୍ରଶାସନ ବା ଡ଼. ଏମଙ୍କୁ ଧରି ।

ସେଇଆ ହୋଇଥିଲା । ପଦଯାତ୍ରୀଣୀ ଦଳରେ ଆମମାନଙ୍କର ଘରକୁ ଆସି ଆମକୁ ବହୁତ ଭାବରେ କୃତାର୍ଥ ଓ ଧନ୍ୟ କରୁଥିବା ଅନେକ

ମାହାନ୍ତିଆଣୀ ଥିଲେ । ଘରକୁ ଆସୁଥିଲେ ନିଜର ବାବୁମାନଙ୍କର ଜାତିଆଣ ସୁବିଧା କରାଇବାକୁ । ଏବେ ରାସ୍ତାରେ କଟକ କଲେଟରୀକୁ ଗ୍ରୁନ୍ତିଲ ଜାତି-ନିରପେକ୍ଷ ଓ ପରିଚୟ-ନିରପେକ୍ଷ ହୋଇ ସାମାଜିକ କର୍ତ୍ତବ୍ୟ କରିବାକୁ ।

କଲେକ୍ଟର ବନ୍ଧୁ ହେଲେ କେମିତି ? ବୁଝାଗଲା ଯେ ଅମିତାର ଶଶୁର ହିମାଂଶୁ ବାବୁଙ୍କର ବାପା ଶ୍ରୀ ହରମୋହନ ପଟ୍ଟନାୟକ ଓ କଲେକ୍ଟର ସାହେବ ମଧ୍ୟ ଶ୍ରୀ ହରମୋହନ ପଟ୍ଟନାୟକ ।

ବନ୍ଧୁ ନ ହୋଇ ଆଉ କ'ଣ ହେବେ ?

ପାନବାଲା, ପରିବାବାଲା ଓ ରାସ୍ତାର ପଦୂଦଳ ସାକ୍ଷୀ କଥା ହେଲେ ଯେ ଗିରଫ୍ ହୋଉ ନାହିଁ କାହା ପାଇଁ ? ଏହି ସୁସ୍ୱାଦ୍ୟ ପରିସ୍ଥିତି ପାଇଁ ମୋର ସମୁଧି ଓ ତାଙ୍କର ବନ୍ଧୁ ଓ ପୁଅମାନେ ପ୍ରଶଂସା ପାଇବାର ଯୋଗ୍ୟ । କିନ୍ତୁ ମାହାନ୍ତିମାନଙ୍କ ଛଡ଼ା ଅନ୍ୟତ୍ର ଏହିପରି କାର୍ଯ୍ୟପନ୍ଥା ଦେଖାଯାଏ ନାହିଁ ।

ଶାଶୁ ଚୂର୍ଣ୍ଣ-ପ୍ରଭା ଦେବୀ ଖବର ପାଇଲେ ଯେ ବୋହୂ ରସେ-ପସନରେ ଉପହାର ଦେଇ ଟିଫିନ କ୍ୟାରିଅରରେ ଘରକୁ ଫିସ୍ଟ ବୋହିଥିବା ମାହାନ୍ତିଆଣୀମାନେ ଶାଶୁକୁ ଗିରଫ ପାଇଁ ସ୍ୱର ମିଳାଇଛନ୍ତି । ଏପରିକି ଶାଶୁଙ୍କର ପୁଅ ପାଇଁ ଝିଅ ଖୋଜିବାରେ ଓ ପ୍ରସ୍ତାବକୁ ପାସ୍ କରାଇବାରେ ଯେଉଁମାନେ ନିରଳସ ଉଦ୍ୟମ କରିଥିଲେ ସେମାନେ ମଧ୍ୟ ଏହି ନ୍ୟାୟ ଓ ଅନ୍ୟାୟ ସମୀକ୍ଷାରେ ପଛଘୁଞ୍ଚା ଦେଇ ନାହାନ୍ତି ।

ଏଇ ପରିସ୍ଥିତିକୁ ଶାସ୍ତ୍ର କହେ—ମାୟାର ଅଞ୍ଜନ । ଏହି ସବୁ ନିଜର ଅନୁଭବକୁ ନ ଆସିଲେ ମଣିଷ ମାୟାର ପରଦାକୁ ଛୁଣ୍ଡେଇ ପାରିବ ନାହିଁ । ଆଉ ବ୍ୟକ୍ତିଗତ କ୍ଷେତ୍ରରେ ମାହାନ୍ତିମାନଙ୍କର ରୂପ ଓ ଗୁଣ ଓ ଭେକକୁ ମଧ୍ୟ ବାରିପାରିବ ନାହିଁ ।

ବଡ଼ ଆଶ୍ଚର୍ଯ୍ୟର କଥା ଯେ ପ୍ରୋସେସନ କଥା ପଚାରିବାରୁ ମାନମାସ୍ୟାମାନେ କୈଫିୟତ ଦେଲେ ଯେ ସେମାନେ ଆଦୌ ଜାଣି ନଥିଲେ ଓ ଜାଣନ୍ତି ନାହିଁ ଯେ ସେଇ ଶୁକ୍ରବାର ୨୧।୯।୮୪ ଶୋଭାଯାତ୍ରା ଅମିତାର ଶାଶୁଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା ।

ତା'ପରେ ମାସେ ଗଡ଼ିଗଲା । ଅକ୍ଟୋବର ମାସ ସରି ଆସିଲା । ଶୀତ କାକର ଆସିଗଲାଣି । ମୋର ବୋହୂ ମରିବା ଏଗାର ସପ୍ତାହ ହୋଇଗଲାଣି । କିନ୍ତୁ ସମୁଧିଙ୍କର ଲୋକେ ବାଗ୍ଯୋଗ ଅବ୍ୟାହତ ରଖିଛନ୍ତି ।

ସ୍ୱାଧୀନତା ଦିବସ ରାତିରେ ବୋହୂକୁ ସତ୍କାର କରି ଝିପଝିପିଆ ବର୍ଷାରେ ଛତା ଭାଙ୍ଗିଯିବାରୁ ଓଦା ହୋଇ ରାତି ଦଶଟାରେ ଫେରିଥିଲି ।

ଲୁଗା ବଦଳାଇ ଗୋଟାଏ ଧୂପ ଓ ଗୋଟିଏ ଫୁଲ ମୋର ବୋହୂ ଉଦ୍ଦେଶ୍ୟରେ ଦେଇ ମୁଣ୍ଡିଆ ମାରିଥିଲି । ପ୍ରତିଦିନ ସେହିପରି ଥରେ ପ୍ରାର୍ଥନା କରେ ।

ଏମିତି ପ୍ରାୟ ବାର ଚଉଦ ଦିନ ହୋଇଗଲାପରେ ଦେଖିଲି ଯେ ଆଉ ଫୁଲ ଦେବାକୁ ଅବା ଧୂପ ଦେବାକୁ ଇଚ୍ଛା ହେଉ ନାହିଁ । କିଛି ଭାବି ନ ପାରି ସେତିକି ବନ୍ଦ କଲି । ମନେ ହେଲା ଯେ ଅମିତାର ଶ୍ରାଦ୍ଧ ପରେ ହୁଏତ ତାହାର ଅଶାନ୍ତ ଅଶରୀରୀ ଶାନ୍ତି ପାଇଛି ।

ମୋର ଅନୁଭୂତିକୁ କାହାରିକୁ ଜଣାଇ ନଥିଲି । ସେଇ ସମୟରେ ଅର୍ଥାତ୍ ସେଇ ଅଗଷ୍ଟ ଶେଷ ଆଡ଼କୁ ଶୈଳଦେବୀ ଦିନେ କହିଲେ ଯେ ସେ ଅମିତାକୁ ସ୍ୱପ୍ନରେ ଦେଖିଥିଲେ । ସେ କହିଲେ ଯେ ଭଲରେ ରହିଛନ୍ତି । କଷ୍ଟ ପାଉଥିଲେ ।

ମନରେ ସନ୍ଦେହ ରହିଲା ଯେ ଅପମୃତ୍ୟୁ ଆତ୍ମହତ୍ୟା ଇତ୍ୟାଦିରେ କ'ଣ ଆତ୍ମା ଏତେ ଶୀଘ୍ର ଶାନ୍ତି ପାଇପାରେ ? କିନ୍ତୁ ଅମିତାର ଶାଶୁଘର କହନ୍ତି ଯେ ଥରେ ଖରାବେଳେ ସେମାନେ ସ୍ୱପ୍ନରେ ଅମିତାକୁ ଦେଖିଥିଲେ —ମୃତ୍ୟୁର ଦୁଇତିନ ଦିନ ମଧ୍ୟରେ । ଆଉ କେବେ ଦେଖନ୍ତି ନାହିଁ କିମ୍ବା ତାହାର ରହିବା ଘରର ପରିସରରେ ଭୟ ବା ସେପରି କିଛି ବିଶେଷ କଥା ଜାଣି ନାହାନ୍ତି ।

ତେବେ କ'ଣ ଅମିତା ଥିଲା ଦେବଗୃହର ଅଧିକାରୀ ? କିଛି ବିଶେଷ କାରଣ ପାଇଁ ସେ ତାହାର ନିଜ ଲୋକଙ୍କୁ କ୍ଷତିଗ୍ରସ୍ତ କରି ବିଦା ହୋଇଥିଲା ଓ ଆଉ ଅଳ୍ପ କେଇଟା ଦିନରେ ତାହାର ଶାଶୁଘର ଲୋକଙ୍କୁ—ଶାଶୁ ନଣନ୍ଦଙ୍କୁ ଓ ଶାଶୁଘରର ବହୁତ ବିଶିଷ୍ଟ ବ୍ୟକ୍ତିଙ୍କୁ ନିନ୍ଦା ଦେଇ ଚାଲି ଯାଇଥିଲା ?

କିଏ ଜାଣେ କର୍ମବନ୍ଧନ କିପରି ଭାବରେ ତାହାର କାର୍ଯ୍ୟ ଦେଖାଏ ? ଏହି ଘଟଣାଟିର ଆକାର, ପ୍ରକାର, ବିସ୍ତୃତି ଓ ତାତ୍ପର୍ଯ୍ୟ ବଡ଼ ବିଚିତ୍ର ମନେ ହୁଏ ।

ପ୍ରତିଦିନ ଏଠି ସେଠି ପ୍ରକାଶ ଯୋଗ୍ୟ 'ବୋହୂ—ପୋଡ଼ି, ବୋହୂ—ଦଉଡ଼ିଦିଆ, ବୋହୂ—ଅପମୃତ୍ୟୁ ପ୍ରକାଶ ପାଉଛି । କିନ୍ତୁ ଅମିତା ସମ୍ପର୍କରେ ଯେଉଁ ଆକାରରେ ମୃତ୍ୟୁ ପରବର୍ତ୍ତୀ ଘଟଣାମାନ ଘଟିଛି ସେଇଟା ରୁଟିନ୍ ପରି ମନକୁ ଲାଗେ ନାହିଁ ।

ଏହିପରି ଗୋଟିଏ ଘଟଣା ଆବଶ୍ୟକ ଥିଲା—ଏହାର ଅଭିନେତାମାନେ ଏଥିରେ ଈଶ୍ୱରଙ୍କର ନିମିତ୍ତ ମାତ୍ର ।

ସମାଜ ତା ୧୩।୧୦।୮୪ ପୃ ୫

ବିବାହିତା ଯୁବତୀଙ୍କ ଆତ୍ମହତ୍ୟା । ପାରାଦ୍ୱୀପ—ତା ୧୨।୧୧ । ଗତ କାଲି କୁଜଙ୍ଗ ଥାନା ତାଳଦଣ୍ଡା ଗ୍ରାମର ଶ୍ରୀ ଯଶୋବନ୍ତ ମୁଦୁଲିଙ୍କର କୋଡ଼ିଏ ବର୍ଷ ବୟସ୍କା ବିବାହିତ କନ୍ୟା ଶ୍ରୀମତୀ ନିରୂପମା ରଣା ରସି ଲଗାଇ ଆତ୍ମହତ୍ୟା ଖବର ମିଳିଛି । ଗତକାଲି ପୂର୍ବାହ୍ଣ ଦଶଟାରେ ମୃତା ଶ୍ରୀମତୀ ରଣା ନିକଟବର୍ତ୍ତୀ ଶିବ ମନ୍ଦିରକୁ ଯାଇ ଦର୍ଶନ କରି ଆସିବା ପରେ ପ୍ରାୟ ଏଗାରଟା ବେଳେ ଘର ଭିତରେ ରସି ଦେଇ ଆତ୍ମହତ୍ୟା କରିଥିବା ପ୍ରକାଶ । ଗତ ଅପ୍ରେଲ ମାସରେ ନିରୂପମାଙ୍କର ନିଶ୍ଚିନ୍ତକୋଇଲିରେ ବିବାହ ହୋଇଥିଲା । ଏହି ଆତ୍ମହତ୍ୟା ଘଟଣା ସମ୍ପର୍କରେ ବିଭିନ୍ନ କଥାମାନ ଶୁଣାଯାଉଛି । ପୋଲିସ ଘଟଣାର ତଦନ୍ତ ଚଳାଇଛନ୍ତି (ନିଜ ପ୍ରତିନିଧି)

ନିଜ ଘରେ ଓ ଶାଶୂଘରେ ଏକା ଘଟଣା ଘଟିଲେ ଅର୍ଥ ପୂରା ବିପରୀତ ହୋଇଯାଏ । ଅମିତାର ମୃତ୍ୟୁ କଟକରେ ନ ହୋଇ ଭୁବନେଶ୍ୱରରେ ବାପଘରେ ହୋଇଥିଲେ ବୋଧହୁଏ ଅମିତାର ତଥାକଥିତ ଚିଠିପତ୍ର ଓ ମର୍ମସ୍ପର୍ଶୀ ମିଥ୍ୟା ପ୍ରତ୍ୟୟମାନ କେଉଁ ରୂପ ନେଇ ଥାନ୍ତା କେବଳ କଳ୍ପନା କରି ହେବ ।

କଟକରେ ନ ହୋଇ ଦିଲ୍ଲୀରେ ହୋଇଥିଲେ ଏହାର ମାରାତ୍ମକତା କେବଳ ଅନୁମାନ କରିବା କଥା । ଆଉ ଅନୁମାନ କରିପାରିଲେ ଯେ

କୌଣସି ଗୃହୀ ଲୋକ ଈଶ୍ୱରଙ୍କୁ କୃତଜ୍ଞତା ଜଣାଇବ ଯେ ସେ ଯାହା କରିଛନ୍ତି ପ୍ରକୃତରେ ପ୍ରାଣୀର ମଙ୍ଗଳ ପାଇଁ ।

ଚଉଦ ଅଗଷ୍ଟ ୧୯୮୪ ।

ସେଦିନ ଅମିତାର ବି ଏ. ପରୀକ୍ଷାର ସପ୍ଲିମେଣ୍ଟାରୀ ଭର୍ତ୍ତି ପାଇଁ ଫର୍ମ ପୂରଣ ଦିନ । ଆଗଦିନ ଘରେଇ ପରୀକ୍ଷାର୍ଥୀ ଫର୍ମ ଉତ୍କଳ ବିଶ୍ୱ-ବିଦ୍ୟାଳୟରୁ ଅଣା ହୋଇଥିଲା ।

ଅମିତାର ଅନେକ ପାସପୋର୍ଟ ଫଟୋ ବିଭିନ୍ନ ଖବର କାଗଜରେ ବାପା ଭାଇ ଏବେ ଛପାଇଛନ୍ତି । କିନ୍ତୁ ଅମିତାର ଆପ୍ଲିକେସନ ଫର୍ମ ପାଇଁ ଫଟୋ ମଗାଯାଇଥିଲା । ଦେବୀ ପ୍ରସନ୍ନ ବାବୁ ଖୋଜି ଦେବାର ପ୍ରତିଶ୍ରୁତି ଦେଇଥିଲେ । ଫଟୋ ଆସିଲା ନାହିଁ । ତେଣୁ ଶଶୁର ମୁରୁବିକା ଦେଲେ ଯେ ଫଟୋ ଆଣି ଦାଖଲ କରିଦେବେ ।

ସେଦିନ ଅମିତା ସକାଳେ ରାଜନୀତି ବିଜ୍ଞାନ ପଢ଼ିଛି । ଉତ୍ତର ଲେଖିଛି । ଇଂରାଜୀ ବହିର ତାଲିକା ଓ ସିଲବସ ନଥିବାରୁ ଅନୁମାନରେ ପୋଏଟ୍ରି ଆରମ୍ଭ ହେବାର କଥା ଶୋଇ ଉଠିବା ପରେ ।

ସେଇଦିନ ଜପର ଓଳି ପାଇଁ ଅମିତା ଦୋସା କରିବା ସକାଶେ ଗୁଣ୍ଡଉଳା, ବରି ବାଟୁରାଇ ଥିଲା । ଜପର ଓଳି ଶ୍ୱଶୁରାଣୀ ଆସିଲେ ବାଟିଦି ଓ ବୋହୂ ଦୋସା କରିବ ।

ଶାଶୂ ପୂର୍ଣ୍ଣପ୍ରଭା ଦେବୀ କହିଲେ ଆଜି ତରକାରୀ କରି ରଖି ଦେବାକୁ । ଅମିତା ରାଜି ନ ହୋଇ କହିଲା ଯେ ଖୁବ ଅଳ୍ପ ସମୟ ଲାଗିବ । ସେତିକ ସେ ଜପର ଓଳି କରିଦବ ।

ଠିକ ଏମିତି ହୋଇଥିଲା ଭୁବନେଶ୍ୱରରେ ମୋର ବୋହୂର ଜଣେ ଧରମ ମାଆଙ୍କର ଆତ୍ମହତ୍ୟାରେ । ସେ ମୋର ବୋହୂକୁ ଭଲ ପାଉଥିଲେ ଓ ବୋହୂକୁ କହୁଥିଲେ ଯେ ସେ ଅମିତା ଓରଫ ମାମୀ ବାହା ଘରେ ଭଲ କରି ମାଛ ଓ ଖିରି ଖାଇବେ ।

ହଠାତ୍ ଧରମ ମାଆ ନିଜ ଦେହରେ କିରାସିନି ଢାଳି ଦି' ପହରରେ ନିଆଁ ଲଗାଇ ଦେଲେ । ପୋଡ଼ିଯାଇ ମରିଗଲେ । ସେଇ

ଘଟଣା ଘଟିଥିଲା ମୋର ବୋହୂ ଅମିତାର ବିଭାଘରର ଦୁଇ ତିନି ଦିନ ଆଗରୁ । ଧରମ ମାଆ ମଧ୍ୟ ଦୋପା କରିବାକୁ ବଡ଼ ଖୁଣ୍ଡିଳ ତିଆରି ରଖିଥିଲେ ।

କିଏ ଜାଣେ ମୋର ବୋହୂକୁ ତାହାର ସେହି ଆତ୍ମଘାତିନୀ ଧରମ ମାଆ ଦେଖା ଦେଇ କିଛି ପ୍ରବଞ୍ଚନା ଦେଉଥିଲା କି ନାହିଁ ?

ମୋର ବୋହୂ ଏବେ କଟକର ବାହାଘର ଗିରସ୍ତପଣ ଓ ଚଳଣି ପରେ ଦିନେ ଦୁଇ ଦିନରେ ତାହାର ସ୍ୱାମୀକୁ କହିଲା ଯେ ତାହାର ଆତ୍ମହତ୍ୟା କରିବାକୁ ଇଚ୍ଛା ହେଉଛି ।

ବ୍ୟସ୍ତ ହୋଇ ମୋର ଭଣଜା ତାହାର ମାଆକୁ କହିଲା । ସମସ୍ତେ ବିବ୍ରତ ହୋଇ ପଡ଼ିଲେ ଯେ ବାହାଘର ବାସି ତୁଆସି ହେବା ଆଗରୁ ଏତେ ଝିଅଙ୍କ ଭିତରେ ବସ୍ତ ବୋହୂଟିର ଇଏ କି ଖିଆଲ ?

ବୋହୂ ଅଭିଯୋଗ ଆଣିଲା ତାହାର ସ୍ୱାମୀ ଉପରେ ଯେ ସେ ଗୋଟାଏ ଗୋପନ କଥାକୁ ପ୍ରକାଶ କରିଦେଲା । ମୋର ବୋହୂ ଅନ୍ୟ-ମାନଙ୍କ ଦୃଷ୍ଟିରେ ଦୋଷୀ ପରି ହେଉଛି ।

ତା' ପରେ ଏସବୁ ବାତୁଳତା ବନ୍ଦ ରହିଲା । ମଙ୍ଗଳାବାଗରେ ଅଳ୍ପ କେଇଦିନ କଟାଇ ଦିଲ୍ଲୀ ଗଲା । ସେଠି ମଧ୍ୟ ସେଇ ଆଶଙ୍କାପ୍ରଦ କାହାଣୀ—ଅସ୍ଥିରମନାର ଶୂନ୍ୟମନ୍ୟତା ଓ ପରାଜୟ ଖାତିର ଅସଂଲଗ୍ନ କାହାଣୀ । ସେହି କାହାଣୀର ପାଦଚିହ୍ନ ପଡ଼ିଥାଏ ମାନସିକ ରୋଗର ଚିକିତ୍ସା କ୍ଲିନିକ ଆଡ଼କୁ—କଟକରେ ସେଇଟା ଯାଏ କାଳୀଗଳିର ବିଶେଷଜ୍ଞ ଡାକ୍ତର ପାର୍ଥ ରାଓଙ୍କର ପ୍ରାସାଦ ଆଡ଼କୁ । ଦିଲ୍ଲୀରେ ସେଇଟା ଥାଏ ସବୁ ଆଡ଼କୁ । କାରଣ ଦିଲ୍ଲୀ, ମହାନଗରୀରେ ମାନସିକ ରୋଗର ଅସଂଖ୍ୟ ପାହାଚ ।

ହିସାବ କହେ ଯେ ମାନସିକ ରୋଗୀ କଟକ, ସମ୍ବଲପୁର, ବ୍ରହ୍ମପୁର, ଭୁବନେଶ୍ୱର ପରି ସହରରେ ପ୍ରତି ଶହେ ଲୋକରେ ଜଣେ ।

କଟକ-ଭୁବନେଶ୍ୱର ଅବା ବ୍ରହ୍ମପୁର—ଛତ୍ରପୁର କିମ୍ବା ସମ୍ବଲପୁର—ହୀରାକୁଦ ପରି ଗାଁଗଣ୍ଡା ଅଞ୍ଚଳରେ ଲୋକସଂଖ୍ୟାର ପ୍ରତି ଦୁଇ ଶହରେ ଜଣେ ମାନସିକ ରୋଗୀ ।

ଶିଳ୍ପ ନଗରୀ ରାଉରକେଲାକୁ ଗଲେ ଦେଖାଯାଉଛି ଯେ ମାନସିକ ରୋଗୀ ବାହାରୁଛନ୍ତି ଦୁଇଶହ ଲୋକରେ ତିନିଜଣ ।

ଭାରତର ରାଜଧାନୀରେ ଏହି ରୋଗ ସଂଖ୍ୟା ଶହେରେ ଦୁଇ ଜଣରୁ ତିନିଜଣ ।

ଆଜି ମହାନଗରୀରେ ଅସଂଖ୍ୟ ରୋଗୀ ଓ ଅସଂଖ୍ୟ ବିଶେଷଜ୍ଞଙ୍କୁ ଚଳାଇବାକୁ ଅନେକ ପ୍ରକାରର ଜୀବନ-ନିର୍ବାପକ ସମସ୍ୟା ।

କଥା ହେଉଥିଲା ଯେ ମୋର ବୋହୂ ମାନସିକ ରୋଗର ବିଶେଷଜ୍ଞ ପାଖକୁ ନଆସିବ—ସେଇ ଦିଲ୍ଲୀରେ ।

ଏହି ଖବର ପାଇ ଶାଶୁ ବ୍ୟସ୍ତ ହୋଇ ପଡ଼ିଲେ । କ'ଣ ଏମିତି ହେଲା ଯେ ପୁଣ୍ୟପ୍ରଜ୍ଞ ଦେବୀ ବୋହୂର ଏମିତିକା ପୁଟୁକା ମନକୁ ଧରି ପାରିଲେ ନାହିଁ । ଅନ୍ୟାନ୍ୟ ବିଷୟରେ ସିନା ସିଏ ଠକେଇରେ ପଡ଼ିଗଲେ । କିନ୍ତୁ ତାଙ୍କର ଆଦରର ବୋହୂର ଯେ ପାଗଳାମି ଥାଇ ପାରେ ଏତକ ସନ୍ଦେହ ମଧ୍ୟ କରିପାରିଲେ ନାହିଁ ।

ଏହି ଅସାବଧାନତା ପାଇଁ ଶାଶୁ ନିଜର ବୁଦ୍ଧି ନ ଥିବା କଥା ମାନିସିବା ଉଚିତ୍ । ତା' ନ କରି ଦୋଷକୁ ନେଇ ଫେରିବାଲା ଅବା ମାଉସୀଙ୍କ ଉପରେ ଜିନିଷର ଭଲମନ୍ଦ ପାଇଁ ଦୋଷ ଲଦିବା ଭୁଲ୍ । କାଲେ ଏତ ସବୁ ଖୁଣ୍ଟି ଚଦାକୁ ଜଣା ପଡ଼ିବ ସେଥିପାଇଁ ବୋହୂର ବାପଘର ଆଡ଼ୁ ଖବରକାଗଜ ଚଢ଼ାଉ ଚାଲିଛି ।

ଶାଶୁ ନିଜର ବସ୍ତୁବସ୍ତୁର ଓଲମି ବାହାରେ ପଡ଼ିବା ଡରରେ ଭାବିଲେ ଯେ ସେ ଆଗ ବୋହୂକୁ ଭଲକରି ଯତ୍ନକରି ପରୀକ୍ଷା ନିରୀକ୍ଷା କରିବେ । ତା'ପରେ ତାହାପାଇଁ ଚିକିତ୍ସାର ବ୍ୟବସ୍ଥା ହେବ ।

ସେଥିପାଇଁ ଓ ବି. ଏ. ପରୀକ୍ଷା ଦେବା ପାଇଁ ଓ ଦିଲ୍ଲୀର ଚଳଣିକୁ ଚଳନସହ ଇଂରେଜି, ହିନ୍ଦୀ ବାତ୍, ଟେବୁଲ ଖାନା ଔର ଖାନା ପକ୍‌କନା ଔର ଥୋଡ଼େସେ ଇଲମ୍ ଲେନା କାମରେ କଟକ ଆଣିଲେ ।

ଶାଶୁଙ୍କର ପ୍ରସ୍ତାବ ଥିଲା ଯେ ବୋହୂ ଦିଲ୍ଲୀରେ ପୁଅର ସାହାଯ୍ୟ ନେଇ ବି. ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେବ। ଏଣେ ନଣନ୍ଦ ନନ୍ଦମାର ଏମ୍ ଏ. ପରୀକ୍ଷା ସରିଗଲେ ଏଠି ସେ ପହଞ୍ଚିବ।

ଏହି ପ୍ରସ୍ତାବ ରହି ପାରିଲା ନାହିଁ। କାରଣ ଦିଲ୍ଲୀରେ ପ୍ରାୟ ପ୍ରତିଦିନ ନୂତନ ନୂତନ ଉପସର୍ଗ ଦେଖାଗଲା। ବିଚାରି ସ୍ୱାମୀ ବୋହୂକୁ ବାଛିବାକୁ, ବିଭା ହେଇ ଘରକୁ ଆଣିବାକୁ ଓ ଘରେ କିଛିଦିନ ରହିବାକୁ ପ୍ରାୟ ଦୁଇ ମାସ ଛୁଟି ସାରି ଦେଇଥାଏ। ଏଣେ ବୋହୂର କାମ ଯେ ସ୍ୱାମୀ ଛୁଟି ନେଇ ଘରେ ତାହାର ସେବା କରନ୍ତୁ ଆଉ ତାକୁ ସବୁବେଳେ Cheer up କରୁଥାନ୍ତୁ।

ହତଭାଗ୍ୟ ସ୍ୱାମୀଟି ବାଧ୍ୟରେ ଅନେକ ଛୁଟି ମଧ୍ୟ ନେଲା। କିନ୍ତୁ ମାଆ ପାଖେ ବସି ଔଷଧ ଖାଇବା ସମୟ ଜଣାଇବା ଓ ଔଷଧ ଖାଇବାକୁ ଖୋସାମଦ କରିବା ଇତ୍ୟାଦି ନାରୀସୁଲଭ ଆଗ୍ରହକୁ ତେଜେଇବାକୁ ଛୁଟି ମିଳିଲା ନାହିଁ।

ଯେଉଁମାନେ ଆଜି ମୋର ବୋହୂ ବିଷୟରେ ବହୁତ ବହୁତ ବଖାଣ ଦେଉଛନ୍ତି ସେମାନେ ଏତିକ ଦୟାକରି କରିଇବା ଉଚିତ ଥିଲା। କାରଣ ଘର ଲୋକ ଜାଣନ୍ତି କେଉଁ ଠାକୁରାଣୀଙ୍କର ମନର ଛନ୍ଦ କେଉଁଠି କେଉଁଠି କେତେବେଳେ ପ୍ରକାଶ ପାଏ।

ବର୍ଷର ମେ, ଜୁନ, ଜୁଲାଇ ମାସ ତିନୋଟି ଦିଲ୍ଲୀରେ କିପରି ଆନନ୍ଦଦାୟକ ଅବଶ୍ୟ ମୋର ସମ୍ମୁଖ ବ୍ରଜବାବୁ ଓ ତାଙ୍କର ସନ୍ତୁମାନେ ଖୁବ ଭଲ ଭାବରେ ଜାଣୁଥିବେ। ସେଇଠି ଅମିତାର ପ୍ରଗଲ୍‌ଭ ଜୀବନ ଦିନେ ଦିନେ ହୋଇ ଛୁଣ୍ଡି ଆସୁଥିଲା।

ହାତ ପାପୁଲିରେ ମୋର ବୋହୂ ବେଲଣା କାଠି ଧରି ଅଟା ବେଲି ପାରିଲା ନାହିଁ। କ'ଣ ହେଉଛୁ ପଚାରିଲେ କାନ୍ଦେ ଓ କହେ ଯେ ଅମିତା କେଉଁ ଆଡ଼କୁ ହେଲା ନାହିଁ। ସବୁ ଦିଗରେ ଅଯୋଗ୍ୟ।

ଅଟା ଚକୁଳି ଖାଇ ବିରକ୍ତ ଲାଗିଲେ ଗ୍ରାଲ ହୋଟେଲ ରେଷ୍ଟୁରାଣ୍ଟ। ମଟର ସାଇକଲ ଅଛି। ଖାଇବା ପାଇଁ ପଇସା ଅଛି।

ଖୁଆଇବା ପାଇଁ ମନରେ ଅସୀମ ଦରଦଭରା ପ୍ରୀତି ଅଛି । ସେଥିରେ ସମସ୍ୟା କମ୍—ଉଷ୍ଣ ଅଶ୍ରୁ ବୋହିବାର କାରଣ ମଧ୍ୟ ଯଥେଷ୍ଟ କମ୍ ।

ମୋର ବୋହୂ କାହିଁକି ଏଡ଼େ ସବୁ ବାଜେ କଥା ତାହାର ମାଆ ବାପାଙ୍କୁ ଲେଖିବ ? ସେମାନେ ଖାଲି ବ୍ୟସ୍ତ ହେବେ ।

—କ'ଣ ଶୈଳଦେଈ ? ଇଏ କ'ଣ ? ଦୁଇ ନମ୍ବର ଯୁନିଟ୍‌ରେ କ'ଣ ପରଟା, ପୁରି ଆଦି ହୁଏ ନାହିଁ ?

—ତମେ ବି ସେମିତିକା ଓଲୁ । ବିଶ୍ୱାସ କରୁଛ ଏ ସବୁ ବାଜେ କଥାକୁ ।

--ଆରେ ତୁମର ତିରିଶି ପଇଁତିରିଶି ବର୍ଷର ବାଧବୀଙ୍କୁ ପଚାର । ଯଦି ଦରକାର ହୁଏ ଆମେ ସାହାଯ୍ୟ କରିବା । ନ ହେଲେ ଗୋଟିଏ ପରିବାର ଉଜୁଡ଼ିଯିବ । ···କେଜାଣି ଗୋଟାଏ ଘରୁଆ ଘରର ଝିଅ ଖାଲି ଉସୁନା ଅରୁଆ ଗୁଡ଼ଜଳ ଫୁଟେଇ ଜାଣିଛି । ପୁରି ପରଟା ଜାଣେ ନାହିଁ । ···କିଏ କହିବ ଏଇ ଓଡ଼ିଶା କଥା ?

—ରଖ, ରଖ । ମୁଁ ଜାଣେ ସେମାନେ ଫାଷ୍ଟକ୍ଲାସ ରାନ୍ଧିବାବାଲି । ତୁମ ଘରଠାରୁ ଭଲ ଖାଆନ୍ତି ।

—ହିଁ, ହବ ଯେ । ତେବେ ଏମିତି ଗୋଟାଏ ସମ୍ବାଦ ଆସୁଛି କେମିତି ?

—କିଏ କହୁଛି ?

—କହୁଛନ୍ତି ଦିଲ୍ଲୀ ପ୍ରବାସରେ ଥିବା ଓଡ଼ିଆ ଲୋକ । ପୂର୍ଣ୍ଣପ୍ରଭା ଦେବୀଙ୍କର ବନ୍ଧୁବାନ୍ଧବ । ଟେଲିଫୋନରେ କହି କଟକକୁ ଆତଙ୍କିତ କରି ଦେଉଛନ୍ତି । ଏଣେ ଶାଶୁ ଅତ୍ୟନ୍ତ ବିବ୍ରତ । ତେବେ ହୋଟେଲରେ କେତେ ଦିନ ଖାଇବେ ? ଦରମା ଅଣ୍ଟିବ ତ ? କଟକରେ କରଜ ରହୁଛି । ଏଠୁ ଦିଲ୍ଲୀକୁ ଟଙ୍କା ପଠାଯିବ କେମିତି ?

ଅମିତାଙ୍କର ବାପ ଘରେ ଆନନ୍ଦର ହିଲ୍ଲୋଳ—ହେଲି ନାଗି, ହେଲା ପାରି । ଶ୍ରୀ ହରମୋହନ ପଟ୍ଟନାୟକଙ୍କର ସମସ୍ତ ପଦାର୍ଥ

ଯାଇଚ ନେଇକ କାର୍ତ୍ତିକ ବାହାର ଆଡ଼କୁ । ଧାମ୍ୟବାଦ ଦେବାକୁ ଯାଉଛୁ । କଟକ ମଙ୍ଗଳାବାଗ ଘର ଓ ଜମିରେ ମିଶିମିଶି ଧ୍ୱସ ବାସେଲୀ ସାସ୍ତିର ଜମି । ଉଭୟେ ପଟ୍ଟନାୟକ—ଜଣେ ଆସିଥିଲେ ବାଙ୍କିଗଡ଼ରୁ ଓ ଆଉ ଜଣକ ଚାଟଙ୍ଗଗଡ଼ (ନବକାରପୁରରୁ) । ଖରଚ କ'ଣ ?

ସୁବିଧା ମଉସୁମ ଦେଖି ବାହାରି ଦେବାବାକୁ ଅନେକ ପ୍ଲାନ କରିବା ଆରମ୍ଭ କରିଦେଲେଣି ।

ଅଖିଆ ବାବାଜୀ ଭଜନ ହାଟ
ଅଖିଆ ଗଜଉ କଣ୍ଠା (ପରିବା) ଚଟାଣ
ଅଖିଆ ଛତ୍ରାଣ ଉତ୍କଳ କଣ୍ଠ
ଅଖିଆ ମାହାନ୍ତି କରଇ ଯାଞ୍ଚ ।

(ଓଡ଼ିଶାର ପ୍ରସିଦ୍ଧ ଷଡ଼ିସୂତନ୍ତ୍ରୀ କରଣ ଶ୍ରୀ ନବକିଶୋର ମହାନ୍ତିଙ୍କର ରଚନାଧାରର ନିର୍ଯ୍ୟାସ । ଏଥିରେ ସତ ଓ ସତ କଥା ପୂର୍ଣ୍ଣ ହୋଇ ରହିଛି ।

—ଆହେ କୈଳି ଦେଖ, ଦୟାକରି ଭୁବନେଶ୍ୱର ଯାଅ । ବୁଝ । ଆମେ ଯେତେ ଅବସରକାଳୀ ହେଲେ ବି ଏଇଟା ଆମର ସାଧାରଣ କର୍ତ୍ତବ୍ୟ ।

—ଓଃ, ଭଉଣୀ ସୁଆଗ ବାହାରିଲଣି ! ଜାଣିଛ ତୁମର ଭଉଣୀ-ମାନେ ମତେ ଅନେକ ଥର ଆତ୍ମହତ୍ୟା ଆଡ଼କୁ ଠେଲିଛନ୍ତି । ଆମର କିଛି କରିବାର ନାହିଁ । ଏହି ସବୁ କାମରେ ମୁଁ ସହଯୋଗ କରିବି ନାହିଁ । ···କରିବି ନାହିଁ···କରିବି ନାହିଁ ।

ଏଣେ ଶାଶୁ ମଧ୍ୟ ପାଟି ବନ୍ଦକରି ଭାବୁଥାନ୍ତି—ମୁଁ କାହାକୁ କହିବି ନାହିଁ—କହିବି ନାହିଁ—କହିବି ନାହିଁ ।

ଗୋଟାଏ ନିରପରାଧ ସ୍ୱାମୀର ଅସହାୟ ଆଖି ଆଗରେ ତାହାର ନବ ବିବାହିତା ଅପରିପକ୍ୱ ମାନସିକ ସ୍ତରର ଅର୍ଦ୍ଧଶିକ୍ଷିତା ସ୍ତ୍ରୀ ଧୀରେ ଧୀରେ ଖସୁଛି ମାନସିକ ବିକୃତିର ଆବର୍ଡ଼ାଖାବଡ଼ା ବାଟରେ ।

ବୋହୂ ଅମିତା କହୁଛି କିଛି ଲେଖ ନାହିଁ କଟକର ମଙ୍ଗଳା-ବାଗକୁ । ମୋର ଭାବମୂର୍ତ୍ତି ବିଗିଡ଼ିଯିବ । ଭୁବନେଶ୍ୱରର ଦୁଇ ନମ୍ବର

ସୁନନ୍ଦନ୍ତୁ କ'ଣ ଭଲମ ଆସୁଥିଲା କି ନା ଆସୁଥିଲା ଏମ କଥା ମୋର ସେହି ସବ୍-ଷ୍ଟାଣ୍ଡାର୍ଡ ବୋହୂ ଜାଣୁଥିବ । ଆଜର ଦରଘ ଡାକ୍ତର ଭାଇ ସବ୍ୟସାଚି ବାବୁ ରହିଲେଣି କେଉଁଠି ? ଦେବୀପ୍ରସନ୍ନ ବାବୁଙ୍କର ବୁଦ୍ଧିର ଘେରକୁ ଡେଇଁ ସମସ୍ୟା ବଢିଗଲାଣି ।

ବାଥରେ ଠାକୁରଙ୍କର ପୂଜା କରିବା ଛଡ଼ା ଆଉ କ'ଣ ଅଛି ? କେନ୍ଦ୍ରର ଘୋଡ଼ା ଉପରେ ବନ୍ଧା ସାମୀ ବାବୁଙ୍କୁ ଚଢ଼େଇ ଦେଲାପରି ବଡପୁଅ ବ୍ରଜବଲ୍ଲଭ ବାବୁ ନିଜର ସି. ଟି. ଓ ଅକ୍ଷିଚାରେ ଝିଅକୁ ବାହାବେଦୀରେ ଚଢ଼େଇ ଦେଇ ତାଙ୍କର ବଡ ଜୋଇଁ ରଞ୍ଜବାବୁ ଓ ବଡ଼ ବୋହୂଙ୍କର ଭବିଷ୍ୟତ କଳ୍ପନା କରିବାରେ ଆଗ୍ରହୀ । ମାମାଁ କଥା କଏ ପଚାରେ ? ବଡ଼ଲୋକ ଘରର ଗୋଟିଏ ମାତ୍ର ବୋହୂ । ସେମାନେ ମରି, ସରି, ପଡ଼ ପୋତି ହୋଇ ସବୁ ସମ୍ଭାଳ ନେବେ ।

କିନ୍ତୁ କାହାର କାହାର ସାଙ୍ଗରେ ଯୋଗାଯୋଗ ରହିଲା ନାହିଁ । ମୃଣ୍ମୟପ୍ରଭା ଦେବୀଙ୍କର ଶୈଳ ଦେବୀ କେହି ନୁହନ୍ତି । ସମୁଦୁଣୀ ଶାନ୍ତି ଦେବୀଙ୍କର ମୃଣ୍ମୟପ୍ରଭା ଦେବୀ କେହି ନୁହନ୍ତି । ବୋହୂ ଅମିତା ଦେବୀଙ୍କର ମୃଣ୍ମୟପ୍ରଭା ଦେବୀ କେହି ନୁହନ୍ତି । ଭାଇ ସବ୍ୟସାଚି ବାବୁ ଡାକ୍ତର ଓ ଦେବୀ ବାବୁ ସାମ୍ବାଦିକ ଆମର କମ୍ପା ମାମିର ବର, ବା ଭୁବନେଶ୍ୱର କଟକର କମନ୍ ରିଲେସନ୍ ବା କଟେଗ ରିଲେସନଙ୍କର କେହି ନୁହନ୍ତି ।

ଏପରିକି ଶୈଳ ଦେବୀଙ୍କର ଏକମାତ୍ର ଭାଇ ଗୌରପ୍ରସାଦ ବାବୁଙ୍କର ଅଫିସରେ ମୋର ବୋହୂ ଅମିତାର ଭାଇ ଲଡ଼ୁବାବୁ କୋଅପରେଟିଭ ଇନସପେକ୍ଟର । ଗୌରବାବୁ ମଧ୍ୟ କିଛି ଜାଣିଲେ ନାହିଁ । ଗୌର ବାବୁଙ୍କର ସ୍ତ୍ରୀ ଝୁନ ଦେବୀ ପୁରୀ ସହରର ମୋଟସାହୀ ଛକର ଝିଅ । ସେ ମଧ୍ୟ ଜାଣିଲେ ନାହିଁ ।

ସବୁଆଡ଼େ ସମସ୍ତେ ଚୁପ୍‌ଚାପ । ଏଣେ ଗୋଟିଏ ଅସହାୟ ବୋହୂ ଧୀରେ ଧୀରେ ଗଡ଼ୁଛି ବିଷ୍ଫୋରଣ ଆଡ଼କୁ ।

ମୋର ବୋହୂର ବାପା ମାଆ, ମଉଷା ମାଉସୀ, କମ୍ପା ଭାଇ କେହି ଜଣେ ଏହି ଆଣିଙ୍କୁ ସତ ମନେ କରି କଟକର ମଙ୍ଗଳାବାଗ,

ଅବା କଟକର ତେଲଙ୍ଗା ବଜାର ଅବା ଭୁବନେଶ୍ୱରର ନଅ ନମ୍ବର ୟୁନିଟ୍ କିମ୍ବା ତିନି ନମ୍ବର ୟୁନିଟ୍‌ରେ ବାର ବାବୁଙ୍କ ଘରକୁ କିମ୍ବା ଦିଲ୍ଲୀକୁ ଯାଇ ପାରିଲେ ନାହିଁ । ଏପରିକି ଚକାଡୋଳା ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ପାରିଲେ ନାହିଁ ।

ବୋହୂ କଟକକୁ ନ ଆସି ଭୁବନେଶ୍ୱରକୁ ଆସିବାର କାରଣ ମଧ୍ୟ କେହି କେବେ ଥରେ ହେଲେ କାହାରିକୁ ଜଣାଇଲେ ନାହିଁ । ନିଜର ଝିଅ ମାନସିକ ରୋଗୀ କି ନୁହେଁ—ସେ କଥା ମୋର ବୋହୂର ତେଇଶି ବର୍ଷ ଜୀବନକାଳ ମଧ୍ୟରେ ଅଛପା ରହିଗଲା ।

ଆଜି ଏମିତି ନିଆଁକୁ କାନିରେ ବାନ୍ଧି ଲୁଚେଇବା ଫଳରେ ଗୋଟିଏ ଜୀବନ ନଷ୍ଟ ହେଇଗଲା । ଶାଶୂ ଜେଲଖାନା ଦେଖିଲେ ନିଜେ ହୁଏତ ବିକଳ୍ପ କଷ୍ଟ କରିପାରେ ଅବା ନ ପାରେ, କିନ୍ତୁ ମୋର ବୋହୂ ଅମିତାର ମୃତ୍ୟୁ ପାଇଁ ଦାୟୀ ତାହାର ନିଜର ପରିବାର ଓ ଆଜିର ମଧ୍ୟବିତ୍ତଶ୍ରେଣୀ ବନ୍ଧୁ, ଜ୍ଞାତି ଓ ପରାମର୍ଶଦାତାମାନେ ।

ସେମାନେ ନିଜକରେ ହଜେଇ ଫୋଟଗ୍ରାଫ ଉଠାଉଛନ୍ତି । ସାବାସ୍ କରିଣମାନେ, ଏହିପରି କାର୍ଯ୍ୟ ନ କରି କେହି କ'ଣ ମାହାତ୍ମ୍ୟ ହେଇ-ପାରିବ ?

ଆମେରିକା ପ୍ରବାସରୁ ଭଉଣୀ ଲୁସି ଦେବୀ ବା ଇଞ୍ଜିନିୟର ଶରତବାବୁ ଜଣେ ବି ଲୋକ ସାଙ୍ଗରେ ଯୋଗାଯୋଗ କରିପାରିଲେ ନାହିଁ । ହେଇପାରେ ସେମାନେ ମଧ୍ୟ କରିଣଙ୍କ ପରି ଅତ୍ୟନ୍ତ ସ୍ୱାର୍ଥପର ଓ ଅନ୍ୟର ମଲା ଜୀଇଁଲା ସମ୍ବାଦରେ ଏକାବେଳକେ ଉଦାସ ।

ଇଏ ବି ଠିକ୍ । କିନ୍ତୁ ଆଜି ଅମିତାର ମରଣରେ ଏମିତି ଚିତ୍କାର ଆରମ୍ଭ କରୁଛନ୍ତି କାହିଁକି ? ବୋଧହୁଏ ଓଡ଼ିଆ ଲୋକଙ୍କୁ ବୁଝାଇ ଦେବାକୁ ଯେ ସେମାନଙ୍କର ଖାଲି ହୃଦୟ ନାହିଁ, ମସ୍ତିଷ୍କ ମଧ୍ୟ ରହିଛି ।

କଟକରୁ ଦିଲ୍ଲୀ ଗଲାବେଳେ ବାଟରେ ମୋର ବୋହୂ ଅମିତାର ଦାନ୍ତମୂଳ ଖୁବ୍ କଷ୍ଟ ଦେବାକୁ ଆରମ୍ଭ କଲା । ସ୍ୱାମୀ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲା । ବାଟରେ କ'ଣ କରାଯାଇ ପାରିବ ?

ଦିଲ୍ଲୀରେ ପହଞ୍ଚିଲା ପରେ ଡେଣ୍ଟିଷ୍ଟ ପାଖକୁ ଗଲେ । ସେ ଗୃଟିଏ ଫିଟିଙ୍ଗ୍ କରି ମଧ୍ୟ କାମ ପୂରା କଲା ନାହିଁ । କହିଲା ଯେ ଦାନ୍ତ ପାଟିର ନରଭ୍ ବେଗାଡ଼ାନ୍ତ । ଏଗାରଟା ଫିଟିଂ ଦରକାର । ଏଣେ ଗୁକିରିରେ ଛୁଟିର ସମସ୍ୟା ଅଛି ।

ମୋର ବୋଦ୍ଧ, ବଡ଼ପୁଅ ବୋଧହୁଏ ସହାନୁଭୂତି ଅସୁଲ କରିବା ପାଇଁ କେଉଁଦିନ ଆତ୍ମହତ୍ୟା, କେଉଁଦିନ କାନସର, କେଉଁଦିନ ଅଲ୍ସର୍ ଯୋଗ ଇତ୍ୟାଦି ଭଲ ଭଲ ଟପିକ ସୃଷ୍ଟି କରିବାରେ ଲାଗିଥାଏ । ଏଣେ ଅସହାୟ ପୁଅ ତାହାର ମାଆକୁ ଜଣାଉଥାଏ ଯେ ଦାନ୍ତ ସମସ୍ୟା ଛଡ଼ା ଆଉ ଗୋଟିଏ ସମସ୍ୟା ଦେଖା ଦେଲାଣି ।

ମାମୀ ଏକୁଟିଆ ରହିପାରିବ ନାହିଁ । ତେଣୁ ତାହାର ସ୍ୱାମୀ ନାଇଟ୍ ଡ଼ିଉଟିକୁ ଯାଇପାରିବ ନାହିଁ । ଗୃକିରି ରଖିବାକୁ ହେଲେ ନାଇଟ୍ ଡିଉଟି ବାଧ୍ୟତାମୂଳକ । ଦିନ ଡିଉଟି ସକାଳ ଆଠଟାରୁ ସନ୍ଧ୍ୟା ଆଠଯାଏ ମାମୀ ପାଖରୁ ଅନୁପସ୍ଥାନ ।

ଫେରିଲା ବେଳକୁ ଅଶ୍ରୁଳ ମୁହଁ, ବିବଶ ଗୃହାଣୀ ଓ ଦୁର୍ଦଶାର ଟପିକ୍ ହେଲା ବାରଘଣ୍ଟା ଗୃକିରି ପରେ ଅଭ୍ୟର୍ଥନାର ଉପହାର ।

···ଗ୍ଲା ହୋଟେଲ—ମଟର ସାଇକଲ ଅଛି ବୁଲିବା ।···

କି ସୁନ୍ଦର ଟ୍ରେନିଙ୍ଗ୍ ଦେଇ ମୋର ସମ୍ବୁଧିଙ୍କର ପରିବାର ଝିଅକୁ ଉଙ୍ଗା ପାର କରାଇ ଦେଇଥିଲେ । ତଥାପି ସ୍ନେହୀ ଓ ଝିଅରଙ୍କୁଣା ହୋଇଥିବାରୁ ପରାମର୍ଶ ଦେଇଥିଲେ ଯେ ସୁବିଧା ହେଲେ ଆମେରିକା ଯାଇ ଭଉଣୀ ପାଖରେ ଦିନାକେତେ ରହି ମନକୁ ଚେଙ୍ଗା କରିବା ପାଇଁ ।

ମୋର ବୋଦ୍ଧ, ମାମୀ ମଧ୍ୟ ସେଇ ଦରକାରି ବହୁମୂଲ୍ୟ ଲକ୍ଷ୍ୟ-ଗୁଡ଼ିକୁ ବେଶ୍ ଧରିଥିଲା । ସବୁଦିନେ ଦିଲ୍ଲୀରେ ରହିବା । କଟକ ଯିବା ନାହିଁ । ଚଞ୍ଚଳ ସୁବିଧା କରି ଆମେରିକା ଯିବା ।

ସେଥିରେ ବିଘ୍ନ ଆଣୁଥିଲା ସେଇ ଅଦରକାରି ବି. ଏ. ପରୀକ୍ଷା ।

ବାହାଘର ଆଗରୁ କଥା ହେଇଥିଲି ବି. ଏ. ପରୀକ୍ଷାର୍ଥୀ ଶୀଘ୍ର ସାରି ନ ଦେଲେ ପଛକୁ ପିଲିପିଲି ହେବା ପରେ ଅଡ଼ୁଆ ବାହାରିବ । ତେଣୁ ବାହାଘର ପରେ ପରେ ପରୀକ୍ଷା ଯୋଗାଡ଼ କରିବା ।

ସମସ୍ତେ ହଁ ଓ ନିଶ୍ଚୟ ନିଶ୍ଚୟ କଲେ । ଏବେ ଦେଖାଗଲା ଯେ ବୋହୂର ବି. ଏ. ବହିଗୁଡ଼ିକ ଅନ୍ୟ ଭଉଣୀମାନେ ନେଇ ଯାଇଛନ୍ତି । ସେଗୁଡ଼ିକ ଦେଉ ନାହାନ୍ତି ।

ଶ୍ରୀଶୁ ଭାଇ କହୁଥାନ୍ତି ଯେ ଯେମିତି ହେଉ ଯୋଗାଡ଼ କରି ସେ ବହି ସେଠିଁଏ ଦିଲ୍ଲୀ ପଠାଇଦେବେ । କିନ୍ତୁ ଦୁଇ ମାସ ଭିତରେ ଦିଲ୍ଲୀକୁ ପାର୍ସଲ କରିପାରିଲେ ନାହିଁ କାରଣ ତାଙ୍କର ଅନେକ କାମ ।

ରେଭେନ୍‌ସା କଲେଜର ଅଧ୍ୟାପକମାନଙ୍କୁ ପଚାରି ଶାଶୁ ପୂର୍ଣ୍ଣପ୍ରଭା କାମଚଳା ଲେଭେଲ ଉପରେ ବହି ଯୋଗାଡ଼ କଲେ । କିଛି ନୋଟ୍ କିଣିଲେ । ଅଧ୍ୟାପକ କୁଞ୍ଚିଙ୍କର ଲେଖା ବି. ଏ. ଇତିହାସ (ଓଡ଼ିଆ) ମିଳିଲା ନାହିଁ ।

ଅଧ୍ୟାପିକା ଶ୍ରୀମତୀ ଶୈଳବାଳା ପଟ୍ଟନାୟକ ନିଜେ ଇତିହାସରେ ଏମ୍. ଏ. । ସେ ବି କୁଞ୍ଚି ଖୋଜିବା ଆରମ୍ଭ କଲେ । ବିଶଲ୍ୟକରଣୀ ଲକ୍ଷ୍ମଣଙ୍କର ଶକ୍ତିଭେଦ ବେଳେ ଖୋଜା ହେଲା ପରି କୁଞ୍ଚି ବହି ପାଇଁ ମଧୁସୂଦନ ଆଇନ କଲେଜର ଛାତ୍ରସଂସଦ ସଭାପତି ଶ୍ରୀ ସୁରେଶ ମହାପାତ୍ର ନିଜେ ବି ଚେଷ୍ଟା ଆରମ୍ଭ କରିଦେଲେ ।

ବଜାରରେ ଓଡ଼ିଆ କୁଞ୍ଚି ଧରା ପଡ଼ିଲା ନାହିଁ । ସମସ୍ତେ ବିବ୍ରତ । କିନ୍ତୁ ଓଡ଼ିଆ ଇତିହାସ ବହି କିଏ ବା ହାତଛଡ଼ା କରିବ ? ଅନ୍ୟାନ୍ୟ ବିଷୟ ଦଶ ପୃଷ୍ଠା ପଢ଼ିବା ସମୟରେ କୁଞ୍ଚି ଓଡ଼ିଆ ବି. ଏ. ଇତିହାସ ଶହେ ପୃଷ୍ଠା ପଢ଼ି ହେବ । କିନ୍ତୁ ବହି ମିଳିବା ଆଗରୁ ଷ୍ଟୁଡେଣ୍ଟ ନିଜେ ଚାଲିଗଲେ ।

ଯେତେବେଳେ ସେଇ କଲେଜର ପୂର୍ବତନ ପ୍ରେସିଡେଣ୍ଟ ବରିଷ୍ଠ ଆଡ଼ଭୋକେଟ୍ ଶ୍ରୀ ଅମିତାଭ ବାଗଚି ତାଙ୍କର ସୂଚନା ପତ୍ରିକାରେ ଅମିତାଙ୍କର ମୃତ୍ୟୁକୁ ମର୍ଡ଼ର ବୋଲି ଲେଖିଲେ, ବର୍ତ୍ତମାନର ପ୍ରେସିଡେଣ୍ଟ ସୁରେଶ ବାବୁ ପ୍ରତିବାଦ ଜଣାଇଲେ—

ଯେ ବୋଧହୁଏ ଶାଶୁ ତାଙ୍କର ମାଫର୍ଡରେ କୁର୍ମି ବନ୍ଧୁ ଖୋଜାଉ-ଥିଲେ ।

ଏଣେ ସେଇ ମଧୁସୂଦନ ଆଇନ କଲେଜର ଆଉ ଜଣେ ପୂର୍ବତନ (୧୯୬୨) ପ୍ରେସିଡ଼େଣ୍ଟ ଅଧ୍ୟାପିକା ଶ୍ରୀମତୀ ଶୈଳବାଳା ପଟ୍ଟନାୟକ ଏଇ କୁର୍ମି ବନ୍ଧୁ ଅନ୍ୱେଷଣରେ ଜଣେ ଆଗ୍ରହୀ ସୈନିକ ।

ଯୀଶୁ ବାବୁ ଓରଫ ଦେବୀବାବୁଙ୍କୁ ପୂର୍ଣ୍ଣୟପ୍ରଭା ଦେବୀ ପଚାରିଲେ—ମାମୀର କ'ଣ ଦାନ୍ତ ବେମାର ଥିଲା ? ଦିଲ୍ଲୀ ଗଲାବେଳେ ଟ୍ରେନରେ ସେ ବହୁତ କଷ୍ଟ ପାଇଲା ।

—କେଜାଣି, ମାଉସୀ, କେବେ ଦିନେ ତ ମାମୀର ଦାନ୍ତ ବିନ୍ଧା କଥା ଆମେ ଜାଣି ନାହୁଁ ।

—ତେବେ ଇଏ ବୋଧହୁଏ ପ୍ରଥମ ଥର ।

—ହଁ, ସେଇଆ ହବ । ଏଇ ଖରା ଗରମ ଓ ଧୂଳି ପାଇଁ ଦାନ୍ତମୂଳ ଧରି ନେଇଥିବ ।

ନିଜକୁ ଗୃହଲକ୍ଷ୍ମୀ ମନେ କରୁଥିବାରୁ ପୂର୍ଣ୍ଣୟପ୍ରଭା ଦେବୀ ଦେବୀ ବାବୁଙ୍କର ବକ୍ତବ୍ୟକୁ ଗ୍ରହଣ କରି ନେଲେ ଆନନ୍ଦିତ ହୋଇ ଦେବୀବାବୁଙ୍କୁ ଆପ୍ୟାୟିତ କଲେ ।

—ଭଲ ହେଲା । ମୁଁ ଭାବୁଥିଲି ବୋଧହୁଏ କାଳେ ଦାନ୍ତ ବେମାରି ଥିଲା ।

ସାମ୍ବାଦିକତା ବିଶେଷଜ୍ଞ ଚ.ପ୍ର. ରଥ ପଏଣ୍ଟ ନୋଟ କରି ରଖିଲେ । ଏଇ ଶାଶୁ ତାଙ୍କର ଅଲଅଲ ଭଉଣୀର ଦୋଷ କାଢ଼ୁଛି ।

ବୋଧହୁଏ ଦିଲ୍ଲୀରୁ ଫେରିଲା ପରେ କଟକରେ ଡେଣ୍ଟିଷ୍ଟଙ୍କ ପାଖକୁ ଯିବା ଦରକାର ପଡ଼ିଲା—ମଙ୍ଗଳବାର ଅନ୍ତିମ ଦିନ ଆଗରୁ । କାରଣ କଟକର ରହଣୀ ଦିଲ୍ଲୀରୁ ଫେରି ସଂସାର ଛାଡ଼ିବା ଭିତରେ ମାତ୍ର ପଚାଶି ଦିନ ।

ଡେଣ୍ଟିଷ୍ଟ ଦେଖି ବଡ଼ ବିନମ୍ର ହେଲେ । ଦିଲ୍ଲୀ ଡେଣ୍ଟିଷ୍ଟଙ୍କର ଅସମାପ୍ତ କାମଟି ଶେଷ କରିଦେଲେ ।

—ଆଚ୍ଛା, ଏଇ ଦାନ୍ତରେ ଫୁଟ ହୋଇ ତା' ଉପରେ ବଳକା ବସିଗଲାଣି । ଏବେ ଯାଏ ଏଇ ବୋହୂ ସମ୍ଭାଳ ସହିଲେ କେମିତି ?

—କେଜାଣି । ହୁଏତ ସହିବା ଶକ୍ତି ବହୁତ ହୋଇଥିବ ।

—ଏସବୁ ବାପ ମାଆଙ୍କର ଦୋଷ । ଦାନ୍ତଟା ନଷ୍ଟ ହୋଇଗଲା । ଆଗରୁ ଚିକିତ୍ସା କରିଥିଲେ ଦାନ୍ତଟା ରହିଯାଇଥାନ୍ତା ।

—ଆମେ କ'ଣ କରିବୁ ? ଆମେ ତ ମୋଟେ ଜାଣୁ ନାହିଁ ଯେ ଏଇ କମ୍ପା ବୟସରେ ବୋହୂର ଦାନ୍ତ ବେମାରି ଅଛି ବୋଲି । ଯାହାହେଉ ତାହାର ସେଇ ଦାନ୍ତ ଉପୁଡ଼ା ହେଉ ଓ କହିବା ପ୍ରକାରେ ଆଉ ଗୋଟାଏ ଦାନ୍ତର କୋରଡ଼କୁ ଫିଲିଙ୍ଗ କରାହେଉ ।

ଘରକୁ ଫେରି ବୋହୂ ଅମିତା ଖୁବ୍ ରାଗିଗଲା ସେଇ ଡାକ୍ତରଙ୍କ ଉପରେ ।

—ମୋର ତ ଦାନ୍ତ ଖରାପ ହେଲା । ବାପ ମାଆ କ'ଣ କରିଥାନ୍ତେ ?

—ନାହିଁ । ଡାକ୍ତର କହୁଥିଲେ ଯେ ବାପା ମାଆ ଏଇଟାକୁ ତଦାରଖ କରିଥାନ୍ତେ ।

—କେମିତି ? ଦାନ୍ତ ତ ରହିଲା ମୋର ପାଟି ଭିତରେ । ବାପା ମାଆ ଜାଣନ୍ତେ କେମିତି ଯେ ଡାକ୍ତର ସେମାନଙ୍କ ଦୋଷ ଦେଲେ ?

କଟକ ଘରକୁ ନାପସନ୍ଦ କରୁଥିବା ବୋହୂ ଅମିତାର କ୍ରୋଧ ଦେଖି ଶାଶୁ ଡରିଗଲେ । ବୁଝାଇ କହିଲେ ଯେ ଡାକ୍ତରମାନେ ସେମିତି କହନ୍ତି । କେହି ତାଙ୍କର କଥାକୁ ଧରନ୍ତି ନାହିଁ ।

ଗୋଟାଏ ରକମର ମିଟ୍‌ମାଟ୍ ହେଲା । ରକ୍ତ ଜମାଟ ଆଦି ପରୀକ୍ଷା କରା ହୋଇ ତିନୋଟି ଦାନ୍ତର କାମ ହେଲା—ଦୁଇଟି ଦାନ୍ତ ବିଦାୟ ନେଲେ ଓ ଗୋଟିଏ ଦାନ୍ତ ମରାମତି ହୋଇ ନୂତନ କଲେବର ହେଲେ ।

ଡାକ୍ତର ମହାପାତ୍ରଙ୍କ ଏଇ ସମ୍ବାଦଟି କେବେ ମିଳି ନଥିଲା । ତେଣୁ ସେ କଲିକତାର ଜଣେ ଓଡ଼ିଆ ସ୍ପେସାଲିଷ୍ଟ ହୋଇ ସେଠାରେ

ଆଗୁଆ ସ୍ଥାନ ଧରି ନେଇଥିଲେ ବି ତାଙ୍କର ଭଉଣୀର ତିନୋଟି ଦାନ୍ତ ଖତମ୍ ହେଲା ପରେ ବି ସମ୍ବାଦ ପାଇପାରିଲେ ନାହିଁ ।

କାରଣ ଡାକ୍ତରଙ୍କୁ ଜଣାଇବା ରୋଗୀର ଇଚ୍ଛାଧୀନ ମତ । ଆଉ ଡାକ୍ତର ମଧ୍ୟ ବିନା ସମ୍ବନ୍ଧ ଅନୁରୋଧରେ ରୋଗୀ ଦେଖିବା ଡାକ୍ତରଙ୍କର ହାଇପୋକ୍ରେଟିକ ଶପଥର ବିରୁଦ୍ଧାଚରଣ ।

ଆମର କରଣ ସମାଜରେ ଡାକ୍ତର ସର୍ବ୍ୟସାଚୀ ପଟ୍ଟନାୟକ ବାବୁଙ୍କର ଆଦର୍ଶରେ ଅନୁପ୍ରାଣିତ ଅସଂଖ୍ୟ ଡାକ୍ତର ବାହାରିଲେ ରୋଗୀମାନଙ୍କର ଭାଗ୍ୟରେଖା ବଦଳିଯିବ ।

ମୋର ବୋହୂଟା ଗୋଟିଏ କଷ୍ଟ ସହିଷ୍ଣୁ ହୋଇଥିବାରୁ ବୋଧହୁଏ ଏତେ ଝଡ଼ ସମ୍ଭାଳି ଗଲା ।

ମୋର ସମୁଧି ବ୍ରଜବାବୁ ଜଣେ ଆଦର୍ଶ ସାଧକ—ହେବାର କଥା । କାରଣ ଓଡ଼ିଆ ମଠ କହିଲେ ଓଡ଼ିଶାର ଦେବୋତ୍ତର କମିସନ-ରଙ୍କ ଅଫିସର ମଧ୍ୟ ମୁଣ୍ଡ ନୁଆଁଇ ଦିଅନ୍ତି ।

ପୁରୀର ଓଡ଼ିଆ ମଠକୁ ଦେବୋତ୍ତର ଅଧୀନକୁ ନେବାକୁ ଜଣେ କାର୍ଯ୍ୟବାହୀ ତଦାରଖ କରୁଥିଲେ । ସେହି ଅଫିସର ଯେତେବେଳେ ଯାଉଥିଲେ ଦେଖୁଥିଲେ ଯେ ମହନ୍ତ ମଠ କାମରେ ଲାଗିଛନ୍ତି । ଓଡ଼ିଆ ମଠର ପରିଚାଳନାରେ କ'ଣ ବା ଦୋଷ ଲେଖିବେ ?

ଓଡ଼ିଆ ମଠ ବିରୁଦ୍ଧରେ କିଛି ହେଲା ନାହିଁ ।

ଏଇ ସେଇ ଓଡ଼ିଆ ମଠ । ଏହାରି ପାଣି ପବନ ଓ ଅନ୍ନରେ ମୋର ସମୁଧିଙ୍କର ହାଡ଼ମାଂସ ତିଆରି । ଏଇ ମଠର ପ୍ରତ୍ୟକ୍ଷ ଠାକୁର ଥାଆନ୍ତି ବୋଲି ଅନେକଙ୍କର ବିଶ୍ୱାସ ।

ଓଡ଼ିଆ ମଠର ଜଣେ ଲା' ଏଜେଣ୍ଟ ଚଞ୍ଚକତା କରି କିଛି ଠାକୁର ସମ୍ପତ୍ତି ଆତ୍ମସାତ୍ କଲେ । ମହନ୍ତ ବିରକ୍ତ ହୋଇ କହିଲେ—ମତେ କହିଥିଲେ ମୁଁ ଦେଇ ପାରିଥାନ୍ତି । ଏମିତି କରିବା ଭୁଲ ହେଲା ।

ଠିକ୍ ଏହାପରି କହନ୍ତି ତେଲଙ୍ଗା ବଜାରର ବ୍ରହ୍ମକୁମାରୀ ଅନୁ-ଷ୍ଠାନର ପ୍ରଧାନ ସେବିକା ବ୍ରହ୍ମକୁମାରୀ ସୁଶୀଳା । ସେଇ ଅନୁଷ୍ଠାନର

ଦାମିକା ଷ୍ଟେନଲେସ ବାସନକୁ ଋକରାଣୀ ହାତରେ ପାଚେରୀ ଡ଼ିଅାଁଇ ରୁଚିଆଡ଼ର ସନ୍ଥମାନେ ଧରନ୍ତି—ଶଳା ମାରୁଆଡ଼ୀ ଦାମିକା ବାସନରେ ଖାଉଛନ୍ତି ।

ବ୍ରହ୍ମକୁମାରୀ ଅନୁଷ୍ଠାନ ବାରମ୍ବାର ନୂଆ ବାସନ କଣନ୍ତି । କିନ୍ତୁ ନେବା ବାଲା ଓ ଦିଆଇବାବାଲା କାହାରି ଉପରେ ଅଭିଯୋଗ କରନ୍ତି ନାହିଁ ।

ସେହିପରି ବାବୁ ମୁରାରି ଜେନା ମାର୍ଟ, ଭଗତପୁରର ସାଧକ ବଇନ ନନା । ତାଙ୍କର ଘରର କିଛି ଅଂଶ ଋଲିଗଲା । ଲୋକେ ଲଇନ୍ ଲଗାଉଥାନ୍ତି ବଇନ ପଣ୍ଡିତଙ୍କର ଦୁଆରେ ।

ତାଙ୍କୁ ଜଣେ ପଋରିଲା—ଆପଣଙ୍କର ଘରଟାକୁ ପୂର୍ବ ରଖିବାରେ କ'ଣ ଅସୁବିଧା ଥିଲା ?

—କିଛି ନାହିଁ ଯେ । ମାଆ ଇଚ୍ଛାରେ ଯେତିକି ରହିବା କଥା ରହିବ ଓ ଯେତିକି ଯିବାର କଥା ଋଲିଯିବ ।

ଅମିତାର ମର ଦେହର ଶେଷ ଘର୍ଥ କଟକ ଖାନନଗରର କାଳିମନ୍ଦିରର ପାଖ ଶ୍ମଶାନରେ ବଇନ ପଣ୍ଡିତ ପ୍ରାପ୍ତ ସବୁ ସମସ୍ତ ଥାଆନ୍ତି ।

ଏହି ସାଧକ ସାଧିକାମାନେ ଯେଉଁ ମତ ଦେଇ ବିଋର କରୁଥିଲେ ପୁରୀ ଓଡ଼ିଆ ମଠର ମହାନ୍ତ ତାହାରି ସମ୍ମକକ୍ଷ ମତ ଦେଇଥିଲେ ତାଙ୍କର ଲ' ଏଜେଣ୍ଟଙ୍କୁ—ସେ ବିଶ୍ୱାସଘାତକତା କରିଥିଲା ।

କିଛିଦିନ ପରେ ଓଡ଼ିଆ ମଠ ଲ' ଏଜେଣ୍ଟ ମରିଗଲେ ।

ଏହାର ଅଳ୍ପ ଦିନରେ ଗୋଟିଏ କୁକୁର ଛୁଆର ଜନ୍ମ ଓ ଆଖି ଖୋଲିଲା । ସେଇ ଛୁଆଟି ମଠ ଭିତରକୁ ପଶି ମହାନ୍ତଙ୍କର କଠଉକୁ ଧରି ଶୋଇ ରହେ ।

ଭକ୍ତମାନେ ଘୃଣା କରନ୍ତି । କିନ୍ତୁ ମହାନ୍ତ କହନ୍ତି—କୁକୁରଟାକୁ ତଡ଼ ନାହିଁ । ସେ ତାହାର ପାପ ପାଇଁ ଅନୁତାପ କରୁଛି ।

ଇଏ ହଉଛନ୍ତି ଓଡ଼ିଆ ମଠର କମ୍ବଦନ୍ତୀ । ଏହାଙ୍କୁ ଜାଣିଥିବା ଲୋକ ଏବେ ମଧ୍ୟ ପୁରୀ ଓ କଟକର ଓକିଲଖାନାରେ ମିଳୁଛନ୍ତି ।

ସଂସାରର ଧାରା ତାହାର ଗତି ଚାଲିଛି । ସଂସାର ହେଉଛି ଘଟନାର ଧାରା ପ୍ରବାହ ।

ଯାହା ଯେଉଁ ପ୍ରକାରରେ ଘଟିଲା ସେ ସେଇ ପ୍ରକାରରେ ଆପଣା ସ୍ୱୟଁ ଘଟିଛି । ଅନ୍ୟ ପ୍ରକାରରେ ଘଟି ନାହିଁ । ସ୍ୱୟଂ ଭବତି ଯଦ୍ୟଥା, ଭବତି ତତ୍ତଥା ନ ଅନ୍ୟଥା ।

ଏହି ମଠକୁ ଜୀବନ ଯାତ୍ରାରେ ଅନେକ ଲୋକ ମିଶାଇ ଥାଆନ୍ତି ପରିଣତ ବୟସରେ । ସେମାନେ—

କଟକର ଗୋପାଳଗାଡ଼ିର ବିଶିଷ୍ଟ ଧନୀ ଓ ଆଡ଼ଭୋକେଟ୍ ଶ୍ରୀ ଭୂପେନ୍ଦ୍ର କୁମାର ବସୁ ଓ କଟକର ପେନସନ୍ ଲାଇନ ପଟ୍ଟାପୋଲର ବିଶିଷ୍ଟ ଶିଳ୍ପପତି, ଜମିଦାର ଓ ଚନ୍ଦ୍ରାନାୟକ ଚୌଧୁରୀ ନରେନ୍ଦ୍ର ନାଥ ମିଶ୍ର ।

ସେମାନେ କହନ୍ତି ଯେ ନବ-ଧନ-ମଧୁ ପାନ କରି ନିଶାରେ ନୂଆ ଧନୀ ବିଭ୍ରାନ୍ତ ହୋଇ ନିଜକୁ ଓ ଅପରକୁ ବ୍ୟସ୍ତ କରେ ।

ଶିକ୍ଷା ଓ ଯୋଗ୍ୟତାର ଅନେକ ବାଧାକୁ ଅତିକ୍ରମ କରି ମୋର ନବ-ଧନୀ ସମ୍ବନ୍ଧୀ ବ୍ରଜବଲ୍ଲଭ ବାବୁ ଏବେ ତାଙ୍କର ଶହେ ପନ୍ଦର ଦିନର ସମ୍ବନ୍ଧ ବଂଶକୁ ବିଲୋପ କରିବାକୁ ବାହାରିଲେଣି ।

୧୯୮୪ ଅଗଷ୍ଟ ଚଉଦ ସନ୍ଧ୍ୟାରେ ସେ କଟକ ଆସି ଦରିଧୀଭୂତା ଝିଅ ମାମୀକୁ ଦେଖି ଚିତ୍କାର କଲେ ।

—ମାମୀ ଲୋ । କେତେ ଆଶା ରଖିଥିଲି ତୋ'ଠି । ଏମିତି କରିଦେଲୁ । ହଉ ଜଗନ୍ନାଥଙ୍କୁ ଜଣେଇ ଦେଇ ଯାଆ ଯେ ଏଇ ହରମୋହନ ପଟ୍ଟନାୟକର କୂଳରେ ଘାପ ଦେବାକୁ କେହି ରହିବେ ନାହିଁ ।···ଉଚିତ୍ କଥା । ପିକ୍‌ପକେଟ ମଧ୍ୟ ଅନେକ ଶାସ୍ତ୍ର ଜାଣେ । ମୋର ସମ୍ବନ୍ଧୀ ତ ଓଡ଼ିଆ ମଠରେ ଶାସ୍ତ୍ର ବୁଝିଛନ୍ତି ।

*

ମୋର ବୋହୂର ସାଙ୍ଘାତିକ ଅବସ୍ଥାର ଟେଲିଫୋନ ପାଇ ଭୁବନେଶ୍ୱରରୁ ମୋର ସମୁଧି କହିଥିଲେ—ଆଉ ମୁଁ ଯିବ କାହିଁକି ? ଏତେ ପୋଡ଼ ହୋଇ ବଞ୍ଚିଲେ ବ ସେ କୁଆଡ଼କୁ ହେବ ? ବରଂ ସେ ମରିଯାଉ ।

କହିଲେ ସିନା । ତେବେ ମନ ଟାଣିକଲା । ଆସିଗଲେ କଟକ । ସନ୍ତୁଙ୍କ ସହିତ କଥା ହେଲେ । ଫଟୋଗ୍ରାଫର ଧରି କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ହସପିଟାଲରେ ସନ୍ଧ୍ୟା ସାଢ଼େ ଆଠଟା ବେଳକୁ ପହଞ୍ଚିଲେ । ଝିଅକୁ କାଜୁଆଲ୍‌ଟିରୁ ଫିମେଲ ସର୍ଜିକଲକୁ ନିଆଇଲେ । ତା ପରେ ଆରମ୍ଭ ହେଲା ଅଭିଯୋଗର ଫର୍ଦ । କଥାରେ କାମରେ କରି ହୋଇ ଖବର କାଗଜ ମାଧ୍ୟମରେ ପ୍ରଚାରିତ ଫର୍ଦ ।

ଦେଇଥିଲେ ସିଲକ୍, ସୂତା, ସିନ୍ଥେଟିକ ନୂଆ ପୁରୁଣା ସାୟା ବ୍ଲାଉଜ ସାଢ଼ୀ ସବୁ ମିଶି ବାର ଖଣ୍ଡ । ଦାମ୍ ଅନୁମାନରେ ଦେଢ଼ ହଜାର ଟଙ୍କା । ବଦଳରେ ବୋହୂ ପାଇଁ ପୁଅ ଆଣିଥିବା ଶାଢ଼ୀ ଦଶଟିରେ ଦେଢ଼ ହଜାର ଟଙ୍କା ।

ଝିଅର ଗହଣା ଆନୁମାନିକ ପାଞ୍ଚ ତୋଳାକୁ ଶାଶୂ ଘରର ସୁନା ଚୁଡ଼ି ଗୁଞ୍ଜଭରି ଓ କାନ ଗହଣା । ମୋଟ ମୋଟି ସମାନ ।

ଝିଅର ଓ ପୁଅର ଗୋଟିଏ କରି ଅଧା ନୂଆ ଭି. ଆଇ. ପି. ସୁଟକେସ୍ ଓ ଝିଅର ତିଣି ସୁଟକେସ୍‌ରେ ତାହାର ଠାକୁର ।

ଏହା ଛଡ଼ା ନଣନ୍ଦ ସୁଟିଲି, ଶାଶୂ ପୁଣ୍ୟପ୍ରଭା ଦେବୀଙ୍କ ପାଇଁ ଖଣ୍ଡେ ସମ୍ବଲପୁରୀ ସିଲକ ଶାଢ଼ୀ । ଏହା ପରେ ରହିଲା କାଠ ଜଳଖିଆ ଓ ଲୁହା ଆଲମାରୀ ଓ ଗୋଟିଏ Clock-Radio.

ମୋର ସମୁଧି ହିସାବ ଜାଣନ୍ତି । ସେ ଏହାର ମୂଲ୍ୟ କହି ପାରିବେ । ତାଙ୍କର ସି. ଟି. ଓ କାର୍ଯ୍ୟରେ ଏସବୁ ମାନସାଙ୍କ ପରି କଥା ।

କିନ୍ତୁ ସମୁଧିଙ୍କର ଅଭିଯୋଗ ଯେ ସେ ଅଫିସରୁ ଟଙ୍କା ଧାର କରିଛନ୍ତି । ମାସକୁ ମାସ ଦରମାରୁ କଟୁଛି ।

ହବାର କଥା । କାରଣ ବଡ଼ ଝିଅ ଓ ଜୋଇଁଙ୍କୁ ଆମେରିକା ପଠାଇବା ଟଙ୍କାର ଖର୍ଚ୍ଚ ବିଷୟରେ ଆମ ବୋହୂ ମାମୀ ଉପରେ କାହିଁକି ମଢ଼ିବ ? ସେ ତ ବାହାଘରୁ ଆସିଥିବା ଶାଢ଼ୀ ମାନ ଘରେ ନେଇ ଦାନ କରିଥିବାରୁ ଶାଶୁ ବୋହୂ ମତାନ୍ତର ହେଉଛି ଅଭିଯୋଗର ଗୋଟିଏ ଆଇଟେମ୍ ।

ବାହାଘରର ଛଅମାସ ଭିତରେ ଝିଅ ଆସି ବାପଘର ସାମାନ୍ ପୁଣି ବାପ ଘରେ ଥୋଇବା କେବଳ କରଣ ସମାଜରେ ଦେଖାଯାଇ ପାରେ । ଅନ୍ୟମାନେ ପକାଇଲା ଥୁପ ଚାଟନ୍ତି ନାହିଁ ।

ଯାହା ହେଉ ସମୁଧିଙ୍କର ଯୌତୁକକୁ ମାଢ଼ି ବସି ରଖିବା କାହାର ଇଚ୍ଛା ନୁହେଁ । କିନ୍ତୁ ଏବେ ଡାଓରୀ ଡେଥ କରି ମଡ଼ରର ଅଭିଯୋଗ ରଖି ବିଭିନ୍ନ ଆଇନ ସଂରକ୍ଷକ ସଂସ୍ଥାକୁ ଲେଖି ଲୁଗୁଇ ଜିନିଷ ନେଇଗଲେ କିଏ ଜାଣେ କିଏ କେଉଁଠି ରକ୍ତ ଲଗାଇ ଦେଇ ମଡ଼ର ପ୍ରମାଣ ନ କାଢ଼ିବ ?

ସେଥିପାଇଁ ଜଣେ ବାହାରିଆ ମାମୁଁ ରାଜକିଶୋର ପଟ୍ଟନାୟକ ସେପ୍‌ଟେମ୍ବର ମାସ ଅଧରୁ କଟକ ଓ ଭୁବନେଶ୍ୱରର ଖବରକାଗଜର ସମ୍ପାଦକମାନଙ୍କୁ ମୋର ସମୁଧିଙ୍କର ଦିଆ ଯୌତୁକ ତାଲିକା ମଗାଇ ଥିଲା ।

ଇଂରେଜୀ ଓ ଓଡ଼ିଆ କାଗଜମାନେ ଚିଠିକୁ ଗ୍ରାହ୍ୟ କଲେ ନାହିଁ । କେବଳ ଆର. ଏସ. ଏସ୍ କାଗଜ କଟକର ସ୍ୱସ୍ତିପଥର ସମ୍ପାଦକ ଶ୍ରୀ ଦେବେନ୍ଦ୍ର ମହାନ୍ତି ଉତ୍ତର ଦେଲେ ଯେ ଦୁଇ ସମୁଧିଙ୍କର ଘରୋଇ ବିବାଦରେ ସେ ପକ୍ଷ ନେବେ ନାହିଁ ।

ବାଧରେ ଓଡ଼ିଶା ସରକାରଙ୍କର କୃଷି ସେକ୍ରେଟରୀଙ୍କୁ ୨୭।୯।୮୪ରେ ମୋର ସମୁଧିଙ୍କର ସମର୍ଥିତ ସନାକ୍ତ ଯୌତୁକ ତାଲିକା ମଗା ଯାଇଛି । ବୋଧହୁଏ ଆଇନ ପରାମର୍ଶ ଆଇନ ମନ୍ତ୍ରଣାଳୟରୁ ନିଆ ଯାଉଛି କିମ୍ବା ଚିଠିଟା ଗ୍ରହଣ ଯୋଗ୍ୟ ହେଲେ ବି ବିଚାରଯୋଗ୍ୟ ନୁହେଁ ବୋଲି ଲେଖାଯାଇ ରଦ୍ଦିକାଗଜ ଆଡ଼କୁ ମୁହାଁଇ ରଖା ଯାଇଛି ।

ସମୁଧିଙ୍କୁ ଅସୁବିଧା ହେଉଛି ଯେ ସରକାରୀ ଭାବରେ ଅଧିକ ସୁନା ବୟାନ କଲେ ନିଜେ ଫୌଜଦାରୀ ମକଦ୍ଦମାରେ ତଦନ୍ତ ପରିସରକୁ ଆସି ଯିବେ । ଆଉ ନିଜର ସାଧୁତା ମଧ୍ୟ ପୂରା ମାପଚୂପ୍ ହେଇଯିବ—ହାତେ ହାତେ ।

ସେଥିପାଇଁ ମୋର ବୋହୂର ଲୁଗାପଟା ଧୋବା ଘରୁ ଆସି ଯେଉଁଠି ରଖା ହୋଇଥିଲା ସେଇଠି ସେମିତି ସେମାନେ ଥୋଇଛନ୍ତି । ଏସବୁ ଶାଶୁ ଘର ବ୍ୟବହାର କରିବେ ନାହିଁ । ଛିଟିପିଟି ଓ ପୋକ ଯାହା ବଳାଇ ରଖିବେ ସେତକ ବାପ ଘର ନେଇ ପାରନ୍ତି । ସାଙ୍ଗରେ ତାଙ୍କର ତଥାକଥିତ ଭି. ଆଇ. ପି ଜିନିଷକୁ ମଧ୍ୟ ଆପଣା ଟ୍ରକରେ ନେଇ ପାରନ୍ତି । କିନ୍ତୁ ପୁଲିସ ସାହେବଙ୍କର ମୁକାବିଲା ଅନ୍ତରରେ ନେବେ ।

କାରଣ କଟକ ସମୁଧି ଘର ମୋର ଏଇ ସମୁଧି ଘରର ଧୋକାବାଜି ଆଚରଣ ଦେଖି ଅତ୍ୟନ୍ତ ବିବ୍ରତ ।

ଏଇ ସମୁଧିଙ୍କର ଇଜ୍ଜତ ରଖିବା ପାଇଁ ଓଲମୀ ପୂର୍ବ୍ୟପ୍ରସ୍ତ ଦେବୀ ତାଙ୍କର ସ୍ୱାମୀଙ୍କୁ କଡ଼ା ବିସ୍ତାଦ ଦେଇଥିଲେ—

ଯୌତୁକ ତାଲିକା ନିଜେ ହେପାଜତରେ ରଖିବ । ବରଯାତ୍ରୀ ଗହଳି ଭାଙ୍ଗିଗଲେ ସୁଟକେସ ଗୁଡ଼ିକ ନିଜର ପକେଟରେ ରଖିବ । କାହାରିକୁ ଦେଖାଇବ ନାହିଁ ।

ସେଇଆ ବି ହେଲା ।

ବୋହୂ ସାଙ୍ଗରେ ଜିନିଷ ଅନଲୋଡ଼ ହେଲା ବେଳେ ଶାଶୁ ଠିଆ ହୋଇ ପଚାରୁଥାନ୍ତି—ଆଉ କ'ଣ ଅଛି ମଟରରେ ?

—ନା, ଆଉ କିଛି ନାହିଁ ।

ଯେଉଁ ଜିନିଷ ଆସିଥିଲା ସେତକ ନେଇ ଗୋଟାଏ ଜାଗାରେ ବନ୍ଦ କରି ତାଲା ଠୁକି ଦେଇ ଗୁଡ଼ିକୁ ନିଜ ପାଖରେ ରଖିନେଲେ ।

କଟକରୁ ଓ ଭୁବନେଶ୍ୱରରୁ ଅନେକ ପୁରୁଷ ସ୍ତ୍ରୀ ଆସି ବୋହୂ ଜିନିଷ ଦେଖିବାକୁ ଖୋଜିଲେ । ସେତେବେଳକୁ ଗୁଡ଼ିକ ହଜିଗଲା । କେହି କିଛି ଟେର ପାଇଲେ ନାହିଁ ।

କାରଣ ସମସ୍ତେ ଚିହ୍ନି ଥାନ୍ତୁ—ଦେଖିବା କେମିତିକା ବୋହୂ, ଆଉ କେମିତିକା ଜିନିଷ । ପୂର୍ଣ୍ଣ୍ୟପ୍ରଭାଙ୍କୁ ମୁହେଁ ମୁହେଁ ବଖାଣିବା ।

ବୁଦ୍ଧିଆଙ୍କର ବୁଦ୍ଧିର ସୀମା ସରହଦ ଥାଏ । କିନ୍ତୁ ଓଲିଙ୍କର ବୁଦ୍ଧିର ସୀମା ନ ଥାଏ ।

ବାଇଶିରେ ବିଭା । ତେଇଶିରେ ବୋହୂର ଗୃହ ପ୍ରବେଶ । ଚବିଶିରେ ବୋହୂ ସମ୍ବର୍ଦ୍ଧନା । ପଚିଶିରେ ଚଉଠି । ହାତରେ ତ କମ୍ ସେ କମ୍ ଦିନେ ଅଛି ।

ବୁଦ୍ଧି ଖଟାଇ କଟକ ମାର୍କେଟରୁ କିଛି ଶାଢ଼ୀ ଆଣି ବୋହୂ ବାକ୍ସରେ ରଖି ଦେଲେ । ନିଜର ଗହଣା ଓ ନିଜର ବନ୍ଧୁବାନ୍ଧବଙ୍କ ଘରୁ ଗହଣା ମଗାଇ ବୋହୂକୁ ସମ୍ବର୍ଦ୍ଧନା ପାଇଁ ତିଆରି କରିଦେଲେ ।

ମୋର ସମୁଧି ଖୁସି । ଯାହା ହେଉ ଝିଅ ମାମୀର ଯୌତୁକ ପରିମାଣ ଆପଣା ଛୁଏଁ ଶନି ସିଗ୍ ମିଶି, ବାନ୍ଧିଲି ପରି ବଢ଼ୁଛି । ଏବେ ସେଇ ମିଶ୍ରିକୁ ଧରିବାକୁ ମୋର ସମୁଧି ବାହାରିଲେଣି । ମାମୀ ମରିବାର ଚଉଦ ଦିନରୁ । ପୁଣି ସେ ବାପାର ଝିଅ ପାଇଁ ଦରଦ ।

ପୂର୍ଣ୍ଣ୍ୟପ୍ରଭା ଦେବୀ ଯଦି ସମସ୍ତଙ୍କୁ ବୋହୂ ବସ୍ତ୍ର ଠାରୁ ଆରମ୍ଭ କରି ବୋହୂର ହକପ୍ରୁତ ଯୌତୁକ ଓ ବୋହୂର ଲୋକଙ୍କର ଭିତର ଓ ବାହାର ଦେଖାଇ ଦେଇଥାନ୍ତେ ତାହା ହେଲେ ଆଜି ତାଙ୍କ ନାମରେ ବୋହୂକୁ ଅତ୍ୟାଚ୍ଚର କରି କରି ହତ୍ୟା କରିବାର ଚକ୍ରାନ୍ତର ପ୍ରମାଣ ସମୁଧି ଘର ବୋଧହୁଏ କାଢ଼ି ନଥାନ୍ତେ ।

ସେ ଯାହା ହେଉ ବାଇଶି ଅପ୍ରେଲ ଥିଲା ଅଶୁଭ ଦିନଟିଏ ।

ବର ଶ୍ରୀ ଶୁଭେନ୍ଦୁ ପଟ୍ଟନାୟକ ଓରଫ ଜୀବନ ପଟ୍ଟନାୟକ ଓରଫ ବିବି ଯୋଡ଼ ସଂଖ୍ୟାର ବିବାହ ଦିନକୁ ରାଜି ନ ଥିଲା । ବାପା ଶ୍ରୀ ହିମାଂଶୁ ପଟ୍ଟନାୟକ ଓ ଶଶୁର ଶ୍ରୀ ବ୍ରଜବଲ୍ଲଭ ପଟ୍ଟନାୟକ ଓ ସଢ଼ୁ-ଶଶୁର ଶ୍ରୀ ବିଜନ ରାୟ ମିଶି ବାଇଶି ତାରିଖ ରାତି ବାରଟା ପରେ ଇଂରାଜୀ ତାରିଖ ତେଇଶି ଠିକ କରି ବାହାଘର କରିଦେଲେ । ବାହା ଦିନ ଧାର୍ଯ୍ୟ

ହେଲା ବର ଦିଲ୍ଲୀ ଯିବା ପରେ । ତେଣୁ ବଡ ଆଉ ତାରିଖ ବଦଳାଇ ପାରିଲେ ନାହିଁ ।

ଏଣେ ବାହାଘର ପରେ ଦେଖାଗଲା ଯେ ପ୍ରତ୍ୟେକ ମାସର ବାଇଶି ତାରିଖ ଧନ କାରଣ ନ ଥାଇ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ବହୁତ କଳି କଜିଆ ହୁଏ । ଏମିତି ହେଇଥିଲା ବାଇଶି ମେ'ରେ ଦିଲ୍ଲୀରେ । କାରଣ ହେଇଥିଲା ସେଇ ହପ୍ତାରେ ଟ୍ରେନରେ ଦାନ୍ତ ବନ୍ଧା ଆଉ ଲମ୍ବା ଟ୍ରେନ ଯାତ୍ରା ଏବଂ ଦିଲ୍ଲୀର ରହଣୀ ନେଇ ।

ତା'ପରେ କଳିଗୋଳ ହେଲା ବାଇଶି ଜୁନରେ ଦିଲ୍ଲୀରେ ଥିଲ ବେଳେ—ନଣନ୍ଦ ବାହାଘରକୁ କେତେ ଟଙ୍କା ସାହାଯ୍ୟ ବଡ ଓ ମାମୀ ଦେଇ ପାରିବେ ଓ ଦେବା ଉଚିତ୍—ଏଇ ପ୍ରସଙ୍ଗ ନେଇ ।

ଭାଇ କହିଲ ଯେ ବାହାଘରକୁ ଏମିତି ସେମିତି ହେଲେ ଲକ୍ଷେ ଟଙ୍କା ଲାଗିଯିବ । ବାପାଙ୍କର ଗ୍ରାଚ୍ୟୁଇଟି ସବୁ ଆସୁଛି । ଭାଇ ଭାଉଜଙ୍କୁ ଦେବାକୁ ହେବ ।

ମୋର ବୋହୂ ପ୍ରତିବାଦ କରିଥିଲା ଯେ ତାହାର ବାହାଘରେ ଏତେ କଥା ହେଇ ମୋଟେ ଅଶି ହଜାର ଟଙ୍କା ବାପା ବ୍ରଜବଲ୍ଲଭ ବାବୁ ଖର୍ଚ୍ଚ କରିଥିଲେ । ଏଠି ଏତେ ଟଙ୍କା ଲାଗିବ କ'ଣ ପାଇଁ ? ନଣନ୍ଦର କିଛି ଗହଣା ଅଛି । ଶାଶୂଙ୍କ ପାଖରେ ବ କିଛି ଥାଇ ପାରେ ।

ସେଇଠୁ ବୋହୂ ମୋର କହିଲା ଯେ ତାହାର ପ୍ରତ୍ୟେକ ଭଉଣୀଙ୍କ ବାହାଘରେ ପ୍ରତ୍ୟେକ ଭଣୋଇ ଓ ମାଉଷୀ ଦୁଇ ହଜାର ଟଙ୍କା ଦେବାର କଥା ଥିଲା । ଏବେ ସେମାନଙ୍କର କୁଟୁମ୍ବ ବଢ଼ିବାରୁ ମାମୀକୁ ବାଧ୍ୟରେ ସେମାନଙ୍କ ପାଇଁ ଅଧିକରୁ ଅଧିକ କରିବାକୁ ହେବ ।

ବାହାଘରର ଦୁଇଟା ମାସରେ ବର ଓ କନ୍ୟାଙ୍କର ସାମାଜିକ କର୍ତ୍ତବ୍ୟର ଆଭିମୁଖ୍ୟ ନେଇ କଳି ହେଲା । ବିଚରା ବଡ ବାବୁ ଭାବୁଥାଏ ସେ ଯୋଡ଼ା ଧନକୁ ସେ ମନା କରୁଥିଲା । ଏଣେ ଦୁଇଥର କଳି ହେଇ-ଗଲାଣି ।

ତୃତୀୟ ବାଇଶି ତାରିଖ ଆସିଲା ଜୁଲାଇ ବାଇଶିରେ । ସେ ଧନ ସେମାନେ କଟକରେ । ବଡ ବାବୁଙ୍କ ଜର । ବୋହୂ ମାମୀ

ଭୁବନେଶ୍ୱରରେ ରହି କାହିଁକି ପଢ଼ି ପାରିବ ନାହିଁ ଆଉ କଟକରେ କ'ଣ ପଢ଼ା ହୋଇଯିବ—ଇଏ ଥିଲି ଘୋର କଳିର କାରଣ ।

ବଡ଼ ବାବୁଙ୍କର ଶାଶୁ ଓ ଶଶୁରଙ୍କର ପ୍ରସ୍ତାବ ଥିଲା ମାମୀର ଭୁବନେଶ୍ୱର ରହଣି ସପକ୍ଷରେ । ବଡ଼ ବାବୁ ତାଙ୍କୁ କହିଲେ ଯେ ମାମୀ ତେଇଶି ବର୍ଷ ବାପ ମାଆଙ୍କ ପାଖରେ ରହି ଚଳିଛି । ସେ କିଛି ଦିନ କଟକରେ ରହି ମଙ୍ଗଳାବାଗ ଘରର ଚଳଣି ଶିଖିବ ଓ ସେମାନଙ୍କୁ ଚଳାଇବ । ଏହାଛଡ଼ା ମାସେ ଦୁଇମାସ ବି. ଏ. ପରୀକ୍ଷା ପର୍ଯ୍ୟନ୍ତ ବେଶି ବନ୍ଧୁ ବାନ୍ଧବ ଯିବା ଆସିବା ନ ହେବା ଉଚିତ୍ ।

କଥାରେ ଯୁକ୍ତି ଥିବାରୁ ଓ ଜୋଇଁ ନୂଆ ହୋଇଥିବାରୁ ମୋର ସମୁଦି ଓ ସମଦୁଣୀ ହଁ ଭଣିବାକୁ ବାଧ୍ୟ ହେଲେ । କିନ୍ତୁ ବାଇଶି ତାରିଖ କଳି ଏଡ଼ାଇ ହେଲି ନାହିଁ ।

ପୁଣି ବାଇଶି ତାରିଖ ଆସିଥାନ୍ତା ଅଗଷ୍ଟ ବାଇଶିରେ ଚତୁର୍ଥ ଥର ପାଇଁ କଟକର ମଙ୍ଗଳା ବାଗରେ—କ'ଣ ହୋଇଥାନ୍ତା କିଏ କହିବ ? ଆଗ ତିନି ଥର ସ୍ୱାମୀ—ସ୍ତ୍ରୀ କଳି ହୋଇଥିଲି । କିନ୍ତୁ ଚତୁର୍ଥ ବାଇଶି ତାରିଖର ପାଳି ଦିନକୁ ମୋର ବୋହୂ ଅମିତାର ହୋଇଗଲାଣି ମଣିବାର ଏଗାର ଦିନ—ଶ୍ରାଦ୍ଧ ।

ସେ ଦିନକୁ ବୋହୂ ଘର ପ୍ରଗତିବାଦୀ, ପ୍ରଜାତନ୍ତ୍ର, ମାତୃଭୂମି ଓ ଦିନଲିପି ଏପରି ଗୁଡ଼ିଏ ଓଡ଼ିଆ ଦୈନିକରେ ବିଭିନ୍ନ ଦିଗରୁ ଲକ୍ଷ୍ୟ କରି ପ୍ରଶ୍ନ ପଚାରିଲେଣି—ମାମୀ ବା ଅମିତାର ମୃତ୍ୟୁଟି ଅପମୃତ୍ୟୁ ନା ହତ୍ୟା ?

ଠିକ୍ ତାହାର ଆଗଦିନ ଏକୋଇଶି ଅଗଷ୍ଟରେ ବୋହୂର ବଡ଼ ଭାଇ ଡାକ୍ତର ସବ୍ୟସାଚୀ ପଟ୍ଟନାୟକ ଦିଲ୍ଲୀରୁ ଫେରି ବଡ଼ ଉତ୍‌କ୍ଷିପ୍ତ ହେବାକୁ ଆରମ୍ଭ କଲେ ।

ମାମୀର ଶୁଦ୍ଧକ୍ରିୟାକୁ ଭୁବନେଶ୍ୱର ସମୁଧିଙ୍କ ଘରୁ କେହି ଆସି ନାହିଁ । ଅମିତାର ଶାଶୁ, ଶଶୁର, ନଣନ୍ଦ ଓ ସ୍ୱାମୀ ଏକଦା ଓ ଏକା ଏକ ଓ ଦୁଇ ଜଣିଆ ହୋଇ ବହୁଥର ବ୍ରଜବାବୁଙ୍କ ଘରକୁ ଯାଇ ଅପମାନିତ ହୋଇ ଫେରିଥିଲେ ।

ଅଗଷ୍ଟ ଷୋହଳ ଗୁରୁବାର ଦିନ ଶଶୁର ନିଜେ ମଟର ଚଳାଇବାକୁ ବିପଦ ମନେ ନ କରିବାରୁ ଗୋଟିଏ ଟାକ୍ସି କରି ହିମାଂଶୁ ବାବୁ, ପୂର୍ଣ୍ଣପ୍ରଭା ଦେବୀ, ଶୁଭେନ୍ଦୁ ବାବୁ ଓ ନନ୍ଦିନୀ ଦେବୀ ବ୍ରଜବାବୁଙ୍କର ଘରକୁ ଗଲେ ।

ପୂର୍ଣ୍ଣପ୍ରଭା ଦେବୀ ବ୍ରଜବାବୁଙ୍କୁ କ୍ଷମା ମାଗିଲେ । ସମ୍ମୁଧିଙ୍କର ବ୍ୟବହାର ମଧ୍ୟ ଉପଯୁକ୍ତ ଥିଲା । ସେ କହିଲେ—ମାମୀର ସେତିକି ଅଳ୍ପ ଆୟୁଷ ଥିଲା ବୋଲି ମୁଁ ଜାଣିଥିଲି । କିନ୍ତୁ ମୋର ଦୁଃଖ ସେ ଝିଅ ସୁଖ ଭୋଗ କରି ପାରିଲା ନାହିଁ ।

ମୋର ସମୁଦୁଣୀ ମୁଣ୍ଡ ବାଡ଼େଇ ହେଇ କାନ୍ଦୁଥିଲେ । ତାଙ୍କୁ ଓ ତାଙ୍କର ପିଲାଙ୍କୁ ଏଇ କେଇଜଣ ବନ୍ଧୁମାନେ ବୁଝାଇଲେ । ଯୀଶୁ ବାବୁ ଘରେ ନ ଥିଲେ । ଏମାନେ ପରସ୍ପରକୁ ସାନ୍ତ୍ୱନା ଦେଇ ଫେରି ଆସିଲେ ।

ତହିଁଆରଦିନ ଶୁକ୍ରବାର ସତର ତାରିଖ । ପୂର୍ଣ୍ଣପ୍ରଭା ଦେବୀ ଓ ଶୁଭେନ୍ଦୁ ବାବୁ ପୁଣି ଗଲେ । ସେ ଦିନ ସାମ୍ବାଦିକ ଯୀଶୁ ବାବୁ ଥିଲେ । ପ୍ରତିକ୍ରିୟା ଏକାବେଳେ ଓଲଟା । ଏମାନଙ୍କୁ ଦେଖି କବାଟ ଝରକା ବନ୍ଦ କରିଦେଲେ । ସମୁଧି ବ୍ରଜବାବୁ ଆସି କହିଲେ—ନାଁ । ବାହାରି ଯାଆନ୍ତୁ ଏଠୁ । ଆମେ କିଛି କରୁ ନାହୁଁ । ପୁଲିସ ଯାହା କରିବାର କରୁଛି । ଏଠିକି କ'ଣ ପାଇଁ ଆସୁଛନ୍ତି ?

ସେତିକି ବେଳକୁ ମାମୀର ମାମୁଁ ଶ୍ରୀରାମଚନ୍ଦ୍ର କାନନ୍‌ଗୋ, ଭୁବନେଶ୍ବର ଅବକାଶ ସୁପରିନଟେଣ୍ଡେଣ୍ଟ ଆସି ପହଞ୍ଚିଲେ ଓ ପୂର୍ଣ୍ଣପ୍ରଭା ଦେବୀଙ୍କୁ **Get out** କଲେ ।

ପୂର୍ଣ୍ଣପ୍ରଭା ଦେବୀ ଆଣ୍ଠୁ ଭାଙ୍ଗି କ୍ଷମା ମାଗିଲେ । ବ୍ରଜବାବୁଙ୍କୁ କ୍ଷମା ମାଗିଲେ ।

ପୂର୍ଣ୍ଣପ୍ରଭା ଦେବୀ ସମୁଧି ବ୍ରଜବାବୁଙ୍କୁ କହିଲେ—ବଡ ଦିଲ୍ଲୀରୁ ଆସିବା ଦିନରୁ ଖାଇ ନାହିଁ । ତାକୁ କିଛି ଖାଇବାକୁ ଦିଅ । ସେ ତମରି ଘର ଜୋଇଁ । ସେ କଥା ମଧ୍ୟ ରହିଲା ନାହିଁ ।

ପୁରୀର ତହସିଲଦାରଙ୍କର ସ୍ତ୍ରୀ ଓ ମାମୀଙ୍କର ମାଉସୀ ଧୂନ ଦେବୀ କହିଲେ—କ'ଣ ଗୋଟାଏ ଝିଅକୁ ମାରି ସାରି ଆଉ ଗୋଟିଏ ଝିଅକୁ ନେଇ ମାରିବାକୁ ଚାହୁଁଛ ? ବାହାରିଯାଅ ଏଠୁ । ତମର ସବୁକଥା ମାମୀ ଚିଠି ଲେଖି, କାଗଜରେ ଲେଖି ଆମକୁ ଦେଇଛି । ସେ ଏଠିକି ଆସିଲା ଦିନ ସବୁ କଥା ଲେଖିକରି ଆଣିଥିଲା । ଆମେ ପଢ଼ିଛୁ ଆଉ ସେ କାଗଜକୁ ଚିରି ଦେଇଛୁ । ତୁମର ଆଉ ଭଲେଇ ହେବା ଦରକାର ନାହିଁ । ବାହାରିଯାଅ ଏଠୁ ।

ପୁରୀ ଏ: ଡ଼: ଏମ୍ ଗୁରୁବାବୁଙ୍କର ସ୍ତ୍ରୀ ଧୂନ ଦେବୀଙ୍କର ସାନ ଭଉଣୀ ଜ୍ୟୋତ୍ସ୍ନା ଦେବୀ ପୂର୍ଣ୍ଣପ୍ରଭା ଦେବୀଙ୍କୁ ଘର ଭିତରକୁ ଡାକି ନେଇ କହିଲେ—ସେଇ ନିଜେ ବାହାଘର କରାଇଥିଲେ । ତେଣୁ ସେ ଏଇ ମରଣରେ ଦୋଷୀ । ଏଇ ଘରେ ଆଉ ପୂର୍ଣ୍ଣପ୍ରଭା ଦେବୀଙ୍କର ସ୍ଥାନ ନାହିଁ । ଏଠାକୁ ସେ ଆସନ୍ତୁ ନାହିଁ ।···ଏବେ ଚାଲିଯାଆନ୍ତୁ— କହି ଧରି ଧରି ଆଣି ଗାଡ଼ି ପାଖରେ ଛାଡ଼ି ଦେଇ ଗଲେ ।

ଏକୋଇଶି ତାରିଖ ଅଗଷ୍ଟ—ମଙ୍ଗଳବାର । ବିଭୁ ଓ ତାଙ୍କର ବାପା ହିମାଂଶୁବାବୁ ଯାଇଥିଲେ ମାମୀର ଏଗାର ଦିନ ଶ୍ରାଦ୍ଧ ପାଇଁ କହିବାକୁ ।

ସେଦିନ ଡ଼ାକ୍ତର ସବ୍ୟସାଚି ବାବୁ ଦିଲ୍ଲୀରୁ ଭୁବନେଶ୍ୱର ଫେରି-ଥିଲେ । ଏମାନଙ୍କୁ ଦେଖି ଇଂରାଜୀରେ ଚିତ୍କାର କଲେ "ୟୁ ହାଭ୍ କିଲ୍ଡ଼୍ ମାଇଁ ସିଷ୍ଟର ।—ମାମୀ ମତେ ତୁ ତୋ ପାଖକୁ ନେଇ ଯା ।··· I will tell this from one corner to the other corner. I will speak this to the Prime Minister....

ଭାଇମାନେ ଆସି ସବ୍ୟସାଚି ବାବୁଙ୍କୁ ଘର ଭିତରକୁ ନେଇ-ଗଲେ । ସମୁଦ୍ର ଆସି କହିଲେ—ସେ ବର୍ତ୍ତମାନ ଆସି ପହଞ୍ଚିଲା । ଆପଣ ଆମମାନଙ୍କୁ ଦେଖୁଛନ୍ତି । ଦିନ୍ଟାଏ ତଳେ ଯେମିତି ଏକ୍‌ସାଇଟେଡ୍ ଥିଲୁ, ଏବେ ସେମିତି ନାହୁଁ । ଯାହା ହବାର ହେଇଗଲାଣି । ଆପଣ ଏଥର ଯାଆନ୍ତୁ ।

ଯୀଶୁ ବାବୁ ଓରଫ ଦେବୀ ବାବୁ ସେଇଠି ଥିଲେ । ବନ୍ଧ ବାବୁ ମଧ୍ୟ ଭିତରକୁ କଥାବାର୍ତ୍ତା କରିବାକୁ ଯାଇଥିଲେ ।

ସେଇଠୁ ଆରମ୍ଭ ହେଲା ଖବର କାଗଜର ଅଧ୍ୟାୟ । ସମାଜ, ପ୍ରଗତିବାଦୀ, ପ୍ରଜାତନ୍ତ୍ର, ମାତୃଭୂମି ଓ ଦିନଲିପିର ବିବରଣୀ ଅପେକ୍ଷାକୃତ ଯଥେଷ୍ଟ ସଂଯତ ।

କିନ୍ତୁ ନିଯୁକ୍ତିର ମଧ୍ୟ ଅଂଶ ଗ୍ରହଣର ଭୂମିକା ରହିଛି । ବଡ଼ପୁଅ ଡାକ୍ତରବାବୁ ଫେରିଲା ପରେ Times of India, ରାଷ୍ଟ୍ରଦୀପ, ହିତବାଦୀ, ତିନୋଟି କାଗଜରେ ଅତ୍ୟନ୍ତ ଖରାପ ଭାବରେ ଲେଖାଗଲା ।

ଟାଇମସ୍ ଅଫ୍ ଇଣ୍ଡିଆର ଦିଲ୍ଲୀ ପ୍ରକାଶନ ତାରିଖ ୨୧।୮।୮୪ । ସେଦିନ କରି ହୋଇଥିଲା ଯେ, ଅଭିଯୁକ୍ତ ଇଞ୍ଜିନିୟର ସେଦିନ ସକାଳେ ଦିଲ୍ଲୀରେ ପହଞ୍ଚି ନିଜ ବିଷୟରେ ବିବରଣୀ ଦିଲ୍ଲୀରେ ଦେବେ । ବେଶ୍ ଦୂରଦୃଷ୍ଟି ଦେଖାଇ କରି ହୋଇଥିଲା । ମଜା ଦେଖନ୍ତେ ହବେ—ମାତିର ଉପାସକ ଶ୍ରୀ ଦେବମଣି ଗୁପ୍ତ ବେଶ୍ କରାଇ ଦେଇଥିଲେ ।

କିନ୍ତୁ ପୁଲିସ ତଦନ୍ତର ହୁକୁମରେ ଶୁଭେନ୍ଦୁ ବାବୁଙ୍କର ଦିଲ୍ଲୀ ଯାତ୍ରା ପାଞ୍ଚଦିନ ପିଛୁଗଲା । ରିଜର୍ଭେସନ କାନସେଲ କରି ହେଲା ।

ରାଷ୍ଟ୍ରଦୀପ ହେଉଛି ରାଷ୍ଟ୍ରୀୟ ସ୍ୱୟଂ ସେବକ ଅନୁଷ୍ଠାନର କାଗଜ । ତାହାର ସଂପାଦକ ଶ୍ରୀ ଦେବେନ୍ଦ୍ର ମହାନ୍ତି । ସେଇ କାଗଜରେ ବିଭିନ୍ନ ଫଟୋ ସହିତ ବହୁବିଧ ମନଗଢ଼ା ମିଛ ପୂରା ତିନି ପୃଷ୍ଠା ଛପା ହେଲା ।

ସେପ୍ଟେମ୍ବର ପାଞ୍ଚ ତାରିଖରେ ଆର. ଏସ. ଏସ୍ ଅନୁଷ୍ଠାନର ଓଡ଼ିଶା ମୁଖ୍ୟ ଶ୍ରୀ ଭୂପେନ୍ଦ୍ର କୁମାର ବସୁ, ପୁରାତନ କଟକର ଗଭର୍ଣ୍ଣମେଣ୍ଟ ପ୍ଲିଡ଼ର ଏବଂ ପବଲିକ ପ୍ରସିକ୍ୟୁଟର କାଗଜଟି ପଢ଼ି ମତେ ଦେଲେ ଦେଖିବାକୁ—କପରି ଭାବରେ ଶାଶୁମାନେ ବୋହୂଙ୍କ ଉପରେ ଅତ୍ୟାଚାର କରୁଛନ୍ତି ।

ମୁଁ ସେଇ କାଗଜ ପଢ଼ି ଲେଖା ବିଷୟରେ କିଛି ପ୍ରାସଙ୍ଗିକ ପ୍ରଶ୍ନ ପଚାରିଥିଲି । ସେ ପଚାରିଲେ—ଏଇ ପାର୍ଟିମାନେ କିଏ ? ଆଜ ମୁଁ ଏତେ ବେକଟୋକ୍ ପ୍ରଶ୍ନ ପଚାରୁଛି କେମିତି ?···ଉତ୍ତରରେ କହିଥିଲି,

ମୁଁ ଜାଣେ ନାହିଁ । ଲେଖାରୁ ସନ୍ଦେହ ଆସିଲା ବୋଲି କହିଲି କିନ୍ତୁ ଭୂପେନ ବାବୁ କହିଲେ ଯେ ମୋର ପଚାରିଥିବା ପ୍ରଶ୍ନ ଠିକ୍ ନୁହେଁ— ଲେଖା ଠିକ୍ ।

ସେତେବେଳେ ଆର. ଏସ. ଏସର କଟକ ମୁଖ୍ୟ ଶ୍ରୀ ପ୍ରତାପଚନ୍ଦ୍ର ଦେବ ଆଡ଼ଭୋକେଟ୍ ଓ ଆସୋସିଏଟ୍ ପବ୍ଲିକ ପ୍ରସିକ୍ୟୁଟର ଆସିଲେ । ତାଙ୍କୁ ବିଷ୍ଟୁଦୀପ ଦିଆଗଲା ।

ପ୍ରତାପ ବାବୁ ପଡ଼ି ଭୂପେନ ବାବୁଙ୍କ ପରି ଅନୁପ୍ରାଣିତ ହେଲେ ନାହିଁ । ତଥାପି ପ୍ରତାପ ବାବୁ ବିଷ୍ଟୁଦୀପର ଲେଖାକୁ ସମର୍ଥନ କଲେ । ମୁଁ ତାଙ୍କୁ ମଧ୍ୟ କିଛି ପ୍ରଶ୍ନ ପଚାରିଥିଲି ।

ଜଣା ପଡ଼ିଲା ଯେ ନ କହିଲେ ମଧ୍ୟ ଏହି ଘଟଣାରେ ମୋର କେହି ଲୋକ ସଂପୃକ୍ତ ।

ସ୍ଥିର ହେଲା ଯେ ପାଞ୍ଚ ତାରିଖ ସେପ୍ଟେମ୍ବର ବୁଧବାର ଦିନ ପ୍ରତାପ ବାବୁ ମଡ଼ର କି ନୁହେଁ ନିଜେ ସରଜମିନ ରେ ଦେଖିବେ ଓ ବୁଝିବେ । ଏହା ପରେ R. S. S. ମୁଖ୍ୟ ଓ ସେ ନିଜେ ଓ ସଂପାଦକ କଥା ହେଇ ସଂଶୋଧନ କରିବେ ।

ଛଅ ତାରିଖ ସେପ୍ଟେମ୍ବର । କାର୍ଯ୍ୟବ୍ୟସ୍ତତା ପାଇଁ ମୁଁ ଅନୁପସ୍ଥିତ ରହିଲି । ସଂପାଦକ ଆସି R.S.S. ମୁଖ୍ୟଙ୍କୁ ଯାହା ବୁଝାଇଲେ ସେଥିରେ ସଂଶୋଧନର ଆବଶ୍ୟକତା ଦରକାର ହେଲା ନାହିଁ ।

ଫେରି ମୁଁ ଜାଣିଲି ଯେ ମୋର ଅନୁପସ୍ଥିତିରେ ଆଲୋଚନା ଓ ପର୍ଯ୍ୟାଲୋଚନା ସରିଛି ।

ତେଣୁ ଗୋଟିଏ ଅଦାଲତ ଅର୍ଜି ଲେଖି ଭୂପେନ ବାବୁଙ୍କୁ ଦେଲି । ସେଇଟି ସେ ମତେ ୭।୮।୯।୮୦ କଚେରୀ ଛୁଟି ପରେ ଦଶ ବା ଏଗାର ତାରିଖରେ ଦେଲେ ମୁଁ ଟାଇପ କରି କୋର୍ଟରେ ଦାଖଲ କରିବି ।

ଅର୍ଜିଟି ସଂପାଦକଙ୍କ ପାଖକୁ ପଠାଇ ଦେଇ ଭୂପେନ ବାବୁ କଟକ ବାହାରକୁ ଚାଲିଗଲେ । ସଂପାଦକ ମହାଶୟ ସାଙ୍ଗେ ସାଙ୍ଗେ

ଭୁବନେଶ୍ୱରରେ ବ୍ରଜବଲ୍ଲଭ ବାବୁଙ୍କର ଘରେ ଅର୍ଘକୁ ନେଇ ପହୁଞ୍ଚିଲେ ।

ତହିଁଆର ଦିନ ସାତ ତାରିଖ ସେପ୍ଟେମ୍ବର । ଗୋଟିଏ ମୁସଲମାନ ପର୍ବ ପାଇଁ ଛୁଟି ଘୋଷଣା ହୋଇଥାଏ ।

ପ୍ରାୟ ଦିନ ସାଢ଼େ ଏଗାରଟାବେଳେ ମତେ ଘରେ ଉଠାଇଲେ ଯେ ତାଳଚେର ରଜା ସାହେବ ଆସିଛନ୍ତି ।

ବାହାରେ ଦେଖିଲି ଆଉ ଜଣଙ୍କୁ । ସମୁଧି ବିବ୍ରତ ହୋଇ କହିଲେ—ରଜ୍ ଭାଇ, ମତେ ଚିହ୍ନି ପାରୁ ନାହଁ ? ମୁଁ ମାମୀର ବାପା । କହି କାନ୍ଦିବାକୁ ଆରମ୍ଭ କଲେ ।

ନିଜର ନିଦ ମଳମଳ ଆଖିକୁ ଓ ବୁଢ଼ା ମନକୁ ଧିକ୍କାର ଦେଇ ଶୈଳ ଦେବୀଙ୍କୁ ଡାକି ସମୁଧିଙ୍କୁ ନେଇ ଭିତରକୁ ଗଲି । କ’ଣ ଅବା ଉପଯୁକ୍ତ ଆସନ ବା ସ୍ଥାନ ଅଛି ମୋ’ ଘରେ ?

ଶୈଳ ଦେବୀଙ୍କୁ ସମୁଧି-ଚର୍ଚ୍ଚା ଭାର ଦେଇ ମୁଁ କଫି ତିଆରି କରିବାକୁ ବାହାରି ଗଲି । ମୋ’ ଘରେ ମୋର ଏଇଟା ଡିଉଟି । କେହି ଆସିଲେ ଚା,’ କଫି, କୋକୋ କରିବା କାମ ମୋ’ ଉପରେ ।

ସମୁଧି କହିଗଲେ—ଦେଖନ୍ତୁ ମୋ’ ପୁଅକୁ କଲିକତାରେ ଉକ୍ଲର ଜଣ୍ଟିନ କହିଲେ ଯେ ଓଡ଼ିଶା ପୁଲିସ ପନ୍ଦର ଦିନ ହେଲାଣି ଶାଶୁକୁ ଗିରଫ କରି ନାହାଁନ୍ତି କାହିଁକି ? ସୁପ୍ରେମ କୋର୍ଟ ଜଜ୍ ମଧ୍ୟ ସେଇ କଥା କହିଲେ । ମୁଁ ମୋର ସଢ଼ୁଙ୍କୁ ପଚ୍ଚରି ସବୁ କଥା କରେ ।

—ଏଇଟା ଆତ୍ମହତ୍ୟା ।

—ମୋଟେ ନୁହେଁ । ଆପଣ କ’ଣ ଗଭର୍ଣ୍ଣମେଣ୍ଟ ଆଡ଼-ଭୋକେଟଙ୍କର ମତକୁ ମାନିବେ ନାହିଁ ? ସେ କହୁଛନ୍ତି ଯେ ଏଇଟା ମର୍ଡ଼ରର କ୍ଲିଅର କେସ୍ ।

—ହେଲି ଯେ ଥରେ ବି ଅତ୍ୟାଗ୍ରହର କଥା ଆମକୁ କହିଲେ ନାହିଁ । ବାହୁଡ଼ାରେ ସମୁଦୁଣୀ ଶୈଳଦେବୀଙ୍କୁ କ’ଣ ଅଭିଯୋଗ କରି-

ଥିଲେ ଯେ ଶୁଣି ମୁଁ କହିଲି ପୁଅ ବୋହୂ ଦିଲ୍ଲୀରେ । ଆଜି ଏଠି ଅଭିଯୋଗ ହେଉଛି ଶାଶୁ ବିରୁଦ୍ଧରେ । ତାଙ୍କୁ କହ ଯେ ସେ ମୋ' ସାଙ୍ଗରେ ଆଲୋଚନା କରିବେ···ସେ କି ହେଲା ନାହିଁ···ମୁଁ କି ମଙ୍ଗଳା ବାଗ ଲୋକଙ୍କର ନିକଟ ଲୋକ ନୁହେଁ ବୋଲି ଶୈଳ ଦେବୀ ବାହୁଡ଼ା ଦିନ ସମ୍ପାଦିକାଙ୍କୁ କହିଥିଲେ ।

ଘଣ୍ଟାଏ ଦୁଃଖ ସୁଖ ହେଲୁ । ମୁଁ ମୋର ସମ୍ପାଦ ବ୍ରଜବାବୁଙ୍କୁ କହିଥିଲି ଯେ ପୁଅ ଝିଅ ବଡ଼ ହେବାକୁ ଅଛନ୍ତି । ଏପରି ଅବସ୍ଥାରେ ଅତି କଦର୍ଯ୍ୟ କରି ଖବର କାଗଜ ଲେଖା ବନ୍ଦ କରନ୍ତୁ ।

ସେ ମଧ୍ୟ ରାଜି ହୋଇ ପ୍ରତିଶ୍ରୁତି ଦେଲେ ଯେ ଖବରକାଗଜରେ ଆଉ ଲେଖା ବାହାରିବ ନାହିଁ । ···ତେବେ ରାଷ୍ଟ୍ରଦୀପକୁ ରିଙ୍ଗ୍ ଲେଖିଛନ୍ତି ···ଝିଉଜ ତେ ଶାଶୁ ସପକ୍ଷରେ ଲେଖିଛି ।

ବୋଧହୁଏ ମୋର ଅନୁରୋଧ ଗ୍ରହଣୀୟ ହେଲା ନାହିଁ ସମ୍ପାଦଙ୍କର ପରିବାରରେ । ତା'ପରେ ଧରିତ୍ରୀ (୧୮।୯।୮୪) ଖବର କାଗଜ (୨୦।୯।୮୪) ଇଂରାଜି ଟେଲିଗ୍ରାଫ୍ (୨୦।୯।୮୪) ବାହାରିଲା । ୨୧।୯।-୮୪ରେ ଉତ୍କଳ ମହିଳା ସମିତି ପକ୍ଷରୁ ଆଉ ବାହାରିଲା କଟକର ପ୍ରଧାନ ରାସ୍ତାରେ । ଦୁଃଖିତ ହୋଇ ସମ୍ପାଦଙ୍କୁ ଲେଖି ଜଣାଇଲି ।

ଅଧିକ ମିଳିଲା ସତ କଥା (ମାସିକ) ସୂଚନା (ମାସିକ), ସନ୍ଦେଶ (ମାସିକ) ମୋର ବୋହୂ ଅମିତାର ମୃତ୍ୟୁ ବିଷୟରେ । ପ୍ରଜାତନ୍ତ୍ର, ପ୍ରଗତିବାଦୀ ଦୈନିକ ମାନେ ସାମ୍ବାଦିକ ଦେବୀବାବୁଙ୍କର ଅନୁରୋଧ ରକ୍ଷା କରି କିଛି ହେଲେ ସଂଶୋଧନ ଦେଲେ ନାହିଁ । ରାଷ୍ଟ୍ରଦୀପ ପାଖରେ ଅନେକ ତଥ୍ୟ ରହିଗଲା । ଆଉ ସେଇଠୁ ପ୍ରଶ୍ନ ହେଲା—ଏଇ ଘଟଣାରେ ମୁଁ କିଏ ? ଏଥିରେ ରାଜୁବାବୁ କାହିଁକି ମୁଣ୍ଡ ପୂରାଉଛନ୍ତି ?

ମୋର ମୁରବୀ ଶୈଳ ଦେବୀ ମଧ୍ୟ ମତେ ବହୁତ ଶାସ୍ତି ଦେଲେ ଦରକାର ନ ଥାଇ ଟେକି ପଶି ସମସ୍ତଙ୍କ ସାଙ୍ଗରେ କଳି କରିବା କାରଣରୁ ।

—ଦେଖିଲ ନାହିଁ, ବୋହୂ ମରିବାର ଅଠର ଘଣ୍ଟା ପରେ ଖବର ପାଇଲା କେମିତି ?

—କ'ଣ କରିଥାନ୍ତି ? ମୋର ସମ୍ପାଦ ପତ୍ର କହିଲେ ଯେ ପନ୍ଦର ଅଗଷ୍ଟରେ ମତେ ଖବର ଦେବାକୁ ଆସିଲାବେଳେ ବାଟରେ ମଡ଼ାଟିଏ ଦେଖି ଫେରିଗଲେ । ଖବର୍ ଦେଇପାରିଲେ ନାହିଁ । ···ତେବେ ଆମ ବଜାରରେ କେହି ମରି ନାହାନ୍ତି ।

—ନିଜର ପେଟ କେମିତି ପୋଷିହେବ, ତାହାରି କଥା ବୁଝ । ଆଜ ଏଇ ଧନ୍ଦାରେ ପଣି ସମସ୍ତ ନଷ୍ଟ କର ନାହିଁ ।

—ନା, ଏହି କାଗଜ ପ୍ରଗ୍ରର ନ୍ୟାୟର ବିରୁଦ୍ଧରେ ଯାଉଛି । ସାମାଜିକ ଅନ୍ୟାୟର ମଧ୍ୟ ପ୍ରତିବାଦ ରହିବା ଉଚିତ୍ ।

ଏମିତି ହେଲା ମଡ଼ର୍ଣ୍ଣ ଯୁଗରେ ଆମ ପରି ଓଲୁମାନଙ୍କର ଓ ଗରିବମାନଙ୍କର ଅବସ୍ଥା । କାହାରି ପାଇଁ କେହି ପଦେ କହିପାରିବେ ନାହିଁ । ବୋଧ୍ୁ ମଲା ନାହିଁ ଯେ ଆମମାନଙ୍କୁ ମଧ୍ୟ ସନ୍ତପ୍ତ କରିଦେଇ ଗଲା ।

ସେ ଆସିଥିଲା ଅପ୍ରେଲ ବାଇଶିର ରବିବାର ବାହାଘର ଦିନ । ସେଦିନ ବୈଶାଖ ମାସ କୃଷ୍ଣପକ୍ଷ ସାତ ଦିନ । ଶରଣ ଆରମ୍ଭ ।

ଆଗ ଦିନ ମଙ୍ଗଳପାକ ବା ମଙ୍ଗନ । ମୋର ଅନୁପସ୍ଥିତି ଆଲୋ-ଚନାର ବିଷୟ ହୋଇଥିଲା । ପ୍ୁଣ୍ୟପ୍ରଭା ଦେବୀ କେମିତି ନିମନ୍ତ୍ରଣ କରିବାକୁ ଭୁଲିଗଲେ ସେଥିପାଇଁ ଟୁଙ୍କବାବୁ ବିରକ୍ତ ହେଲେ ।

ବାଇଶି ତାରିଖରେ ମୁଁ ଯାଇଥିଲି ବୁଝିବାକୁ କଟକରୁ କେତେବେଳେ କେମିତି କେଉଁଠ୍ୁ ଆମେ ବାହାରି ଭୁବନେଶ୍ୱର ମିବୁ ।

ବରକୁ ମଙ୍ୁଳାଇ ପ୍ୁଣ୍ୟପ୍ରଭା ଦେବୀ ଦିନ ସାଡେ ବାରଟା ସୁଦ୍ଧା ବିଦାୟ କରିବାରେ ତତ୍ପର ଥାଆନ୍ତି । କାରଣ ତେଣିକି ବାର ବେଳା ଓ କାଳ ବେଳା ଲଗି ଲଗି ରହୁଛି ।

ବର ଶୁଭେନ୍ଦ୍ୁ ବାବୁ, ହିମାଂଶୁ ବାବୁ, ମନୁ ବାବୁ ଓ ମାର୍କୁଣ୍ଡି ଖୁଲିଗଲେ । ଫଟୋ ଉଠା ହେଲା । କିନ୍ତୁ ଖରା ପାଇଁ ଭଲ ଫଟୋ ଉଠିଲା ନାହିଁ । ନିଜର ମଟରେ ଥିବା ବନ୍ଧୁମାନେ ଆପଣା ସୁବିଧାରେ ଯାଇ ଭୁବନେଶ୍ୱର ପାନ୍ଥନିବାସରେ ଠିକ୍ ସମୟରେ ପହଞ୍ଚିବା କଥା

ହେଲା । କଟକ ପାଇଁ ଗୋଟିଏ ମଟର ଓ ଅଳ୍ପ କଣ୍ଟ୍ରୁ ଗ୍ରେଟିଆ ବରଯାତ୍ରୀ ଯିବାର ବ୍ୟବସ୍ଥା ହେଲା । ଏଥିରେ ମୁଁ ଜଣେ ପାସେଞ୍ଜର ।

ବର ବିଦାୟ ହୋଇଗଲା ବାର ବେଳା ଆଗରୁ । ତା'ପରେ ଆମେମାନେ ଗତ ରାତ୍ରର ବଳକା ରନ୍ଧା ଜିନିସ ଖାଇଲୁ । ତେଲଙ୍ଗା-ବଜାର ଘରକୁ ଫେରିଲି ବେଳକୁ ଦେଢ଼ଟା ।

ବିଶ୍ରାମ ଦଶ ମିନିଟ ହୋଇଥିବ । ନିଆଁ—ନିଆଁ ପାଟି ଶୁଭିଲା । ଲୋକ ଧାଇଁଲେଣି । ଘରେ ପଶି ବାଲଟି, ମଗ୍, ପାଣି ସବୁ ନେଇ ଗୁଲିଛନ୍ତି । ଆମର ଗୁହାଳ ଜଳୁଛି—ଦଶ ହାତ ଲମ୍ବା ଓ ଦଶ ହାତ ଚଉଡ଼ା ।

ସେଠି ଗୁହାଳ ଶୁଭ ନୁହେଁ । ଆମର ଖୁବ୍ ବଡ଼ ବଡ଼ ଦଶ ଆଠ ବର୍ଷର ଦଶ ଆଠ ଲିଟର କରି ଦୁଧ ଦେଉଥିବା ଦୁଇଟି ଜର୍ସି ଗାଈ ଦି'ମାସ ଆଗରୁ ମରି ଯାଇଥିଲେ—ହଠାତ୍ ହଠାତ୍ । ଔଷଧ ଚିକିତ୍ସା ମଧ୍ୟ ସମ୍ଭାଳିଲା ନାହିଁ ।

ଗୁହାଳରେ ଆଉ ଗୋରୁ ରହିବେ ନାହିଁ । ତେବେ ଘରିଁ ନ ଥିଲୁ ।

ଗୁହାଳକୁ ଲଗି ମୋର ଭଉଣୀର ଦୋମହଲା କୋଠା । ତଳ ମହାଲରେ ବ୍ରହ୍ମକୁମାରୀ ପ୍ରଜାପିତା ଐଶ୍ୱରୀୟ ବିଶ୍ୱବିଦ୍ୟାଳୟ । ଉପର ମହଲା ଖାଲି ।

ଉପର ମହଲାର ଲୋକଙ୍କୁ ମୋର ଭଣଜା ଓ ଭଣୋଇ ମିଶି ତଡ଼ୁଥିଲେ ଭଲ ଭଡ଼ା ପାଇବା ପାଇଁ । ଭଲ ଗୋଟାଏ ଅନିର୍ଦ୍ଦିଷ୍ଟ ଝାବଡ଼ା ଶବ୍ଦ ।

ଏଇ ଛକା ପଂଝାରେ ଉପର ଲୋକ ଟଙ୍କା ଦୁଇ ହଜାର ବାକି ରଖି ଘର ଛାଡ଼ି ଗୁଲିଗଲା । ଆଉ ମାଲିକମାନେ ଦେଢ଼ ବର୍ଷରେ ମଧ୍ୟ ଭଲ ଭଡ଼ା ଦେବାକୁ ରାଜିଥିବା ଟେନାଣ୍ଟ ପାଇ ନାହାନ୍ତି ।

ତଥାପି ଘର ଖୁସି ଯେ ସେଇ ଟେନାଣ୍ଟକୁ ତଡ଼ିଛନ୍ତି । ଇଏ ଗୋଟାଏ ପ୍ରକାରର ମାହାନ୍ତିଆ ବୁଦ୍ଧି । ଏଥିରେ ମାହାନ୍ତି ଲାଭବାନ ହୁଏ ।

ଉପର ମହଲାକୁ ଗୋଟିଏ ବାତ୍ୟାଘରକୁ ଦ'ଉନକୁ ଚାରିଶହ ଟଙ୍କାରେ ଭଡ଼ା ଲଗାଇଥିଲେ । ତାଙ୍କର ବି ସେଇ ବାଇଶି ଅପ୍ରେଲ ବାତ୍ୟାଘର ।

ଖାଇବେଳେ ତଳଘର ଉପରକୁ ଦୋଚାଲି ଝରକାବାଟେ ବିଡ଼ି କି ସିଗାରେଟ୍ ପକାଇ ଦେବାରୁ ଆମର ଘରଟି ଖତମ୍ । ଘର ପଛକେ ପୋଡ଼ୁ, ଆଗ ବାଲିଟି ଛଅଟାକୁ ଜଗିବାକୁ ପଡ଼ିବ । ଏହାଛଡ଼ା ମଗ୍, ଲୋଟା, କୁଅଁଦଉଡ଼ି ଆଦି ଅଛି । ନିଜର ଘରକୁ ଚଟାପଟ୍ ବନ୍ଦ କରିଦେଇ ମୁଁ ଯାଇ ଫାଟକ ଜଗିଲି ।

ଘଣ୍ଟାଏ ମଧ୍ୟରେ ନିଆଁ ଲିଭିଲା । ଲୋକେ ବିଦାୟ ହେଲେ । କିନ୍ତୁ ଆମର ଏମିତି ଛଉକା ପଣିଆ ଜଗାରଖା ଦେଖି ଶ—ବେ—ଆଦି ରୁଚିକର ଶବ୍ଦ ବ୍ୟବହାର କରି ଚାଲିଗଲେ । ସବୁ ଜିନିଷ ଫେରିଲା । ଗୋଟାଏ ବାଲିଟି ହଜିଥିଲା, ସେ ମଧ୍ୟ ଧରା ହେଲା ।

ପ୍ରାୟ ତିନିଟା ବେଳକୁ ଝଡ଼ ଓ କଡ଼ଡ଼ା ବର୍ଷା । ଆମେ ଖୁସି ଯେ ଗୁହାଳର ଦରପୋଡ଼ା କାଠ ବାଉଁଶ ପୂରା ଲିଭିଗଲା । ବିପଦ ଆଉ ହେବ ନାହିଁ ।

ସାଢ଼େ ଚାରିଟା ବେଳକୁ ବଡ଼ମାମୁଁ ବରଯାତ୍ରୀ ହେଇ ଚାଲିଲି ମଙ୍ଗଳାବାଗ ।

ବାଟରେ ରାସ୍ତା ବନ୍ଦ—ବହୁତ ଝଡ଼ ଉପର ଦିଗକୁ ହେଉଛି । ରାଉସାପାଟଣା ଛକରେ ମଧ୍ୟ ରାସ୍ତାରେ ପାଣି ।

ବରଯାତ୍ରୀ ରିକ୍‌ସାକୁ ଛାଡ଼ି ଏଠି ସେଠି ଡେଇଁ କୁଦି ବରଯାତ୍ରୀଟି ଧୋତି ଓ ପଞ୍ଜାବୀର ଯତ୍ନ ନେଇ ମଙ୍ଗଳାବାଗରେ ଦେଖିଲି ଯେ ବର ରହିଥିଲେ ବାତ୍ୟାଘର ହେଇଥାନ୍ତା କେମିତି ?

ବଡ଼ ଘର ପାଖ ରାସ୍ତାରେ ଅନେକ ଦସ୍ତା ଓ ଆଜବେଷ୍ଟସ୍ ଛାତ ଉଡ଼ି ଯାଇଛି । ବିଜୁଳି ବନ୍ଦ । ମୋର ଭଣଜାର ବେଶୀ ଆଉ ନାହିଁ । କଦଳୀ ଗଛ ଇତ୍ୟାଦି ଉପୁଡ଼ି ଯାଇଛନ୍ତି । ଉପରର ଟେମ୍ପରାରୀ ସାଜସଜ୍ଜା ପୂରା ଚାଲିଯାଇଛି । ଚାରିଆଡ଼େ ଶୁନ୍‌ଶାନ୍ ।

ସେଇଠି ପିଣ୍ଡାରେ ବସି ରହିଲୁ । ମଠର ବ୍ୟବସ୍ଥା ଜଣା ପଡ଼ୁନାହିଁ । ବରଯାତ୍ରୀ କେବଳ ଜଣେ ମିଳୁଛନ୍ତି—ସିଏ ବଡ଼ ମାମୁଁ ।

ବଡ଼ ଦୁଃଖର କଥା । ବାହାଘରର ବେପାଟା ମଧ୍ୟ କ୍ଷତିଗ୍ରସ୍ତ ହୋଇଗଲା । ଏଇ ସାଇକ୍ଲୋନ ଆଜି ଦିନଟାଏ ସମ୍ଭାଳିଲା ନାହିଁ ।

ସନ୍ଧ୍ୟା ପରେ ବହୁତ କଷ୍ଟରେ ଏଠୁ ସେଠୁ ଦି’ଗୁରିଜଣ ବରଯାତ୍ରୀ ଏକାଠି ହୋଇ ଖଣ୍ଡେ ମଟରରେ ଗ୍ଲଲୁ କଟକରୁ ଭୁବନେଶ୍ୱର ।— ଅପ୍ରେଲ୍ ବାଇଶି ସନ୍ଧ୍ୟା ।

ବାଟରେ ଫୁଲନଖର ପାଖରୁ ରାସ୍ତା ଦୁଇପାଖ ଝୁଡ଼ରେ ଅତ୍ୟନ୍ତ କ୍ଷତିଗ୍ରସ୍ତ । ବିଶ୍ୱବିଦ୍ୟାଳୟ ଓ ନଅ ନମ୍ବର ରାସ୍ତା ଅନ୍ଧାର ଓ ବିପର୍ଯ୍ୟସ୍ତ ।

ଭାବୁଥାଏ କି ବାହାଘର ହେବ ? ମୋର ସମୁଧିଙ୍କ ଘରେ କିଛି ନ ଥିବ ।

ଆଶ୍ଚର୍ଯ୍ୟର କଥା କଲୋନି ପାର ହେଲା ପରେ ଆକାଶ ସଫା ଜଣା ପଡ଼ିଲା । ବରଘର ଖର୍ଚ୍ଚରେ ସେମାନେ ସେଉଁ ଲାଇଟ ଓ ବାଜା ଯୋଗାଡ଼ କରିଥିଲେ ସେଥିରେ ବର ଯାଇ ପହଞ୍ଚିଲା ।

ଇଏ କ’ଣ ? ନଅ, ଆଠ, ତିନି, ଛଅ ୟୁନିଟ୍‌ରେ ଅତ୍ୟନ୍ତ ଶୋଚନୀୟ ଅବସ୍ଥା । ଅଥଚ ମୋର ସମୁଧିଙ୍କର ସାଜସଜ୍ଜା ଏକଦମ୍ ଅକ୍ଷୁଣ୍ଣ । ଟୋପାଏ ବି ବର୍ଷା ନାହିଁ । ଏଣେ ନଅ ନମ୍ବର ୟୁନିଟ୍‌ରେ ରାସ୍ତାରେ ପାଣି ।

ମୁଁ ଈଶ୍ୱରଙ୍କୁ ପ୍ରଣିପାତ ଜଣାଇଥିଲି । ମୋର ସମୁଧି ବ୍ରଜବାବୁ ଚକାଡ଼ୋଳାଙ୍କର ଭକ୍ତ ଓ ଓଡ଼ିଆ ମଠର ଲୋକ । ମୋର ସମୁଦୁଣୀ ବାପ୍ପାବାବାଙ୍କର ଭକ୍ତ । ସେମାନଙ୍କର ଅନନ୍ତ ଆଶୀର୍ବାଦ ଓ କରୁଣାରେ ଏଇ ବାହାଘରଟିରେ କିଛି ଟିକିଏ ବି ଅସୁବିଧା ନାହିଁ । ମୁଁ ସେଦିନ ଭାବିଥିଲି ଯେ ଈଶ୍ୱରଙ୍କର ଶୁଭ ଦୃଷ୍ଟି ମୋର ଭଉଣୀଜାର ଶଶୁର ଘର ଉପରେ ରହିଛି ।

ଟିକିଏ ଖଟକା ରହୁଥାଏ ଯେ ମୋର ଭଣଜାର ବାହା ବେଦୀର ଚିତ୍ରାବର୍ଣ୍ଣି ମଧ୍ୟ ନାହିଁ । ଝଡର ଆଗରୁ ଚାଲି ଆସିଛୁ । ନ ଦେଖି ଝଡ଼ର ଉତ୍ପାତ କଳ୍ପନାରେ ଦେଖିବା କଷ୍ଟକର ।

ମୋର କର୍ତ୍ତବ୍ୟ ସାରି ସେଇ ଗାଡିରେ ମୁଁ ଫେରିଲି କଟକ ।

ରହିବାର କଥା କାହିଁ ? ମୁଁ ଜାଣେ ମୁଁ ଅତ୍ୟନ୍ତ ଚପଳର ଲୋକ । ଯିଏ ମୋ ପାଖକୁ ଆସେ ଫେରିଲାବେଳେ ଚାହେଁ ଯେ ତାହାର ଆଉ ଅଧିକ ବଳ ଥିଲେ ମତେ ଟାଙ୍ଗେ ଦେଇ ଫେରିଥାନ୍ତା । ଏଇ ଲୋକପ୍ରିୟତା ମୁଁ ଘରେ ଓ ବାହାରେ ପ୍ରଚୁର ଅନୁଭବ କରିଛି ।

ସୋମବାର ଏଗାର ନଭେମ୍ବର ୧୯୮୪ । ମୁଁ ଜରରେ ଶୋଇ-ଥିଲି । ଗୋଟିଏ ଭଣଜା ଆସିଥିଲା । ଖରାବେଳେ ମୁଁ ଶୋଇଛି ଆଉ ସୋମବାରରେ । ସେ ସ୍ଥିର କଲା ଯେ ମୁଁ ବେଶ୍ ଅସୁସ୍ଥ । ଆଉ ଘରେ ବୁଝାଉଥିଲେ ଯେ ସେମିତି ନୁହେଁ ।

ଭଣଜାଟି କହିଲା ତାହାର ଜରୁରୀ କାମ ସାରି ଆସିବ । କିନ୍ତୁ ଆସିବା କି ଦରକାର ? ସେ ଚାଲିଗଲା ପ୍ରଚାରରେ—ବଡ଼ ମାମୁଁ ବୋଧହୁଏ ଆଉ ଉଠିବେ ନାହିଁ । ତିନି ଦିନ ହେଲା ଶୋଇଲେଣି । କେଜାଣି ସକାଳୁ କ'ଣ ହୋଇଥିବ । ଯାହାହେଉ ପ୍ରଚାରଟା ଖାଲି ମାହାନ୍ତିଙ୍କ ଭିତରେ ସୀମାବଦ୍ଧ ରହିଲା ।

ଆଉ ମାହାନ୍ତିମାନେ ଭାବିଲେ ସନ୍ଧ୍ୟା ତ ହେଲାଣି—ସକାଳେ ବୁଝିବା କ'ଣ ହୋଇଛି ?

ଆଉ ସକାଳୁ ସମ୍ଭ୍ରି ଆସିବାକୁ ଆରମ୍ଭ କଲେ । ମତେ ଚାଲିବୁଲି କରିବା ଦେଖି ବଡ଼ ବିବ୍ରତ ହେଲେ—ସେପରି କିଛି ଗୁରୁତର କଥା ନାହିଁ ।

ବୁଝାଗଲା ଯେ ପ୍ରଚାରଟା ଭୁଲ୍ ହୋଇଗଲା । ମୁଁ ଯେ ମରି-ଯାଇଥିବି କି ମର ମର ହୋଇଥିବି—ସେତିକି ଭୁଲ୍ । ଜରଟା ଠିକ୍ । ଭଣଜା ଯାଇ ତାଙ୍କ ଘରେ କାମଦାମରେ ଲାଗିଛନ୍ତି । ଏଣେ ବଡ଼ ମାମୁଁଙ୍କୁ ଦେଖିବାକୁ ତାଙ୍କ ଘରେ ଲୋକ ।

ଏଇ ପାଜି ମାହାନ୍ତମାନେ ଏକାଠି କ୍ଲବ୍ ବାନ୍ଧି ଚଳୁଛନ୍ତି । ସେମାନଙ୍କର ବୁଦ୍ଧି ପାଚିଲା ହୋଇ ଗଲଣି । ଆଉ କାମକୁ ପାଉ ନାହିଁ । ତେଣୁ ଭଲ ଡ୍ରେସ୍ ପିନ୍ଧି, ଘଡ଼ି ବାନ୍ଧି କିଛି ପରିଶ୍ରମ କରିବାକୁ ଇଚ୍ଛା ନ କରି ଆଲିବାନର କୁମ୍ଭକ ଘାଟ ଓ ଅଷ୍ଟଧାତୁ ତେଉଁରିଆ, ଲୁହା ବା ତମ୍ବାର ହାତ କଡ଼ା ଓ ସାଇ ଭଜନ ଇତ୍ୟାଦିରେ ମନ ଲଗାଇଛନ୍ତି ।

ଫଳ ମଧ୍ୟ ମିଳୁଛି । ଶିକ୍ଷିତ ବେକାର ଅବା ବେକାରଙ୍କର ପାଳିଆ ଚରି ଷ୍ଟାଟସ୍ ଯେ ଆସୁ ନାହିଁ ତାହା ନୁହେଁ । ଓଡ଼ିଶା ଏବେ ଆଫ୍ରିକା ପରି କିଛି କିଛି ହେଲଣି । ଆଉ କିଛି କିଛି ହେଲଣି ହିମାଳୟର ପାଦଦେଶ ଓ ଆଣ୍ଠୁ ଦେଶ ଚଳଣୀ ପରି ।

ଆଫ୍ରିକାରେ ଆଫ୍ରିକୀୟ ଜାତିର ଲୋକ ତାହାର ଜାତିର ଲୋକ ଘରକୁ ଯାଇ କୁଣିଆଁ ହେଲେ ସ୍ଥାନୀୟ ସାମାଜିକ ପ୍ରଥାରେ ତାକୁ କେହି ଯିବାକୁ କହିବ ନାହିଁ । କିମ୍ବା କେବେ ଯିବ କି ଜାଣିକି ଆସିଲେ ପଚାରି ପାରିବ ନାହିଁ । ତେଣୁ ସେଠି ପଦସ୍ଥ ଅଫିସରମାନେ ସରକାରଙ୍କୁ ଲେଖନ୍ତି ଯେ ତାକୁ ନିଜ ଗାଁ ଠାରୁ ଦୁଇ ଶହ ମାଇଲ ଭିତରେ ପୋଷ୍ଟିଙ୍ଗ ଦିଆ ହେବ ନାହିଁ ।

ଆଉ ହିମାଳୟର ଅଣ୍ଟା, ପାଦ ଓ ଆଣ୍ଠୁ ପାଖରେ ସ୍ଥାନୀୟ ପ୍ରଥା ଅଛି ଯେ କେହି କାହାରି ଘରେ ପାହୁଣ୍ଡ କୁଣିଆ ହେଲେ ଶାସ୍ତ୍ର ଅନୁସାରେ ଧରାଯିବ—ଠାକୁର ଆସିଲେ । କାରଣ ଲୋକଟି କୁଣିଆକୁ ଆସିବାକୁ କହି ନାହିଁ ।

କୁଣିଆ ବାବୁ ପରି ଖାଇବ, ବସିବ ଓ ଶୋଇବ । ଶୋଇଲା-ବେଳେ ଘରର ଘରଣୀ ଆସି ରାତି ଦାନର ଯୋଜନା ଦେବ । ଆଉ ତାକୁ ଗ୍ରହଣ ନ କଲେ ତହିଁଆର ଦିନ ଘରର ମାଲିକ ଆସି କାନ୍ଦକଟାଳି କରିବ ।

ଏବେ ଓଡ଼ିଆ କରଣ ସମାଜରେ ଏଇ ପ୍ରକାରର ଚଳଣି ଧୀରେ ଧୀରେ ବିଭିନ୍ନ ରୂପ ଦେଖାଇ ପଶି ଆସୁଛି—ସବୁ କାମ ବନ୍ଦ କରି ଟି.ଭି. ଦେଖିଲା ପରି । ଖାଅ, ଟି. ଭି. ଦେଖ, ଖାଅ, ଶୁଅ । ଆଉ କାମ ଖୋଜିଲେ ଯାଅ ବାଗୁଲି କର—ଚରିତ୍ର ସଂହାର କର ।

ଅବା ବେଶପଟା ହୋଇ ଦାନ୍ତ ଦେଖାଇ ରାସ୍ତାରେ ବୁଲ । ସୁବିଧା ନ ହେଲେ ମୁରବୀମାନଙ୍କୁ ମଫ୍, କନଜ୍ୟୁସ, ଫୁଲ୍, ବୁଦ୍ଧୁ ଆଦି ସଂବୋଧନ କରି ଶିଖ । କାରଣ ପ୍ରତ୍ୟେକ ଟି. ଭି. ଆସରରେ ଦିଲ୍ଲୀ, ବମ୍ବାଇ, କଲକତା, ମାଡ୍ରାଜ ଆଦି ସହରରେ ହଜାର ହଜାର ଦର୍ଶକ ଭଳି ଖିଆପିଆ କରି ଉପଯୁକ୍ତ ଡ୍ରେସ୍ ପିନ୍ଧି ଟି. ଭି. ଆସରରେ ବସି ଟେଲିଭିଜନ ଦେଖାଇ ପାରୁଛନ୍ତି । ଓଡ଼ିଆ ପିନା ଗରିବ ବୋଲି ନିଜ ଦେଶରେ ରହିଛନ୍ତି—ସେ କ'ଣ ସେତିକ ସମୟ ସମର୍ଥ ହୋଇ ପାରିବ ନାହିଁ ?

ଫଳରେ ଏଣ୍ଡ୍ ଦେବା ଲୋକ ଗୃହଲଗି କରି ହଜାର ହଜାର ପଇସା ଓ ମର୍ଯ୍ୟାଦା ଓ ଓଲୁ ଗଢ଼ି ଦେଇ ତାଙ୍କର କରଜଦିଆ ଟଙ୍କାକୁ ଟେକନିକାଲ କୋଲବରେସନ କେନାଲ ଦ୍ୱାରା ନେଇ ଯାଉଛନ୍ତି ।

ପାଣି କୁମେରୁରୁ ସୁମେରୁକୁ ଘଉଣ୍ଡ ମାରେ । ପାଣି ସମୁଦ୍ରରୁ ଆକାଶକୁ ଉଠି ପୁଣି ଚକର କାଟି ତଳକୁ ଆସେ । ପବନ ଲଙ୍କା ପାଖରୁ ବାହାରି ଉତ୍ତର ଦକ୍ଷିଣ ଘୁମି ଘୁମି ଫେରି ଆସେ । ବାୟୁର ନାଇଟ୍ରୋଜନ ସେମିତି ଆକାଶ ଓ ପୃଥିବୀ ଘଉଣ୍ଡ ମାରେ । ମଣିଷ ମଧ୍ୟ ମଲାପରେ Tree Spirit ଓ Animal Spirit ହୋଇ ଘଉଣ୍ଡ ମାରେ । ଟଙ୍କା ବି ସେମିତି ବାହାରୁ ନିଜ ଦେଶକୁ ଆସି ରହିବାକୁ ବିରକ୍ତ ଲାଗିଲେ ପୁଣି ତାହାର ବାପ ଘରକୁ ଫେରିଯାଏ ।

ଝିଅ ସେମିତି ବାପ ଘରକୁ ତାହାର ଘଉଣ୍ଡ ପକାଇ ଦେଇ ଆଉ ଗୋଟିଏ ସ୍ଥାନରେ ଖୁଣ୍ଟ ପୋତେ । ଶାଶୁ ଘର ହେଲା ରେଳର ଓ୍ୱାଟରିଙ୍ଗ ଷ୍ଟେସନ ।

ମଣିଷର ବୁଦ୍ଧି ବି ସେମିତି ଓଲମିରୁ ଚାଲାଖ ହୋଇ ପାରି ପୁଣି ଫେରେ ଓଲମି ଆଡ଼କୁ ।

ଶାଶୁ ପୂର୍ଣ୍ଣପ୍ରଭା ଦେବୀ, ଶଶୁର ଓ ନଣନ୍ଦ ଯାଇଥିଲେ ମୋର ହୋଣ୍ଟ୍ରର "ପାକା ଦେଖା" କରିବାକୁ ଭୁବନେଶ୍ୱର । ଆଗରୁ ନମ୍ବର ଦେଇ ସାରିଥିଲେ । ଗଲେ ଟେଲିଫୋନ କରି ପୁଅକୁ କହି ଦେବାକୁ ।

କାରଣ ପୁଅ ନିଜର ମତକୁ ମାଆ ଉପରେ ଲଦି ଦୋଷ କିଣିବା ବଦଳରେ ମାଆର ମତକୁ ନିଜ ମୁଣ୍ଡରେ ଚଢ଼ାଇବା ସପକ୍ଷରେ । ନ ହେଲେ କି ସଂସାର ରହିବ ?

ବୋହୂ ସାଙ୍ଗରେ କି କାମ ? କଥା ଭାଷା ସିନା ମୁରବୀମାନଙ୍କ ସାଙ୍ଗରେ । ବୋହୂ ଚଦାରଖି ରହିଗଲି ଇଂରାଜୀ ଏମ୍. ଏ ନଣନ୍ଦ ଉପରେ ।

ବୋହୂ ଅମିତା ମଧ୍ୟ ନଣନ୍ଦ ଅପା କହି ଗୋଟାଏ ଭୂମିଷ୍ଠ ସାଲ୍ୟୁଟ ମାରି ଦେଲା । ନଣନ୍ଦ ଅପାର ବୟସ କମ୍ ହେଲେ କ'ଣ ହେଲା ଭଉଜ ଠାରୁ ଗୁଣଖଣ୍ଡେ ବେଶି ଉଚ୍ଚା । ସ୍ମା' ଛଡ଼ା ଇଂରେଜୀ ଜ୍ଞାନ, ରେଭେନସା କଲେଜ, ମଙ୍ଗଳାବାଗ କୋଠା ଆଦି ଅନେକ ପଦଏଣ୍ଡ ରହିଛି । ପୁଣି ମାଇଛନ୍ତି ନିଜର ମଟରରେ ।

ଦୁଇ ଆଡ଼େ ଖୁସାମଦ୍ । ଇଣ୍ଟରନାଲ ପରୀକ୍ଷକ ଘର ଭିତରେ ଜଣଙ୍କର ସ୍ତବ ଶୁଣୁଥାଏ । ଅନ୍ୟ ଭଉଣୀମାନେ ହେଲେ ଲାବରେଟରୀ ଆସିଷ୍ଟାଣ୍ଟ, ବେହେରା ଓ ପାଣିଦେବା ଲୋକ । ବାହାରେ ଏକ୍ସଟରନାଲ ପେଆରଙ୍କ ପାଖରେ ଦଳେ ଛାତ୍ରୀ ବଗିଚାରେ ଗାନା ଗାଉଥାନ୍ତି ।

ମଜ୍ଜା ବେଶି ହେଉଛି ବାହାରେ । ତେଣୁ ଇଣ୍ଟରନାଲ ଚଞ୍ଚଳ ଫେରି ଆସିଲା । ଏକ୍ସଟରନାଲ ଶାଶୂ ଶଶୁର ଉଠିଲେ ।

କ୍ୱାଟରର ଫାଟକ ପାଖରେ ମୋର ସମୁଧି ମେଜର୍‌ର ଶେଷ ଚିହ୍ନ ଦେଖାଇ ଦେଲେ । ଫାଟକ ପାଖରୁ ସେ ପିତୃ ସୁଲଭ କଅଁଳ ବାତ୍ସଲ୍ୟଭରା କଣ୍ଠରେ ଡାକଲେ ମାମୀ—ମାମୀ ଲୋ ।

ସତକୁ ସତ ମାମୀ ଆସିଲା । କନ୍ତୁ ଧାଇଁ ଧାଇଁ । ଫାଟକ ପାଖରେ ଠିଆ ହୋଇଗଲା । ସେଇଠୁ ସମୁଧି କହିଲେ—ମାଆ, ଯାଆ । ଏମିତି ଡାକୁଥିଲି । ସେ ପୁଣି ଧାଇଁ ଧାଇଁ ଚାଲିଗଲା ।

ଶାଶୂ ପୁଣ୍ୟପ୍ରଭା ପଚାରିଲେ—କାହିଁକି ଡାକଥିଲେ ?

ହସି ସମୁଧି କହିଲେ—ଦେଖାଇ ଦେବାକୁ ଯେ ମୋର ଝିଅର ଗୁଣ ନାହିଁ । ସେଇଠୁ ଆନନ୍ଦରେ କହିଲେ—ଜାଣି ନାହାନ୍ତି ଆପଣମାନେ ।

ସ୍ତ୍ରୀଟା ଭଲ ଦେଖିବା ଦରକାର । ଗୋଟାଏ ବୋହୂ ବାହାଘର ପରେ ସ୍ତ୍ରୀଟୀ ବୋଲି ଜଣା ପଡ଼ୁଥିଲା । ଆମର ଚଉରର ଲୋକେ ସନ୍ତୁଷ୍ଟ ହେଇ ଫେରିଗଲେ । ପୁଅକୁ ନିଜର ପସନ୍ଦ ଜଣାଇ ଦେଲେ ।

ବାହାଘର ପରେ ଦେଖାଗଲା ଯେ ବୋହୂ ସବୁବେଳେ ମାଟିରେ ଲୋଟୁଥିବା ସାଇଆ ଓ ଶାଢ଼ୀ ପିନ୍ଧି ଚାଲୁଛି ।

—ହେ ମାମୀ । ମାଟିରେ ଲାଗୁଛି ସାଢ଼ୀ ସାଇଆ । ଟିକଏ ଟେକିକରି ପିନ୍ଧ । ଚାପ ଦବିଲେ ଖରାପ କ'ଣ ?

ମାମୀ କିନ୍ତୁ ଏହି ବିଷୟରେ ଘୋର ଅବାଧ୍ୟ । ସେ କହେ ଯେ ସେମିତି ନ ପିନ୍ଧିଲେ ତାକୁ ଅଡୁଆ ଲାଗେ—ଲାଜ ଲାଗେ । ତା'ର ସାଙ୍ଗମାନେ ସେମିତି ପିନ୍ଧୁଥିଲେ । ଆଉ ସେ ପିନ୍ଧୁଛି ।

ମାମୀର କଠିକ ରହଣୀରେ ବୃଷ୍ଟି ରହିଲା ବାହାଘର କୁଣିଆ, ବେଘର ଫେରସ୍ତ, ଦୋକାନ ବାକି ଶୁଝା ଆଉ ଝିଅର ଏମ୍. ଏ. ପଢ଼ିବା ଆଦି ଶାଶୂଙ୍କ କାମ—ସବୁ ଶାଶୁଙ୍କର କାମ ।

ପୁଅ ବୋହୂ ଗଲେ ଦିଲ୍ଲୀ ।

ରାତି ଆସିଲା—ମାମୀ ଏମିତି ଚାଲୁଛି କ'ଣ ? ମୁଁ କ'ଣ ତାକୁ ଚାଲିବା ଶିଖେଇବି ? ମୋର ଡିଉଟି ପରେ ରାତି ଆଠଟା ନଅଟାରେ କ'ଣ ଚାଲିବା ଶିଖେଇବି ? ସକାଳ ଆଠଟା ଆଗରୁ ବାହାରି ଯିବାକୁ ପଡ଼ୁଛି ।

ଶାଶୁ ଭାବିଲେ—ଇଏ କି କଥା ? ଚାଲି ଶିଖି ନାହିଁ କ'ଣ ? ......ହେଇପାରେ ଦିଲ୍ଲୀରେ ରହୁଥିବା ଲୋକ କ'ଣ କେମିତି ଚାଲୁଥିବେ ।

ଯେତେବେଳେ ପୁଅ ବଡ଼ବାବୁ ଜଗୁଆଇ ପଟଣାରେ ବଦଳି ନେଲେ ସେତେବେଳକୁ ଶାଶୁ ପୁଣ୍ୟପ୍ରଭା ଦେବୀଙ୍କ ଉପରେ କାମ ରହିଲା ଅନେକ ।

ମାମୀ ଇଂରାଜୀ କହିବା ଅଭ୍ୟାସ କରିବ । ଇଂରାଜୀ ପତ୍ରିକାଟିଏ ପଢ଼ି ବୁଝି ପାରିବ । ଟେବୁଲରେ କେମିତି ଆଉ ଚାମଚ ଜଣକ ସାଙ୍ଗରେ

ଖାଇବାକୁ ହୁଏ ଓ ପରଶିବାକୁ ହୁଏ—ସେତକ ଠିକଣା କରିବ । କଥା ଶୁଣିଲା ବେଳେ ପାଟିଟା ମେଲା କରି ବସୁଛୁ—ସେ ଅଭ୍ୟାସ ଛାଡ଼ିବ । 'ଗୁଲବା' ଶିଖିବ । ଏହା ଛଡ଼ା ବି. ଏ. ପରୀକ୍ଷା ରହିଛି ।

ପୂଜା ଗଲେ । ଏଣେ ମୋର ବୋହୂର ସବୁବେଳେ ବାନ୍ତି ଉଛାଳ ଆରମ୍ଭ ହେଲା—ନରଭସ୍ ନସିଆ ।

କିଏ କହିଲା ପିଲା ହେବ । ମାମୀ କହିଲା—କଟକ ଜଳବାୟୁ ତାହାର ଦେହରେ ସହୁ ନାହିଁ । କିଏ ଭାବିଲା—ଦାନ୍ତ ରୋଗ ଅବା ପେଟ ରୋଗ ।

ସବୁ ପରୀକ୍ଷା ହେଲା—କିଛି ନାହିଁ । ପୁରୁଣା ଡାକ୍ତର ରାଜକିଶୋର ଦାସ ମେଡ଼ିସିନର ଆସୋସିଏଟ୍ ପ୍ରଫେସର । ସେ କହିଲେ—ଭୟ ବାହ୍ରାତ ହେଉଛି ।

—କି ଭୟ ? କ'ଣ ପାଇଁ ?

—ଶାଶୁ କୁ ଭୟ ।

ଶାଶୁ ଭାବିଲେ ବୋହୂକୁ ଗେଲ ନ କଲେ ଘସା ଆଉଁସା କଲେ ଭଲ । ଡର ଭାଙ୍ଗିବ । ଏଣେ ପୁଣ୍ୟପ୍ରଭା ଦେବୀ ତାଙ୍କୁ ଭୟ କରିବା ସ୍ତରରେ ଗୋଟିଏ ବୋହୂ ପାଇ ଯିବାରୁ ଭାରି ଖୁସି ହେଉଥାନ୍ତି ଯେ ଅମୁକ ଅମୁକ ଘରେ ଜବାବ ଦେଉଥିବା, ବେଖାତିର କରୁଥିବା ବୋହୂ ପରି ଆମର ଅମିତା—ଅମୃତା—ମାମୀ ନୁହେଁ । ଈଶ୍ୱରଙ୍କୁ ଅଶେଷ କୃତଜ୍ଞତା ଜ୍ଞାପନ କଲେ ।

ନିଜର ପସନ୍ଦକୁ ହିପ୍-ହିପ୍-ହୁରେ ।

ଦେଖାଗଲା ଔଷଧ ହେଉଛି—ଖାଲି ହଜମୀ । ଲିକ୍ୱିଡ ଡାଇଭଲ ।

ଦାନ୍ତ ପ୍ରଥମ କାମ । ସେ ଠିକ୍ ହୋଇଗଲା । କିନ୍ତୁ ବାନ୍ତି ଘନ ଘନ ହେଉଛି କ'ଣ ପାଇଁ ? କି ଡର ? କାହିଁକି ଡର ?

ଫ୍ରାନ୍ସିସ୍ ମାଢ଼ ଆସୁଥାଏ । ମୋର ବୋହୂର ଗୋଟିଏ ଗୋଡ଼ ସାମାନ୍ୟ ସ୍ଲେଟ । ବେକରେ ଗୋଟିଏ ସ୍ଲେଟ ଆବୁ ପଞ୍ଚ ଆଉଲୁ ।

ଛଏ ଜଣା ପଡ଼ିଗଲା । କିନ୍ତୁ ଏକଥା ଶାଶୂ ଆଉ କାହାକୁ କହିବେ କେମିତି ?

ବେକର ଆବୁ ଲୁଚାଇବାକୁ ଚବଶ ଘଣ୍ଟା ମୁଣ୍ଡରେ ଲୁଗା ରହିଲା । ଏଇଟା ହେଲା କଟକ ମଙ୍ଗଳାବାଗ ଘରର ଗୋଟିଏ ଗ୍ରେଟିଆ ସିକ୍ରେଟ । କେହି ଜାଣିଲେ ନାହିଁ ।

ବୋହୂ ଆସି ଶାଶୁ କୋଡ଼ରେ ଦିନକୁ ଅଧଘଣ୍ଟା ଘଣ୍ଟାଏ ବସି ଗଲା ହେଲା । ଶାଶୁ ବି ପ୍ରତି ଅଠର ଅଠେଇଶି ଘଣ୍ଟା ତଫାତରେ ବାନ୍ତି ଉଚ୍ଛାଳ ସାଷ୍ଟମ କରିବାକୁ ବୋହୂ ଗୋଡ଼ଘଷା ଆରମ୍ଭ କରିଦେଲେ ।

ବୋହୂର କୃତଜ୍ଞତା ଅଛି । ସେ ମଧ୍ୟ ଶାଶୁଙ୍କୁ ଘଷିଲା ।

ଘରେ ଝିଅ ତାହାର ପରୀକ୍ଷା ପାଇଁ ବ୍ୟସ୍ତ । ବାବୁ ଯିବେ କାମରେ । ରହିଗଲେ ଦୁଇ ପ୍ରାଣୀ—ଶାଶୁ ଓ ବୋହୂ । ଦିହେଁ ଦିହିଙ୍କୁ ଇଚ୍ଛାରେ ଅବା କର୍ତ୍ତବ୍ୟ ଦୃଷ୍ଟିରୁ ଅବା କେହି କାହାର ଧାରୁଆ ହୋଇ ରହିବେ ନାହିଁ ବୋଲି ଘଷାଘଷି ଆରମ୍ଭ କରିଦେଲେ ।

ବୋହୂ ଔଷଧ ଖାଇବାକୁ ଭୁଲେ । ମନେ କରି ଖୁଆଇ ସମୁଦୁଣୀଙ୍କର ସ୍ଥାନ ନେବାକୁ ହୁଏ ।

ଅହୋରାତ୍ର ପୂଜା କରିବାଲି ମୋର ବୋହୂ ଅମିତାକୁ କହିଲେ ବି ସେ ସଞ୍ଜ ଦେବାକୁ ଓ ଧୂପ ଦେବାକୁ ଭୁଲିଯାଏ । ଏଣେ ବାନ୍ତି ଉଚ୍ଛାଳ ଚାଲୁ ଥିବାରୁ ମୋର ବୋହୂକୁ କିଛି କୁହାଯାଏ ନାହିଁ । କିନ୍ତୁ ଶାଶୁ ବେଳେବେଳେ ଭାବେ ଯେ ତାଙ୍କୁ ଯେଉଁ କୁହାଯାଉଥିଲା ଯେ ମାମୀର ପୂଜା ପାଇଁ ପଢ଼ା ନଷ୍ଟ ହୁଏ—ଏଗୁଡ଼ାକ କ'ଣ ବହୁତ ଦିନ ତଳର କଥା ?

ବୋହୂ ମଲ ପରେ ନଣନ୍ଦେଇ ଝିଙ୍କ ବାବୁ ଅନେକ ଥର କହିଲେଣି—କ'ଣ ଭଉଜ ! ଚାଲି ଶିଖଉ ଥିଲ, ଟେବୁଲ ମାନରସ୍ ଶିଖଉ ଥିଲ, ଇଂଲସ ସ୍ପିକିଙ୍ଗ୍ ଟ୍ରେନିଂ ଦେଉଥିଲ । ଏବେ ବୋହୂ କାହିଁ ? ଆମେ ବୋହୂ ଚଳାଉଛୁ । ସେଠି ସେମାନେ ବୋହୂ ଚଳାଉଛନ୍ତି କେମିତି ? ଆଉ ତୁମେ ?

—କ'ଣ ବା କୁହାଯିବ ?

ରଙ୍ଗଟା ମଉଳି ଗଲା । ବେକର ଆବୁ ଓଢ଼ଣା ଚଳେ ଲୁଚିଗଲା । ପାଦ ଲୋଟଣୀ ଶାଢ଼ୀ ଯାଇଆ ଭିତରେ ଗୋଟିଏ ଗୋଡ଼ ଆର ଗୋଡ଼ ଠାରୁ ଅଳ୍ପ ଛୋଟ ହୋଇଗଲା । ଉଚ୍ଚତା ଗୃହ ଫୁଟ ଦଶ ଇଞ୍ଚ ହୋଇଗଲା । ଫାଷ୍ଟକ୍ଲାସ ମାଟ୍ରିକୁଲେସନକମ୍ପାଟମେଣ୍ଟାଲ ହୋଇଚଲେ । ଖୁବ୍ ଭଲ ବି.ଏ ଫାଇନାଲରେ ଖାଲି ଓଡ଼ିଆ ଛଡ଼ା ଅନ୍ୟ କେଉଁଥିରେ ପାସ୍ ନମ୍ବର ରହିଲା ନାହିଁ । ପାସ ନମ୍ବର ଅଣାଯାଇ ପାରିବ କି ନାହିଁ ସେ କଥା ଶିକ୍ଷାବିଦ୍ ମାନେ କହିଲେ କହି ପାରିବେ ।

ଏବେ ହେବ କ'ଣ ?

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କର ସିଣ୍ଡେଟ ଷ୍ଟୋର ପରି ଏଇ ଷ୍ଟୋର ସିଣ୍ଡେଟ—ଟପ୍ ସିଣ୍ଡେଟ ।

କାରଣ ବିଚକ୍ଷଣ ସାମ୍ବାଦିକ ଭାଇ ସାହେବ ଖବର କାଗଜରେ ମାମୀ ଅତି ସୁନ୍ଦର ଓ ଉଚ୍ଚତା ପାଞ୍ଚ ଫୁଟ ଉପରେ ଲେଖାଲେଖି ଚଳାଇଛନ୍ତି । ଆଉର ବିଚକ୍ଷଣ ଭାଇ ଡାକ୍ତର ସାହେବ ମାମୀର ଦାନ୍ତ ବେମାରି, ମୁଣ୍ଡ ଦୁର୍ବଳତା ଓ ସ୍ନାୟୁବିକ ଅସୁବିଧା କଥା ଜାଣି ପାରୁ ନଥିବାରୁ ଗପୁଛନ୍ତି ଯେ ଏସବୁ ହେଉଛି ଅପରାଧୀ ଶାଶୁ ଘରର ମିଛ ବୟାନ । ବାପା ଏଣେ ବ୍ୟାଂକ ଗହଣା ଦେଇ ମଙ୍ଗଳାବାଗରେ ଦୁଇ ଲକ୍ଷ ଦେବାର ସାମର୍ଥ୍ୟ ଉପରେ ଜୋର ଦେଇଛନ୍ତି ବାରମ୍ବାର—ନିଜର ସ୍ପିଚ୍ ମାନଙ୍କରେ ।

ମଙ୍ଗଳାବାଗ ଲୋକଙ୍କର ଧାରଣା ପୁଳାଏ ମାରିଆଣି ଆଉ ବି ପୁଳା ଧରିବାକୁ ଏଇମାନେ ଯୋଗାଡ଼ କରୁଥିଲେ । ପୁଲିସ ପହଞ୍ଚି ଯାଇଛି । ···ଆଉ ଟଙ୍କା ଧରି ପାରୁ ନାହାନ୍ତି ।

ଯେଉଁମାନେ ଝିଅ ଯାଚୁଥିଲେ ଅମିତା ମରିଗଲା ପରେ ଈଶ୍ୱରଙ୍କୁ ଥାଙ୍କସ୍ ଦେଲେଣି ଯେ ସେମାନେ ରକ୍ଷା ପାଇ ଯାଇଛନ୍ତି । ତାଙ୍କର ପ୍ରସ୍ତାବିତ ଝିଅ କ'ଣ ବଞ୍ଚିଥାନ୍ତା ?

ଲୋକମତ ଗର୍ଜୁଛି । ଗର୍ଜନ ଟିକିଏ ଅଳ୍ପ ଶୁଭିଲେ କାଢ଼ୁଆ ଭାଇମାନେ ଆଉ ଥରେ ଲାଉଡ଼ ସ୍ପିକରକୁ ତେଜ କରୁଛନ୍ତି । ସମୁଧି ଓ

ସମୁଧିଙ୍କର ସନ୍ତ୍ରୁ ଓ ଅଷ୍ଟମୀ ବନ୍ଧୁମାନେ ଭାବୁଛନ୍ତି ଯେ ଥରେ ଶାଶୂ ଗିରଫ ହୋଇଗଲେ ସେମାନଙ୍କର କାହାଣୀ ନୂଆ ରୂପ ନେଇଯିବ ।

ଏପରି ଅବସ୍ଥାରେ ବୋହୂ ଅବା କ'ଣ କରିପାରିଥାନ୍ତା ?

ଶାଶୂ ଧମୁଛନ୍ତି ଓ କୋଳରେ ବସାଇ ଗେଲ କରୁଛନ୍ତି ବୋଧହୁଏ ପୁଅ ପାଖରେ ଶାଶୁର ଇଜଜତ୍ ବୋହୂ ରଖିବ ବୋଲି ।

ଏବେ ବୋହୂର ମଞ୍ଜୁଷା ଶଠି ଲେଖାଇ ରଖିଛନ୍ତି କଟକ ମଙ୍ଗଳାବାଗ ଘର ଓ ଦିଲ୍ଲୀର ତିହାର ଜେଲ ସମାନ । ସେ ଏମାନଙ୍କୁ ପାଠ ଶିଖେଇ ଦେବେ ।

ଶାଶୂଙ୍କୁ ଡର ଅମିତା ଦିବ ଯାଉଛି । ଶାଶୂ କ'ଣ କଲି କି ନ କଲି—ସେ କଥା ଅସ୍ପଷ୍ଟ ରହୁଛି ।

ଶାଶୂ କ'ଣ ବୋହୂର ଉଚ୍ଚତା କମାଇ ଦେଲି ? ବୋହୂର ଗୋଟିଏ ଗୋଡ଼କୁ ଆର ଗୋଡ଼ ଠାରୁ ଶ୍ରେଷ୍ଠ କରି ଦେଲି ? ବୋହୂର ବେକରେ ଗୋଟିଏ ଆବୁ ଗର୍ଦ୍ଦନ ଉପରେ ଥାପି ଦେଲି ? ବୋହୂ କାହାରି କଥା ଶୁଣିଲାବେଳେ ଅନ୍ୟର ମୁହଁକୁ ଭକୁଆ ହୋଇ ପାଟି ମେଲି କରି ରହିବାକୁ କହିଲି ? ବୋହୂର ଇଂରେଜୀ, ହିନ୍ଦୀ ଓ କମନ୍ ସେନସ୍ ଲୋପ କରି ଦେଲି ? ଆଜି ବୋହୂକୁ ପ୍ରାୟ ପ୍ରତିଦିନ ବାନ୍ତି କରାଇଲି ଓ ଡାକ୍ତର ଡାକି ଦେଖାଇଲି ?

ଏହାର ଉତ୍ତର ଦେଇଛନ୍ତି ଡ: ମହତାବ ।

ସ୍ୱରାଜ୍ୟ ତା ନଭେମ୍ବର ଚଉଦ ୧୯୮୪ ।

ତ୍ରୁଟି ଓ କୁକର୍ମକୁ ଗୋପନ ରଖିବା ମଣିଷର ସହଜାତ ପ୍ରକୃତି —ଡ: ମହତାବ ।

ଭୁବନେଶ୍ୱର ୧୩।୧୧

ମନୁଷ୍ୟ ନିଜର ଜୀବନର ସମସ୍ତ ଅନୁଭୂତିକୁ ଖୋଲାଖୋଲି ଭାବରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରିଥାଏ । କାରଣ ଏହା ମନୁଷ୍ୟର ସହଜାତ ଗୁଣ । ପ୍ରତ୍ୟେକ ମନୁଷ୍ୟ ତାହାର ଜୀବନରେ ଭଲ କାର୍ଯ୍ୟ ସାଙ୍ଗକୁ ଖରାପ କାର୍ଯ୍ୟମାନ କରିଥାଏ । ତେଣୁ ତାଙ୍କୁ ଯଦି ତାଙ୍କ

ଜୀବନର ଅନୁଭୂତି ସର୍ବସାଧାରଣଙ୍କ ଆଗରେ ପ୍ରକାଶ କରିବାକୁ ଲୁହାଯାଏ ତେବେ ସେ କେବଳ ନିଜ ଜୀବନର ଭଲ କଥା ଗୁଡ଼ିକ ହିଁ କହିବ ବୋଲି ଡ: ହରେକୃଷ୍ଣ ମହତାବ ଗତ କାଲି "ଶିଳ୍ପ ଓ ଚେତନା" ଅନୁଷ୍ଠାନ ପକ୍ଷରୁ ଜାତୀୟ ଆଲୋଚନା ଚକ୍ର ଅନୁଭୂତି ସନ୍ଧ୍ୟା ଅନୁଷ୍ଠାନରେ ଉଦ୍‌ବୋଧନ ଦେଇ ଏହା ପ୍ରକାଶ କରିଥିଲେ ।

ଡ: ମହତାବ କହିଲେ ଯେ ଭାରତବାସୀ ପ୍ରାୟ ଏକ ହଜାର ବର୍ଷ ଧରି ପରାଧୀନ ରହିବା ପରେ କାହାରି ମନୋଭାବ ସହଜରେ ଜାଣିବା କଷ୍ଟକର ହୋଇ ପଡ଼ୁଛି । ସେ କହିଲେ ଯେ ଲୋକମାନଙ୍କର ମନୋଭାବ ଜାଣିବା ଏତେ କଠିନ ହୋଇ ପଡ଼ୁଛି ଯେ ପ୍ରଧାନ ମନ୍ତ୍ରୀଙ୍କୁ ତାଙ୍କର ଅତି ବିଶ୍ୱସ୍ତ ଦେହରକ୍ଷୀଙ୍କ ଗୁଳିମାଡ଼ରେ ମୃତ୍ୟୁ ବରଣ କରିବାକୁ ପଡ଼ିଲା ।

ଏହି ମର୍ମରେ ରାଜ୍ୟ କୃଷି ମନ୍ତ୍ରୀ ଶ୍ରୀ ସୋମନାଥ ରଥ, ଓଡ଼ିଶୀ ନୃତ୍ୟ ଗୁରୁ ଶ୍ରୀ ପଙ୍କଜ ଦାସ, ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ, ଶ୍ରୀ ବିପିନ ବିହାରୀ ଖମାରୀ, ଶ୍ରୀ ଅବୋଧ ନାରାୟଣ ରେଡ଼୍ଡୀ, ଶ୍ରୀ ପ୍ରସନ୍ନ କୁମାର ପାଣିଗ୍ରାହୀ, ଅଧ୍ୟାପିକା ଶ୍ରୀମତୀ ସୁଷମିତା ମିଶ୍ର ଓ ଶ୍ରୀ ସୁଧାଂଶୁ ରାଜତରାୟ ଜୀବନର ଅନୁଭୂତି ବର୍ଣ୍ଣନା କରିଥିଲେ ।

ସ୍ୱରାଜ୍ୟ ୧୬ । ୧୧ । ୮୪

ଏଣେ ଖବର କାଗଜରେ ପ୍ରଚାର—ଏଇ ପ୍ରଚାର ବିରୁଦ୍ଧରେ ।

ସମାଜ ୧୪।୧୧।୮୪ ପୃ ୨

ଯୌତୁକ ପ୍ରଥାକୁ ନେଇ ଅଭିସନ୍ଧିମୂଳକ ଟେଲିଭିଜନ ପ୍ରସାରଣ ।

ନିଉୟର୍କ ୧୩।୧୧—ଯୌତୁକ ଯୋଗୁଁ ଶାଶୁ ଘରେ ଲାଞ୍ଛିତ ହୋଇ ମୋଡ଼ ମରୁଥିବା ଘଟଣା ସମ୍ପର୍କରେ ଏକ ଚଳଚ୍ଚିତ୍ର ଗତ ରବିବାର ଦିନ ଆମେରିକାର ଟେଲିଭିଜନ ମାଧ୍ୟମରେ ପ୍ରସାରିତ ହୋଇଛି । ଏହା ଏଠାରେ ଭାରତୀୟମାନଙ୍କ ମଧ୍ୟରେ ଘୋର ବିତୃଷ୍ଣା ଜନ୍ମାଇଛି ।

କଲମ୍ବିଆ ବ୍ରଡକାଷ୍ଟିଂ ସିଷ୍ଟମ ଏକ ଘଣ୍ଟା ବ୍ୟାପୀ ଚଳଚିତ୍ରଟି ଶେଷରେ ମନ୍ତବ୍ୟକ୍ତ କରିଛନ୍ତି ଯେ ଏହି ଚଳଚିତ୍ର ଗ୍ରହଣ କରିବା ଲାଗି ସେମାନଙ୍କୁ ଭାରତରେ ଅନୁମତି ମିଳି ନଥିଲା ଓ ଲୁଚି ଚୋରିରେ ସେମାନେ ଏହାକୁ ପ୍ରସ୍ତୁତ କରିଛନ୍ତି ।

ଏହି ସଂସ୍ଥାର ଜଣେ ସମ୍ବାଦଦାତା କହିଛନ୍ତି ଯେ ଜଣେ ଭାରତୀୟ କର୍ମକର୍ତ୍ତା ଏଥି ନେଇ ବଡ଼ ବିବ୍ରତ । କାରଣ ଭାରତ ଏଣେ ମହାକାଶରେ ନିଜର ଆସ୍ଥାନ ଦୃଢ଼ କଲା ବେଳକୁ ତେଣେ ଦେଶର ସାମାଜିକ ବ୍ୟବସ୍ଥା ମଧ୍ୟଯୁଗୀୟ ।

ସମାଜ ୧୬।୧୧।୮୪

× × ×

ଓଡ଼ିଆ କରଣ ସମାଜର ସ୍ତର ହେଉଛି କଟେଇଆ ଶ୍ରେଷ୍ଠ ମାମଲତକାର ଓ ମିଛ ସାକ୍ଷୀର ସ୍ତର । ରାଜନୈତିକ ଦୃଷ୍ଟିକୋଣରୁ ଦେଖିଲେ ଠିକ ଜୀବନିଆ ଚୁଗୁଲିଆ ଓ ଗୁଜବିଆ ସ୍ତର । ୧୯୮୪ ମସିହାରେ ଚୁଗୁଲି, ଗୁଜବ ଓ ପଟ୍ଟାପଟ୍ଟି କ'ଣ ଏହାଠାରୁ ସାମାନ୍ୟ ଅଧିକ ନ ହେବାର କଥା ବୋଲି ଓଡ଼ିଶା ସରକାରଙ୍କର G.A. ଓ A.F.A.ମାନେ କହିବେ ? ଯାହାକୁ କ'ଣ ବୁଝାଯିବ ନାରୀ ନର୍ଯ୍ୟାତନା ?

ସମାଜ ତା ୩୦।୧୦।୮୪ ପୃ ୮

ନାରୀ ନର୍ଯ୍ୟାତନାର ପ୍ରତିକାର ପାଇଁ ବିଭିନ୍ନ ମହିଳା ସଂଗଠନର ତତ୍ପରତା ।

କଟକ ୨୯।୧୦—ଓଡ଼ିଶାରେ ନାରୀ ନର୍ଯ୍ୟାତନାର ଦୃଢ଼ ପ୍ରତିରୋଧ ପାଇଁ ଇତି ମଧ୍ୟରେ ବିଭିନ୍ନ ମହିଳା ସଂଗଠନଗୁଡ଼ିକ ସକ୍ରିୟ ହୋଇ ଉଠିଥିବା ଲକ୍ଷ୍ୟ କରାଯାଉଛି ।

ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁ ସବୁ ନାରୀ ନର୍ଯ୍ୟାତନାମାନ ଘଟୁଛି ଏବଂ କେତେକ ସ୍ଥାନରେ ନାରୀମାନଙ୍କୁ ଯେପରି ହତ୍ୟା କରା-ଯାଉଛି ତାହାର ଯଥାଯଥ ତଦନ୍ତ କରାଯାଉ ନଥିବା ଅଭିଯୋଗ ହେଉଛି ।

ଫଳରେ ଅତ୍ୟାଚାରୀମାନେ ନିର୍ଭୟରେ ଗୋଟିକ ପରେ ଗୋଟିଏ ଘଟନା ଘଟାଇ ଚାଲିଛନ୍ତି ।

ତାହା ଏବେ ଉଦ୍‌ବେଗର କାରଣ ହୋଇଛି ବୋଲି ବହୁ ମହିଳା ସଂଗଠନ ରାଜ୍ୟ ଲିଗାଲ ଏଡ଼ କମିଟିର ଦୃଷ୍ଟି ଆକର୍ଷଣ କରିଛନ୍ତି ।

ଏହି ସଂପର୍କରେ ବିଭିନ୍ନ ମହିଳା ସଂଗଠନ ପକ୍ଷରୁ ଏକ ସର୍ଭେ କରି ତାହାର ଉଚିତ ପ୍ରତିକାର ଓ ଦୋଷୀଙ୍କୁ ଦଣ୍ଡ ବିଧାନର ବ୍ୟବସ୍ଥା କରିବା ପାଇଁ ରାଜ୍ୟ ଆଇନ ସହାୟକ ଓ ପରାମର୍ଶଦାତା କମିଟିର ସହଯୋଗ (State Legal Aid and Advisory Committee. Cantonment, Cuttack-1) କାମନା କରିଛନ୍ତି ।

ଉତ୍କଳ ମହିଳା ସମିତିର (ଚହ୍ଲାଣ୍ଡିଆ, କଟକ-୧) ସଂପାଦିକା ଶ୍ରୀମତୀ ସୁପ୍ରିୟା ଦାସ, କୁମାରୀ କଲ୍ୟାଣ ସମିତି ପକ୍ଷରୁ ଶ୍ରୀମତୀ ସୌଦାମିନୀ ପାଣି, ଓଡ଼ିଶା ନାରୀ ସେବା ସଂଘ, (ବକ୍‌ସିବଜାର-କଟକ-୧) ପକ୍ଷରୁ ଶ୍ରୀମତୀ ଅନିମା ଘୋଷ, ଭୁବନେଶ୍ୱରସ୍ଥିତ ଉତ୍କଳ ମହିଳା ସମିତି ପକ୍ଷରୁ ଶ୍ରୀମତୀ ଚନ୍ଦ୍ରପ୍ରଭା ପଟ୍ଟନାୟକ, ଗ୍ରାମୀଣ ମହିଳା ସମିତିର ଶ୍ରୀମତୀ ଅନସୂୟା ନନ୍ଦ, ନୈତିକ ସାମାଜିକ ସ୍ୱାସ୍ଥ୍ୟ ସେବା ସଂସ୍ଥା ପକ୍ଷରୁ ଶ୍ରୀମତୀ ରାଜାରାଣୀ ଦେବୀ (ଅବସରପ୍ରାପ୍ତ ଡି. ଡ଼ି. ପି.ଆଇ) ସ୍ୱଳ୍ପକାଳୀନ ଆବାସିକ ସ୍କୁଲର ଶ୍ରୀମତୀ ମନୋଜା ପଟ୍ଟନାୟକ, ଶ୍ରୀମନ୍ଦିରା ପକ୍ଷରୁ ଡାକ୍ତର ପ୍ରମିଳା ଦେଈ (ଆସୋସିଏଟ୍ ପ୍ରଫେସର) ପ୍ରମୁଖଙ୍କ ସମେତ ଅନ୍ୟ ନଅଗୋଟି ମହିଳା ସଂଗଠନ ପକ୍ଷରୁ ମିଳିତ ଭାବେ ଯୌତୁକ ଓ ଅନ୍ୟାନ୍ୟ କାରଣରୁ ମହିଳାଙ୍କର ମୃତ୍ୟୁ ଘଟଣାଗୁଡ଼ିକର ଯଥାଯଥ ତଦନ୍ତ ହେଉ ନ ଥିବାର ଅଭିଯୋଗ ହୋଇଛି ।

ନିକଟରେ ଏହି ମହିଳା ସଂଗଠନର କର୍ମକର୍ତ୍ତାମାନେ ଓଡ଼ିଶା ରାଜ୍ୟ ଆଇନ ସହାୟକ ଓ ପରାମର୍ଶଦାତା କମିଟିର କାର୍ଯ୍ୟକାରୀ ଅଧ୍ୟକ୍ଷ ମାନ୍ୟବର ବିଚାରପତି ଶ୍ରୀ ରାଧାଚରଣ ପଟ୍ଟନାୟକ, କମିଟିର ସଦସ୍ୟ ସଂପାଦକ ଶ୍ରୀ ସରୋଜକାନ୍ତ ମିଶ୍ରଙ୍କୁ ଭେଟି ଏକ ଦାବୀପତ୍ର ଦେଇଛନ୍ତି ।

ଏଥିପାଇଁ ଏହି ମହିଳା ସଂଗଠନ ପକ୍ଷରୁ ଏକ ନିଯ୍ୟାତନ ନିଷ୍କାନ କମିଟି ମଧ୍ୟ ଗଠନ କରାଯାଇଛି ।

ଏହି କମିଟି କଟକ ମଙ୍ଗଳାବାଗରେ ଗତ ଅଗଷ୍ଟ ଚଉଦରେ ଅମିତା ପଟ୍ଟନାୟକଙ୍କର ସନ୍ଦେହଜନକ ମୃତ୍ୟୁର ଅନୁସନ୍ଧାନ ପାଇଁ ଏକ ସ୍ୱାଧୀନ ନିରପେକ୍ଷ ସଂସ୍ଥା ଦ୍ୱାରା ତଦନ୍ତ କରିବାକୁ ଦାବୀ କରିଛନ୍ତି ।

ସ୍ୱର୍ଗତ ଅମିତା ପଟ୍ଟନାୟକ ରେଭେନସା କଲେଜର ପଦାର୍ଥ ବିଜ୍ଞାନର ରିଡର ଶ୍ରୀଯୁକ୍ତ ହିମାଂଶୁ ମୋହନ ପଟ୍ଟନାୟକଙ୍କର ପୁତ୍ରବଧୂ ତଥା ଦିଲ୍ଲୀରେ ଅବସ୍ଥାନ କରୁଥିବା ଓ ଅତ୍ୟାଧୁନିକ ଆଦବକାଇଦାର ଧୁରନ୍ଧର ଇଞ୍ଜିନିୟର ଶ୍ରୀ ଶୁଭେନ୍ଦୁ ମୋହନ ପଟ୍ଟନାୟକଙ୍କର ମାତ୍ର ଗୃହ ମାସର ନବବିବାହିତା ପତ୍ନୀ, ଉଭୟ ଘରେ ନଥିବାବେଳେ ଏକ ସନ୍ଦେହଜନକ ପରିବେଶ ମଧ୍ୟରେ ଅମିତାଙ୍କର ପରଲୋକ ହୋଇଥିବା କଥା କମିଟି ପକ୍ଷରୁ ଅଭିଯୋଗ ହୋଇଛି ।

ରାଜ୍ୟ ଆଇନ ସହାୟକ ଓ ପରାମର୍ଶଦାତା ବୋର୍ଡର କାର୍ଯ୍ୟକାରୀ ଅଧ୍ୟକ୍ଷ ଏହି ଦାବୀ ପଠାଇଲା ପରେ ଏ ଦିଗରେ ଉଚିତ ପଦକ୍ଷେପ ଗ୍ରହଣ ପାଇଁ ରାଜ୍ୟ ସରକାରଙ୍କର ଉଚ୍ଚ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ ପାଇଁ ଅଫିସକୁ ନିର୍ଦ୍ଦେଶ ଦେଇଛନ୍ତି ।

ଏହି କମିଟି ପକ୍ଷରୁ ଅନ୍ୟ ଏକ ପ୍ରସ୍ତାବରେ ଭଦ୍ରକର ଚରମ୍ପା ନିକଟ ଧଳ ସାହିରେ ଗତ ଫେବ୍ରୁଆରୀ ମାସ ଅଣତିରିଶି ତାରିଖ ଶିବରାତ୍ରି ଦିନ ନବବଧୂ କନକଲତା ତ୍ରିପାଠୀଙ୍କର ଅପମୃତ୍ୟୁ ଘଟଣା ସଂପର୍କରେ ପୁଲିସର ନିଷ୍କ୍ରିୟତା ଏବଂ ଏ ଦିଗରେ ଉପରିସ୍ଥ କର୍ତ୍ତୃପକ୍ଷଙ୍କ କନ୍ୟାପିତା ରହଣ୍ଡ ଗ୍ରାମର ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସ ଦୃଷ୍ଟି ଆକର୍ଷଣ କରି ମଧ୍ୟ କିଛି ଫଳ ହୋଇ ନଥିବା ଅଭିଯୋଗ ହୋଇଛି । ପରିଶେଷରେ ଭଦ୍ରକ ଆଇନ ସହାୟକ ବୋର୍ଡ଼ ଏବଂ ରାଜ୍ୟ ଆଇନ ସହାୟକ ଓ ପରାମର୍ଶ-ଦାତା ବୋର୍ଡର ସଦସ୍ୟ ସଂପାଦକ ଶ୍ରୀ ସରୋଜକାନ୍ତ ମିଶ୍ରଙ୍କୁ ପ୍ରତିକାର ପାଇଁ ଏହି କମିଟି ପକ୍ଷରୁ ଏକ ଚିଠିରେ ଅନୁରୋଧ କରାଯାଇଛି ।

ବୋର୍ଡ଼ ପକ୍ଷରୁ ମଧ୍ୟ ଏହି ଘଟଣାର ତଦନ୍ତ ପାଇଁ ଯେତେ ଚିଠି ଦିଆଗଲେ ମଧ୍ୟ ପୁଲିସ ପକ୍ଷରୁ କୌଣସି ସହଯୋଗ ମିଳୁ ନଥିବା ଅଭି-

ଯୋଗ ହେଉଛି । ତେଣୁ ଏ ସମ୍ପର୍କରେ ରାଜ୍ୟ ଲିଗାଲ ଏଡ୍ ବୋର୍ଡ଼ ରାଜ୍ୟ ସରକାରଙ୍କ ଦ୍ୱାରା କାର୍ଯ୍ୟାନୁଷ୍ଠାନ ପାଇଁ ସୁପାରିସ କରୁଥିବା ଜଣା ପଡ଼ୁଛି । (ସମାଜ ୩୦।୧୦।୮୪)

ଏହି ବିଷୟକି ଗୋଟିଏ ରିପୋର୍ଟ । ଏଥିରେ ଚର୍ଚ୍ଚିତ ଅମିତା ପଟ୍ଟନାୟକ ମୋର ଭଣଜା ବୋହୂ । ଅମିତାର ମୃତ୍ୟୁ ପରେ ଜାନୁଆରୀ ପଞ୍ଚାଅଶୀ ମସିହାରେ ମୋର ଭଣଜାର ବିଭାଘର ପାଇଁ ଓଡ଼ିଆ, ବଙ୍ଗାଳୀ, ହିନ୍ଦୀ ଓ ତେଲୁଗୁ ଭାଷୀ ବୋହୂ ପାଇଁ ମୁଁ ୨୭।୧୦।୮୪ରେ ସମାଜର ନୋଟିସ ଛପାଇଛି । (ପୃଷ୍ଠା ୧୬୭) ହତ୍ୟାକାରୀ ମାଆ ବିଷୟରେ ତଦନ୍ତ ଚାଲିଲେ ମଧ୍ୟ ମାମୁଁ ହିସାବରେ ମୋର ଭଣଜାର ବିବାହ କରାଇବା ଅଧିକାର ଅଛି । ତେଣୁ ଏହି ନୋଟିସରେ ମୋର ଭଉଣୀ ଭିଣୋଇଙ୍କର ବା ଅନ୍ୟ ବନ୍ଧୁ ଜ୍ଞାତିଙ୍କର କିଛି କହିବାର ଅଧିକାର ନାହିଁ । ତଦନ୍ତ ଚାଲୁ । ଦୋଷୀ ସମୁଚିତ ଦଣ୍ଡ ପାଉ । କିନ୍ତୁ ବିଭାଘର ବନ୍ଦ ନ ହେଉ । ଅମିତାଙ୍କର ନିଜର ଲୋକେ ସହଯୋଗ କରିପାରନ୍ତି । * *

ପ୍ରଜାତନ୍ତ୍ର ୨୧।୧୦।୮୪ ପୃ ୪

ମହିଳା କ୍ରିୟାନୁଷ୍ଠାନ କମିଟି କଟକରେ ନାରୀ ନିର୍ଯ୍ୟାତନା ସମ୍ପର୍କରେ ସର୍ଭେ କାର୍ଯ୍ୟ ଆରମ୍ଭ କରିବ ।

କଟକ ୨୮।୧୦ (ଷ୍ଟାଫ୍ ପ୍ରତିନିଧି)

ଯୌତୁକ ଏବଂ ନାରୀ ନିର୍ଯ୍ୟାତନାର ବିବରଣୀ ସଂଗ୍ରହ ଲାଗି କଟକ ସହରର ପ୍ରତ୍ୟେକ ଘର ସର୍ଭେ କରାଯିବ ବୋଲି କଟକ ସହରର ମିଳିତ ମହିଳା ସଙ୍ଗଠନ କ୍ରିୟାନୁଷ୍ଠାନ କମିଟିର ଏକ ବୈଠକରେ ନିଷ୍ପତ୍ତି ହୋଇଛି ।

ଏହି ସର୍ଭେ କାର୍ଯ୍ୟ ଆସନ୍ତା ନଭେମ୍ବର ମାସ ତୃତୀୟ ସପ୍ତାହରେ ଅନୁଷ୍ଠିତ ହେବ ବୋଲି ମହିଳା ସଙ୍ଗଠନର ଜଣେ ମୁଖପାତ୍ର କହିଛନ୍ତି ।

ଗତ ଛବିଶ ତାରିଖରେ କଟକର ବିଭିନ୍ନ ମହିଳା ସଙ୍ଗଠନର ଏକ ମିଳିତ ବୈଠକ ଅନୁଷ୍ଠିତ ହୋଇଥିଲା । ଏଥିରେ ଉତ୍କଳ ମହିଳା ସମିତି, ନାରୀସଂଘ ସଦନ, ଶାନ୍ତି ମୈତ୍ରୀ ମହିଳା ସମିତି, ୟଙ୍ଗ୍ ଉଇମେନ

ଖ୍ରୀଷ୍ଟିୟାନ ଆସୋସିଏସନ (Y. W. C. A) ଆସୋସିଏସନ ଫର୍ ସୋସିଆଲ ହେଲଥ, କୁମାରୀ କଲ୍ୟାଣ ସମିତି, ସ୍ବାଧୀନ ମହିଳା ସମିତି, ସୀମନ୍ତିନୀ, ସର୍ଟ ଷ୍ଟେ ହୋମ, ଶାରଦା ସଦନ ପ୍ରଭୃତିର ପ୍ରତିନିଧିମାନେ ଯୋଗ ଦେଇଥିଲେ ।

ଲିଗାଲ ଏଡ଼୍ ଆଣ୍ଡ ଆଡ଼ଭାଇସ ବୋର୍ଡ଼ର ଅଧ୍ୟକ୍ଷ ମାନ୍ୟବର ବିଚାରପତି ଶ୍ରୀ ଆର୍. ସି. ପଟ୍ଟନାୟକ ଓ ସଭ୍ୟ ସମ୍ପାଦକ ଶ୍ରୀ ସରୋଜକାନ୍ତ ମିଶ୍ର ମଧ୍ୟ ଏଥିରେ ଯୋଗ ଦେଇଥିଲେ ।

ମଙ୍ଗଳାବାଗର ବୋହୂ ଅମିତାଙ୍କର ମୃତ୍ୟୁ ବିଷୟରେ ତାଙ୍କର ମା ଲେଖିଥିବା (ଶ୍ରୀମତୀ ଶାନ୍ତି ଦେବୀ, ଗୋପାଳ ଭବନ, ସଦର ଥାନା ରୋଡ଼୍ ପୁରୀ ଓ ୟୁନିଟ୍ ଦୁଇ, ଭୁବନେଶ୍ବର) ଅଭିଯୋଗ ସମ୍ପର୍କରେ ଆଲୋଚନା ହୋଇଥିଲା ।

ଏହି ବୈଠକରେ ଶ୍ରୀମତୀ ନାରଦ ପ୍ରଭା ପଟ୍ଟନାୟକ, ଶ୍ରୀମତୀ ସୁପ୍ରଭା ଦାସ, ଶ୍ରୀମତୀ ଭାଗ୍ୟଲକ୍ଷ୍ମୀ ଚଉଧୁରୀ (ଝୋଲଆ ସାହି, କଟକ), ଶ୍ରୀମତୀ ବାସନ୍ତୀ ସାହୁ, ଶ୍ରୀମତୀ ଝୋଲଆ ମହାନ୍ତ (ତୁଳସିପୁର ମଠ ସାହି, କଟକ) ଶ୍ରୀମତୀ ସୌଦାମିନୀ ପାଣି, ଶ୍ରୀମତୀ ହେମଲତା ଦାସ, ଶ୍ରୀମତୀ ସରସ୍ବତୀ ସାହୁ, ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

( ପ୍ରଜାତନ୍ତ୍ର ୨୪।୧୦।୮୪ )

ମୋର ବୋହୂ ଅମିତା ବିଷୟରେ ତାଙ୍କର ମାଆ ଗତ ଅଢ଼େଇ ମାସ ମଧ୍ୟରେ ପ୍ରତ୍ୟକ୍ଷ ବା ପରୋକ୍ଷ ଅଭିଯୋଗ କରି ନଥିଲେ । ସମସ୍ତ ଅଭିଯୋଗ ମୋର ସମୁଧି ବ୍ରଜବଲ୍ଲଭ ବାବୁ ଓ ତାଙ୍କର ଦୁଇ ପୁଅ ଡାକ୍ତର ସବ୍ୟସାଚୀ ବାବୁ ଓ ସାମ୍ବାଦିକ ଦେବୀ ବାବୁ କରି ଆସିଛନ୍ତି । ସେହିମାନେ ଅନେକ ପ୍ରକାରର ଚରିତ୍ର ସଂହାର ଅସ୍ତ୍ର ପ୍ରୟୋଗ କରିଛନ୍ତି । ଶେଷରେ ସ୍ବର୍ଗତ ଶ୍ରୀ ହରମୋହନ ପଟ୍ଟନାୟକ, ପ୍ରଥମ ଓଡ଼ିଆ ଆୟୁକର କମିସନରଙ୍କର ନାମ ମଧ୍ୟ ନେଇଛନ୍ତି । ହରମୋହନ ବାବୁଙ୍କ ପୁରୀ ଓଡ଼ିଆ ମଠର ଲି ଏଜେଣ୍ଟ ସ୍ବର୍ଗତ ବାଲୁକେଶ୍ବର ପଟ୍ଟନାୟକଙ୍କର ସମୁଧି କରାଇବାର

ପାରଦର୍ଶିତା ବୋଦ୍ଧ, ଶ୍ରୀମତୀ ପୂର୍ଣ୍ଣପ୍ରଭା ଦେବୀଙ୍କର । ଏଥିରୁ ବୁଝି ହୁଏ ବୋଦ୍ଧୃଙ୍କର ସାଧାରଣ ସ୍ତରର ଓ ଜ୍ଞାନ ଗୋଟିଏ ଗାଉଁଲି ଝିଅର ସ ସମାନ ହୋଇପାରୁ ନାହିଁ । ଏହି ସ୍ତରହୀନତା ପାଇଁ ଆଜ ସେ ଅଭିଯୁକ୍ତା । ଗୃମୁଗୃଗିର ଏହିପରି କାର୍ଯ୍ୟ କରେ । ***

ତଥାପି ମହିଳାମାନେ ଏଠି ସେଠି ଦଗ୍ଧୀଭୂତ ହେବାରେ ଲାଗିଛନ୍ତି ।

ସମାଜ ତା ୪।୧୧।୮୪ ପୃ. ୭

(ନିଜ ପ୍ରତିନିଧିଙ୍କ ଠାରୁ)

ବେଲ ପାହାଡ଼ ତା ୩।୧୧।୮୪

ଆଜି ସକାଳ ପ୍ରାୟ ଆଠଟା ଦଶ ମିନିଟରେ ଏଠାରେ ଡାକ୍ତର ଚୌଧୁରୀ ନଗେନ୍ଦ୍ର ମିଶ୍ରଙ୍କ (ଘର ପଙ୍କପାଳ—ଏରସମା, ଜିଲା କଟକ) ବାସଭବନରୁ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସଂଯୁକ୍ତା ମିଶ୍ରଙ୍କୁ ଅର୍ଦ୍ଧ ଦଗ୍ଧ ଅବସ୍ଥାରେ ଉଦ୍ଧାର କରାଯାଇଥିଲା ।

ତାଙ୍କୁ ତୁରନ୍ତ ହସପିଟାଲ୍‌କୁ ନିଆ ଯାଇଥିଲା । ପରେ ସେଠାରେ ତାଙ୍କର ମୃତ୍ୟୁ ଘଟିଛି । ଏହି ମର୍ମନ୍ତୁଦ ଘଟଣା ଯୋଗ ନାନା ସନ୍ଦେହ ପ୍ରକାଶ ପାଉଛି ।

ମୃତ୍ୟୁ ବେଳକୁ ସଂଯୁକ୍ତାଙ୍କର ବୟସ ପଚିଶି ବର୍ଷ ହୋଇଥିଲା । ତାଙ୍କର ଗୋଟିଏ ସାତ ମାସର ଝିଅ ଅଛି । ପୁଲିସ ଅଫିସର ଶ୍ରୀ କେ. ପି. ମୁଣ୍ଡ ଘଟଣାର ତଦନ୍ତ କରୁଛନ୍ତି । ଶବଟିକୁ ବ୍ୟବଚ୍ଛେଦ ପାଇଁ ପଠା-ଯାଇଛି ।

ସ୍ୱର୍ଗୀୟା ସଂଯୁକ୍ତା ସମ୍ବଲପୁର ଅନ୍ତର୍ଗତ ଝାଡ଼ୁଆପଡା ନିବାସୀ ଶ୍ରୀ ରାମପ୍ରସାଦ ପାଣ୍ଡୀଙ୍କର ଝିଅ ।

(ସମାଜ ୪।୧୧।୮୪)

ଏବେ ପୁଲିସ ତଦନ୍ତ ଚାଲିଛି ଯେ ଶ୍ରୀମତୀ ସଂଯୁକ୍ତାଙ୍କର ମାନସିକ ରୋଗ ଥିଲା କି ନାହିଁ । ସଂଯୁକ୍ତା ଦେବୀଙ୍କର ଭଉଣୀମାନେ କି ପ୍ରକାରର ସୁସ୍ଥ ବା ଅସୁସ୍ଥ । ଘଟଣା ଘଟିଲାବେଳେ ଡାକ୍ତର ସ୍ୱାମୀ କି କାରଣରୁ



ଅର୍ଥାତ୍ (constipative) ଝାଡ଼ା କବଜ ରୋଗ ପାଇଁ କି ଅନ୍ୟ କିଛି ପାଇଁ ଅନୁପସ୍ଥିତ ଥିବା ବେଳେ ବନ୍ଦ କୋଠରୀରୁ ବାଳ ଓ ଚମ ପୋଡ଼ା ଚିହ୍ନ ପାଇ ଡକ୍ତୋଣୀଙ୍କ ସାହାଯ୍ୟରେ ଓ ଉପସ୍ଥିତିରେ ଅର୍ଦ୍ଧଦଗ୍ଧ ସ୍ତ୍ରୀଙ୍କୁ କବାଟ ଭାଙ୍ଗି ବାହାର କରିଥିଲେ କି ନାହିଁ ଇତ୍ୟାଦି ।

ଓଡ଼ିଶାର ମହିଳା ଅନୁଷ୍ଠାନମାନେ ନିୟମ ପ୍ରଣୟନ କରାଇବାରେ ଉତ୍ସାହୀ ହେଲେଣି ଯେ ଭବିଷ୍ୟତ ବିଚାରର ପ୍ରସ୍ତାବରେ ମାନସିକ ରୋଗର ବିଶେଷଜ୍ଞଙ୍କର ମତାମତ ନେବା ଇଚ୍ଛାଧୀନ ହେଉ । ଯେଉଁଠି ଏହି ମତାମତ ( ସାଇକିଆଟ୍ରିଷ୍ଟଙ୍କର ) ନିଆଯାଇ ନଥିବ ସେଠାରେ ଉପଯୁକ୍ତ ପ୍ରମାଣ ଅଭାବରେ ଅଯଥା ଦୋଷାରୋପ ହେବ ନାହିଁ । ଆଉ ନବବଧୂ ଲେଖିଥିବା ଚିଠିପତ୍ର ଅପରାଧ ବିଜ୍ଞାନର ମାନ-ଦଣ୍ଡରେ ସମୀକ୍ଷା କରାଯିବ । ନହେଲେ ଅନେକ କ୍ଷେତ୍ରରେ ମାମଲତକାର ଓକିଲମାନେ ସମାଜକୁ ଅଶେଷ ନିର୍ଯ୍ୟାତନା ଦେବେ । —ନେଇଛି ବୋହ୍ଡ଼ କରି । ପାଅ ଏବେ କେଞ୍ଚାଏ ।

ପ୍ରଗତିର ବିବର୍ତ୍ତନରେ ମଣିଷର ମନ ବଦଳେ । ଆଦିଯୁଗରୁ ସମସ୍ତେ ଶ୍ରେଷ୍ଠ ପିଲଙ୍କର ଡାକ ନାଁ ବାୟା, ବାୟାଣୀ, ପାଗଲା, ପାଗଲୀ ରଖିଥିଲେ । ଏବେ ଦେଖାଯାଉଛି ଯେ ଜଳବାୟୁ ଓ କୃତ୍ରିମ ସାର ଓ ପରିବେଶର ଦୂଷିତକରଣରୁ ମାନସିକ ବ୍ୟାଧି ବଢ଼ୁଛି ଓ ମାନସିକ ରୋଗର ଚିକିତ୍ସକମାନେ ଚିକିତ୍ସା କ୍ଷେତ୍ରରେ ଅଧିକରୁ ଅଧିକ ଦେଖା-ଯାଉଛନ୍ତି । ସେମାନଙ୍କ ମତରେ ଆତ୍ମହତ୍ୟା ହେଉଛି ଗୋଟିଏ ପ୍ରକାରର ମାନସିକ ବିକୃତି—ଏହା ସାମୟିକ ହୋଇପାରେ କିମ୍ବା ମାନସିକ ସ୍ତରରେ ପ୍ରଚ୍ଛନ୍ନ ଭାବରେ ରହିପାରେ ।

ଏହାକୁ ବାପ ମାଆ ବୁଝନ୍ତି ଯେ ତାଙ୍କର ପିଲା ଭାରି ସ୍ପର୍ଶକାତର ବା ସେନସିଟିଭ । ସାମାନ୍ୟ ସାମାନ୍ୟ କଥାକୁ ଅତିରିକ୍ତ ଛଳ କରି ଅତି ଗଭୀର ଦୁଃଖ, ମର୍ମବେଦନା ଓ ଆଘାତ ପାଇପାରେ । ଏସବୁ ନ ଭାବି ଝିଅକୁ ନେଇ ଆଉ ଜଣକ ବେକରେ ବାନ୍ଧିଦେବା କେବଳ— ହେଲ ନାରୀ, ହେଲ ପାରି—ଉକ୍ତିର ପ୍ରତିଫଳନ । ଏଥିରେ କରଣ

ସମାଜ ଭଙ୍ଗିବ ନାହିଁ । କାରଣ ଏବେ ନାରୀ ହତ୍ୟା ଅଭିଯୋଗରେ ଏକାଧିକ ପରିବାର ସନ୍ତ୍ରସ୍ତ ।

ମୋର ସମ୍ମୁଖ ତାଙ୍କର ବୋହୂ ଆଣିଛନ୍ତି । ସେଇ ବୋହୂକୁ ଚଳାଇଦେବା ପାଇଁ ମୋର ସମୁଦୁଣୀ ପାଛ କଲିକତାରେ ଅନେକ ଦିନ ରହିଯିବାରୁ ମୋର ବୋହୂ ଅମିତା ବି. ଏ. ପରୀକ୍ଷା ପାଇଁ ପଢ଼ି ପାରିଲା ନାହିଁ । ସେଇ ଅସୁବିଧାରୁ ବରୂଣୀ ଅମିତା ବି. ଏ. ସପ୍ଲିମେଣ୍ଟାରୀ ପରୀକ୍ଷା ଦରଖାସ୍ତ ଦେଉ ନ ଦେଉଣୁ ଅନାବତ ଗୁଳି ଗଲା ।

ସେ ବଞ୍ଚି ରହିଥାନ୍ତା କେମିତି ? କଟକରେ ଶାଶୁ ବୋହୂର ଗୋଡ଼ ଘସୁଛି, ବୋହୂ ମୁଣ୍ଡରେ ଦିନକୁ ଦୁଇଥର ତେଲ ଘସୁଛି, ବୋହୂ ଶୋଇବା ଆଗରୁ ଶାଶୁ କୋଡ଼ରେ ବସି ଗେଲ ହେଉଛି, ପାଠକୁ ସୁଆଦିଆ କରି ମଗଜ ଭିତରକୁ ପଠା ଯାଉଛି । ସମ୍ବନ୍ଧ ଭଲ ।

ଏଏ କେମିତି ହେବ ? ତେବେ ମାମୀ କ'ଣ ବାପା, ମଉଷାଙ୍କୁ ଭୁଲି ଶାଶୁ ନଣନ୍ଦଙ୍କର ହେଇଯିବ ? ହେଲେ ତ ହାତଛଡ଼ା ହେଲା । ଆଉ ମାଲ ମିଳିବ କେମିତି ? ମାମୀକୁ ସିନା କଟକ ମଙ୍ଗଳାବାଗ ଗୁହାଳରୁ ଫିଟାଇ ନେଇ ଭୁବନେଶ୍ୱର ଦୁଇ ନମ୍ବର ଯୁନିଟ୍‌ରେ ବାନ୍ଧିଲେ ତାହାର ଖାଇବା, ପିନ୍ଧିବା, ଔଷଧ ଖାଇବା ଓ ଗୁହା ଦେବା ଖର୍ଚ୍ଚ ଦିଲ୍ଲୀରୁ ବ୍ୟାଙ୍କ ଡ୍ରାଫଟ୍ ହୋଇ ଆସୁଥିବ । ଅଣାଇବା ପାଇଁ କରେସ୍ପି ମିଳିଲା ଅଛି ତ ।

ସେଥିପାଇଁ ବାପଘରକୁ ଡାକିନେଇ କିଛି ଚାଟି ସର୍ଜନା କରା ହୋଇଛି । ସେଥିରୁ ଖଣ୍ଡେ ନବବାବୁ କାଳୀଗଳି ପ୍ରକାଶିତ ସତ କଥାରେ ୨୧।୮।୮୪ରେ ଫଟୋ କରି ଛାପି ଦେଇଛନ୍ତି ।

ବୋହୂ ଯିବ କୁଆଡ଼କୁ ? ବାପଘର ଆଡ଼କୁ ନା ଶାଶୁଘର ଆଡ଼କୁ ? ନ୍ୟାୟ ବିଚାର ଆଡ଼କୁ ନା ଅନ୍ୟାୟ ଅଭିଯୋଗ ଆଡ଼କୁ ?

ବୋହୂ ଅମିତାର ଆଉ କାନ୍ଦଣା—ସେ କୁଆଡ଼କୁ ହେଲା ନାହିଁ । ବାପଘରର ହେଲା ନାହିଁ । ଶାଶୁଘରର ବି ହେଲା ନାହିଁ— ଶାଶୁଘର ବିରୁଦ୍ଧରେ ଲେଖାଇ ନେଇଛନ୍ତି । ଏଣେ ବାପଘର ନିଜ

ଖର୍ଚ୍ଚରେ ଟିକଏ ଦାନ୍ତ ମରାମତ କରାଇବା, ଭଲକରି ପଢ଼ାଇବା, ଢଙ୍ଗୀ ଚଳଣି ଶିଖାଇବା, ସାମାନ୍ୟରେ କୁକଙ୍ଗ ଷ୍ଟାଫ୍ଟ୍ ଶିଖାଇବାକୁ ମଧ୍ୟ ରାଜି ନୁହନ୍ତି ।

ବାହାଘର ପାଇଁ ଓ ଆମେରିକାକୁ ଝିଅକୁ ରଓ୍ୱାନା କରିବା ପାଇଁ ଦେଖା ହେଉଛି । କାରଣ ଯାହାହେଉ ଦେଖା କରିଜ ସବୁ ମିଶି ଗୋଟିଏ । ଗୃହଙ୍କରୁ ମାହାନ୍ତ ବାବୁ କେତେ ଅବା ଭେଇବ ? ଗହମ ଯେ ଗୋଟି ଗଣିତା ।

ଆଗରେ ଠିଆ ହୋଇଛି ବି. ଏ. ସପ୍ଲିମେଣ୍ଟାରି ପରୀକ୍ଷା । ସେଥିରେ ଇଂରେଜି ଜ୍ଞାନକୁ ଅଷ୍ଟମ ଶ୍ରେଣୀରୁ ନେଇ ଚଉଦ ଶ୍ରେଣୀରେ ପହଞ୍ଚାଇବାକୁ ପଡ଼ିବ । ବି. ଏ. ପରୀକ୍ଷାରେ କଣ୍ଟ୍ରୋଲ ମାଲିକ— ବାଟଘର ସେଥିରେ ଆଜ ମୁଣ୍ଡ ଖେଳାଇ ପନ୍ଦର ଷୋହଳକୁ ମାଳିକା ନିୟମରେ ଓଲଟାଇ ଏକାବନ, ଏକଷଠି କରି ଲେଖାଇବାକୁ ରାଜି ହୋଇ ପାରନ୍ତି ଅବା ମନା କରି ଦେଇ ପାରନ୍ତି ।

ପଡ଼ା ବନ୍ଧ ଦେଲେ ନାହିଁ । ପାସପୋର୍ଟ ଫଟୋ ରଖି ମଧ୍ୟ ଦେଲେ ନାହିଁ । ମଲା ପରେ ଫଟୋ ବାହାରିଲା । ମରିବା ଆଗରୁ ଶାଶୁ ଶଶୁର ପାଇ ପାରିଲେ ନାହିଁ । ବଦମାସ ଲୋକ ଫଟୋ ନେଇ ବି. ଏ. ଫର୍ମ ପୂରଣ କରିଦେବେ ।

ବେଟା, ପଡ଼େଛେ ଯବନେର ପାଲେ
ଏବାର ଯାବେ କୋଥାୟ ?

ମୋର ବୋଧ ଦେଖିଲି—ଆଉ ବାଟ ନାହିଁ । ନିଜର ଘରଟି ପର ହେଇ ଯାଇଛି । ଶାଶୁଘର ସୁବିଧା ହେଉ ନାହିଁ । ମନ ଭିତରେ କଥା ସବୁ ଲୁଚେଇ ରଖିବା ଫଳରେ ସବୁବେଳେ ବାନ୍ତି ଉଠୁଛି । ମନକୁ ଖୋଲି କାହାରିକୁ ପଦେ କହିବାର ସୁବିଧା ନାହିଁ ।

ପଳାଇବାର ବାଟ ବନ୍ଦ । ବିଶ୍ୱବିଦ୍ୟାଳୟ ଲାଇବ୍ରେରିଆନଙ୍କର ସ୍ତ୍ରୀ ପଳାଇଗଲା ପ୍ରଫେସରପଡ଼ାରୁ ବାଦାମବାଡ଼ି ବସ୍‌ଷ୍ଟାଣ୍ଡକୁ । ସେଠି ଗଞ୍ଜାମୀ ବାପା ଟିକଟ କାଟି ଝିଅକୁ ଉଠେଇଥିଲେ ।

ଝିଅ ପଳାଇ ଆସିଲ ନଜର ପିଲଙ୍କୁ ଧର—ଜୋଇଁ ହେଙ୍ଗୁ ଶୁଙ୍ଘିବ । ତା'ପରେ ମାସକୁ ମାସ ଦରମାର ଅଧେ ସାତ ଶହ ଟଙ୍କା ପଠାଉଥିବ । ଝିଅ ତେଣେ ସି.ଟି, ଅବା ଟାଇପ୍ ଅବା ସିଲେଇ କଣ୍ଟ ଗୋଟାଏ ଶିଖିବ ।

ଏଇ ବାଟକୁ ମାମୀ ରାଜି ନୁହେଁ । ସେ କରଣ । ତେଣୁ ବ୍ରାହ୍ମଣୀର ଔଷଧ ଖାଇବ ନାହିଁ ।

ବାଘରେ ମରିବ ।

ତିନୋଟି ବାଟ—ଦଉଡ଼ି, ବିଷ, ଆଉ ନିଆଁ ।

ଘର ଉଚ୍ଚା ନୁହେଁ । ଦଉଡ଼ି କାହିଁ ? ବାନ୍ଧିବ କେମିତି ?

ବିଷ କିଏ ଆଣି ମାମୀକୁ ଦେବ ? ଶାଶୁଘରେ କେହି ଚାକରଟିଏ ବି ନାହିଁ । ବାପଘର ବିଷ ଅଣାଇବାକୁ ରାଜି ହେଲେ ନାହିଁ ।

ମଙ୍ଗଳାବାଗ ଘରେ କୂଅ ନାହିଁ । ସେଠୁ ବାହାରି ମହାନଦୀ କାଠଯୋଡ଼ିରେ ପହଞ୍ଚିବା ଆଗରୁ ଧରା ପଡ଼ିଯିବ ।

ନିରୂପାୟର ବାଟ—ଅଗ୍ନି ଦେବତା । ସେଇ ବାଟ ମାମୀ ଓରଫ ଅମିତା ଓରଫ ଅମୃତା ଧରି ନେଇଥିଲା ।

ସାମାଜ ତାରିଖ ୧୯।୧୧।୮୪ ପୃ ୫

**Wanted a fair, beautiful bride, aged 20-23 years education Intermediate and above for an Engineer is SAIL aged 28 years height 5-2 Caste and dowry no bar. Preference for Oriya and Bengali speaking Write to P. o. Box No. 271 The Samaj, Cuttack—1.**

ସମାଜ ତା ୧୯।୧୧।୮୪ ପୃ ୭

ନାରୀ ନିର୍ଯ୍ୟାତନା ବନ୍ଦ ପାଇଁ ସମ୍ବଲପୁରରେ ମହିଳାଙ୍କ ଶୋଭାଯାତ୍ରା ।

(ସମ୍ବଲପୁର ଅଫିସରୁ)

ସମ୍ବଲପୁର ୨୭।୧୧—ସମ୍ବଲପୁର ଜିଲ୍ଲାରେ କ୍ରମଶଃ ବୃଦ୍ଧି ପାଉଥିବା ନାରୀ ନିର୍ଯ୍ୟାତନା, ମହିଳାମାନଙ୍କ ଉପରେ ଦୁର୍ବୃତ୍ତଙ୍କର ଆକ୍ରମଣ ଓ ଅଶ୍ଳୀଳ ଚିତ୍ର ପ୍ରଦର୍ଶନ ଏବଂ ନିକଟରେ ବେଲପାହାଡ଼ରେ ଯୌତୁକ ଯୋଗୁ ହତ୍ୟା କରି ଯାଇଥିବା ଶ୍ରୀମତୀ ସଂଯୁକ୍ତା ପାଢ଼ୀଙ୍କ ସ୍ୱାମୀ ଡାକ୍ତର ଚୌଧୁରୀ ନରେନ୍ଦ୍ରନାଥ ମିଶ୍ରଙ୍କୁ ଗିରଫ କରିବା ସଙ୍ଗେ ସଙ୍ଗେ ଚାକିରିରୁ ବରଖାସ୍ତ କରିବା ଦାବି କରି ଆଜି ଏଠାରେ ପ୍ରାୟ ତିନି ଶହରୁ ଊର୍ଦ୍ଧ୍ୱ ମହିଳା ଏକ ଶୋଭାଯାତ୍ରାରେ ସହର ପରିକ୍ରମା କରିଥିଲେ । ସେମାନେ ଏ ସଂପର୍କରେ ଜିଲ୍ଲାପାଳଙ୍କୁ ଏକ ସ୍ମାରକପତ୍ର ଦେଇଥିଲେ ।

ନାରୀ ନିର୍ଯ୍ୟାତନା ସମ୍ବଲପୁର ଜିଲ୍ଲାରେ ବୃଦ୍ଧି ପାଉଥିବାରୁ ସ୍ମାରକପତ୍ରରେ ଉଦ୍‌ବେଗ ପ୍ରକାଶ କରି ଯାଇଛି । ଏହାର ନକଲ ପ୍ରଧାନମନ୍ତ୍ରୀ ଓ ରାଜ୍ୟ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ମଧ୍ୟ ପଠା ଯାଇଛି ।

ବିଶିଷ୍ଟ ସମାଜ ସେବିକା ଶ୍ରୀମତୀ ପାର୍ବତୀ ଗିରି, ପ୍ରଭାମୟୀ ଦେବୀ, ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତିଙ୍କର ପତ୍ନୀ ଶ୍ରୀମତୀ ସ୍ନେହଲତା ପଣ୍ଡା, ଉର୍ମିଳା ବହିଦାର, ସରୋଜିନୀ ରଥ, ନଳିନୀ ଗୁରୁ, ବିଷ୍ଣୁପ୍ରିୟା ଷେଇ, ସିପ୍ରା ମହାନ୍ତି, ସଂଯୁକ୍ତା ହୋତା ଏବଂ ଜାହାଁନାରା ବେଗମ ପ୍ରମୁଖ ଶୋଭାଯାତ୍ରାର ନେତୃତ୍ୱ ନେଇଥିଲେ ।

ଶୋଭାଯାତ୍ରାକାରୀମାନେ "ନାରୀ ନିର୍ଯ୍ୟାତନା ବନ୍ଦ କର" "ଯୌତୁକ ପ୍ରଥା ବନ୍ଦ କର" "ସଂଯୁକ୍ତା ହତ୍ୟାକାରୀକୁ ଦଣ୍ଡ ଦିଅ" ଧ୍ୱନିମାନ ଦେଇ ସହର ପରିକ୍ରମା କରିଥିଲେ ।

ନାରୀ ସେବା ସଦନ ପଡ଼ିଆରେ ଅନୁଷ୍ଠିତ ଏକ ସଭାରେ ବକ୍ତାମାନେ କହିଥିଲେ ଯେ ନାରୀ ସମାଜ ଆଉ ନୀରବ ଦ୍ରଷ୍ଟା ହୋଇ ବସି ରହିପାରିବ ନାହିଁ । ଆବଶ୍ୟକ ହେଲେ ପ୍ରତ୍ୟକ୍ଷ ଆନ୍ଦୋଳନ କରିବାକୁ ବାଧ୍ୟ ହେବେ । ସମାଜ ୧୯।୧୧।୮୪

× × ×

ସ୍ୱରାଜ୍ୟ ୩୦।୧୦।୮୪ (ଗାରେଡ଼ ସମ୍ବାଦ)
ନୂଆଦିଲ୍ଲୀ ୨୯।୧୦।୮୪

ନାଇଜେରିଆର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ଉଚ୍ଚ ଶିକ୍ଷା ଅନୁଷ୍ଠାନରେ ଡିଗ୍ରୀ ଶ୍ରେଣୀ ପର୍ଯ୍ୟନ୍ତ ଗାରେଡ଼ ପାଠ୍ୟକ୍ରମ ଖୁବ୍ ଶୀଘ୍ର ପ୍ରଚଳିତ ହେବ ବୋଲି ଜଣା ଯାଉଛି । ସମାଜ ପାଇଁ ଗୁଣି ଗାରେଡ଼ର ଆବଶ୍ୟକତା ଓ ଏହାର ଉପକାରିତା ସଂପର୍କରେ ଗବେଷଣା କରିବାପାଇଁ ନୃତତ୍ତ୍ୱବିତ୍ ଓ ସମାଜ ବିଜ୍ଞାନୀମାନଙ୍କୁ ନେଇ ଗଠିତ ଏକ କମିଟି ଉଦ୍ୟମ ଚଳାଇଛି । D. N. I

ସ୍ୱରାଜ୍ୟ ୩୦।୧୦।୮୪

× × ×

ସମାଜ ୧୯।୧୧।୮୪ ପୃ ୮

ପାଟନା ୧୮।୧ —ଡାହାଣୀ ସନ୍ଦେହ କରି ଷୋଳ ଜଣ ମହିଳାଙ୍କୁ ହତ୍ୟା । ଏଥିପାଇଁ ୨୯ ଜଣ ଗିରଫ ହୋଇଛନ୍ତି । ଏହି ମହିଳାମାନଙ୍କୁ ଚକ୍ରଧରପୁର—ରାଉରକେଲା ମଧ୍ୟବର୍ତ୍ତୀ ମନୋହରପୁର ଗ୍ରାମରୁ ହରଣଚାଳ କରି ନିଆ ଯାଇଛି ବୋଲି ବିହାର ରାଜ୍ୟ (Home) Commissioner ଶ୍ରୀ ଏନ୍. କେ. ଅଗ୍ରୱାଲ୍ ପ୍ରକାଶ କରିଛନ୍ତି ।

ସମାଜ ୧୯।୧୧।୮୪

ଅଣୋଅଣି ମସିହାରୁ ଶାଶୁ ପୂର୍ଣ୍ଣପ୍ରଭା ଦେବୀ ବିଶ୍ୱର ନୂତନ ଆଧ୍ୟାତ୍ମିକ ଚେତନାର ବାର୍ତ୍ତାବହ ରୂପେ ସ୍ୱୀକୃତ ସାଧକ ଶ୍ରୀ ଜେ. କୃଷ୍ଣମୂର୍ତ୍ତିଙ୍କର ଇଂରେଜି ବହିମାନ ଓଡ଼ିଆରେ ଅନୁବାଦ କରିବାରେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି ।

ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକ ଓ ଶ୍ରୀମତୀ ଆରତି ମହାନ୍ତି ପୂର୍ଣ୍ଣପ୍ରଭା ଦେବୀଙ୍କର ବଡ଼ ଓ ସାନ ଭଉଣୀ । ସମସ୍ତେ ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ଏମ. ଏ. ଡିଗ୍ରୀ ପାଇଛନ୍ତି । ବସନ୍ତ ଦେବୀ ଇକନମିକସ୍‌ରେ, ପୂର୍ଣ୍ଣପ୍ରଭା ଦେବୀ ଫିଲସଫିରେ ଓ ଆରତୀ ଦେବୀ ସାଇକୋଲଜିରେ ।

ସେମାନେ ଓଡ଼ିଆରେ ଅନୁବାଦ କରିଥିବା କେତେକ ବହି ଛପା ହୋଇଛି । ସେଗୁଡ଼ିକ ହେଲା—

ଧ୍ୟାନ (୧୯୬୯) Meditation (1969)

ମନର ଏକ ସଂଳାପ—**A dialogue with oneself**

ମନ ଗହନର ଉନ୍ମୋଚନ—**Inward Flowering.**

ଏଇ ଢନଖଣ୍ଡ ଏକନ ଅଶି ମସିହା ଅଗଷ୍ଟରେ ଛପା । ଡ୍ରାଉନ ପାଞ୍ଚ ଫର୍ମା ବନ୍ଧାଇ ତିନଟଙ୍କା ପଚଶ ପଇସା ।

ଦ୍ୱିତୀୟଟି ହେଲା ମାର୍ଚ୍ଚ ଏକାଅଶିରେ । ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ—**Education and the significance of life** । ଡ଼ିମାଇ ବନ୍ଧାଇ ଦଶ ଫର୍ମାର ମୂଲ୍ୟ ସାତ ଟଙ୍କା ।

ତୃତୀୟଟି ହେଲା ଡ଼ିସମ୍ବର ଏକାଅଶିରେ । ପରିବର୍ତ୍ତନ ଏକାନ୍ତ ଜରୁରୀ—**The urgency of change** । ଡ଼ିମାଇ ବନ୍ଧାଇ ଷୋହଳ ଫର୍ମାର ମୂଲ୍ୟ ତେର ଟଙ୍କା ।

ଚତୁର୍ଥଟି ହେଲା ସେଇ ଡ଼ିସମ୍ବର ଏକାଅଶିରେ । ବହିର ନାମ—ପରିଚିତରୁ ମୁକ୍ତି **Freedom from the Known.** ବନ୍ଧାଇ ଡ଼ିମାଇ ଏଗାର ଫର୍ମାକୁ ମୂଲ୍ୟ ବାରଟଙ୍କା ।

ପଞ୍ଚମଟି ହେଲା ଧ୍ୟାନ (**Meditation**) ଛପା ହେଉଛି ଜୁନ ୧୯୮୨ । ଡିମାଇ ବନ୍ଧାଇ ପାଞ୍ଚ ଫର୍ମାକୁ ଛଅ ଟଙ୍କା ।

ତା'ପରେ ଷଷ୍ଠ ବହି ହେଲା "ଏଇ ଯେ ସଂସ୍କୃତି"—**This matter of Culture** । ଡ଼ିମାଇ ବନ୍ଧାଇ ସାଢ଼େ ପଚିଶି ଫର୍ମାକୁ ମୂଲ୍ୟ କୋଡ଼ିଏ ଟଙ୍କା ।

ଚଉରାଶି ଜୁନ୍ ମାସରେ ଛପା ହେଲା ସପ୍ତମ ବହି—ଏକ ହିଁ ବିପ୍ଳବ—**The only Revolution** । ଡ଼ିମାଇ ବନ୍ଧାଇ ସାଢ଼େ ଅଠର ଫର୍ମାକୁ ମୂଲ୍ୟ କୋଡ଼ିଏ ଟଙ୍କା ।

ବହିଟିଏ ଅନୁବାଦ କରିବାକୁ କ'ଣ କରିବାକୁ ହୁଏ ପ୍ରତ୍ୟେକ ଶିକ୍ଷିତ ଅନୁବାଦକ ଜାଣନ୍ତି । ସାଧକ କୃଷ୍ଣମୂର୍ତ୍ତିଙ୍କ ବହିରୁ ଓଡ଼ିଆରେ ଛପା ହୋଇଥିବା ଦେଢ଼ ହଜାର ପୃଷ୍ଠା (ନବେ ଡ଼ିମାଇ ଫର୍ମା) ସାଢ଼େ ପାଞ୍ଚ ବର୍ଷରେ କରିଥିବା ଶ୍ରୀମତୀ ପୂର୍ଣ୍ଣପ୍ରଭାଙ୍କ ନାମରେ ଏବେ ମୋର ସମ୍ମୁଖଙ୍କ ଘର ହତ୍ୟା (ଫାଉଲ ପ୍ଲେ) ଅଭିଯୋଗ ଆଣିଛନ୍ତି । ସେତିକ

ପୁଣି ପୁଲିସ ପାଖରେ ନୁହେଁ । ନଅଡ଼ଚ କରାଇବା ପାଇଁ ପ୍ରଚାର ଓ ରାଜରାସ୍ତା ପ୍ରୋସେସନର ସାହାଯ୍ୟ ମାଗିଛନ୍ତି ।

ଏହି ପ୍ରକାରର ଅଭିଯୋଗକୁ କାଟି ଫୋପାଡ଼ି ଦେବା ଉଚିତ ନୁହେଁ । କାରଣ ବ୍ୟକ୍ତିଗତ ପ୍ରବଣତା ଏହି ପ୍ରକାରର ଆଭିମୁଖ୍ୟ ନେଲେ ଲୋକ ସମାଜରୁ ଇଜ୍ଜତ୍ ବୋଲି ଗୋଟିଏ ଭାବଧାରା ଲୋପ ପାଇବ ।

ଏହି ଅବସ୍ଥାକୁ ଆମେ କରଣ ସମାଜକୁ ଟାଣି ନେବା ଉଚିତ କି ନୁହେଁ ଘରସଂସାର କରିଥିବା ଲୋକେ ଅବଶ୍ୟ ବିଚାର କରିବେ ।

କିନ୍ତୁ ବାରମ୍ବାର ପ୍ରଚାର କରାଇବାରୁ ଜଣା ପଡ଼ୁଛି ଯେ କଥାଟି ମାମଲତକାରୀ ସ୍ତରରୁ ନେଇ ବୌଦ୍ଧିକ ସ୍ତର ପର୍ଯ୍ୟନ୍ତ ବିଚାର ହେବା ଉଚିତ୍ ।

ଆଧୁନିକ ଓଡ଼ିଶାର ସମାଜ ଏବେ ତାହାର ଭାରସାମ୍ୟ ହରାଉଛି । ଏପରି ହେଲେ ଅଘଟନ ଘଟିବ । ପୁଲିସ ଖାତାରେ ନୂଆ ପ୍ରକାରର ସମସ୍ୟା ବୋଲି ଲେଖା ହେବ । କିନ୍ତୁ ଗୋଟିଏ ପରେ ଗୋଟିଏ ଘର ଭାଙ୍ଗିବ ।

ସମ୍ବଲପୁର ଜିଲ୍ଲାର ବେଲପାହାଡ଼ ବୋହୂପୋଡ଼ି ଘଟଣାରେ ଜୋଇଁର ଝିଅ ପାଖକୁ ଆସୁଥିବା ଚିଠିର ଜବାବ ଦେଉଥିଲେ ଶାଶୁ— ଝିଅର ମାଆ ।

ଇଏ ବି ଗୋଟାଏ ଅଜବ ପଦ୍ଧତି । କଟକ ମଙ୍ଗଳାବାଗ ବୋହୂ ପୋଡ଼ି ଘଟଣାରେ ଜୋଇଁ ଉପରେ ଗୋଟିଏ ଅଭିଯୋଗ ଅଣା ହେଉଥିଲା ଯେ ଜୋଇଁ କାହିଁକି ଶାଶୁଙ୍କୁ ଚିଠି ଲେଖେ ନାହିଁ...... ମାମୀର ଶଶୁର କାହିଁକି ଢନେ ହେଲେ "ମାମୀ ଲୋ" ବୋଲି ଡାକିଲେ ନାହିଁ ?

ଏଇ ପ୍ରକାରର ସାମାଜିକ ଚଳଣିର ଧାରା ଏବେ ଯେଉଁ ପ୍ରକାରର ପରିସ୍ଥିତି ସୃଷ୍ଟି କରୁଛି ସେଥିରେ ଜଣାଯାଉଛି ଯେ ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ ଭିତରେ ଆଉରି ଅନେକ ହିତାକାଂକ୍ଷୀ ପଶିବାକୁ ଚାହାନ୍ତି । ଯଦି

ସେମାନଙ୍କୁ ପ୍ରବେଶ ଅଧିକାର ଦିଆ ନ ଯିବ ତାହାହେଲେ ସେମାନେ ଆନ୍ଦୋଳନ ଆରମ୍ଭ କରିବେ ଯେ ଶାଶୁ ବୋହୂଙ୍କୁ ହନ୍ତସନ୍ତ କରୁଛି ।

ଏହି ମାରାତ୍ମକ ବିପଦରୁ କେହି ମୁକ୍ତ ନୁହନ୍ତି । ଯେଉଁ ଝିଅ-ମାନେ ବଡ଼ ହେଇପାରୁ ନାହାନ୍ତି ସେମାନଙ୍କର ବିବାହ ପରର ବସ୍ଥାନକୁ ଜାଣିଲେ ବୁଝିହେବ ଯେ ଓଡ଼ିଆ କରଣ ସମାଜ ଏବେ ବିବାହକୁ ଗୋଟାଏ ଭଙ୍ଗାଗଢ଼ା ଖେଳ ବୋଲି ଧରି ନେଲାଣି ।

ଈଶ୍ୱରଙ୍କର ଲୀଳା ହେଉଛି—ଭାଙ୍ଗିବା ଓ ଗଢ଼ିବା । ଶ୍ରୀ ବାପୁ ବାବା ମଧ୍ୟ ସେଇ କଥା କହୁଥିଲେ ତାଙ୍କର ବିଭିନ୍ନ ଆଶ୍ରମ ଓ ଅନୁଷ୍ଠାନ ବକ୍ତବ୍ୟରେ । ଈଶ୍ୱର ଚାହାନ୍ତି ଭାଙ୍ଗିବାକୁ ଓ ଗଢ଼ିବାକୁ । କିନ୍ତୁ ସଂସାରର ସାଧାରଣ ଲୋକେ କ'ଣ ନିଜ ଘରେ ଏଇ ଭାଙ୍ଗିବା ଓ ଗଢ଼ିହେବା ଦେଖିବାକୁ ଚାହେଁ ?

ନିଜ ଘରେ ଖାଲି ଭାଙ୍ଗିବା ଦେଖିବ । ଗଢ଼ି ହେବା ଆଉ ସେଠି ସେ ଦେଖିବ କେମିତି ?

ଗୋଟିଏ କରଣ ଝିଅ ମୋର ବୋହୂଠାରୁ ବହୁତ କମ୍ ପଢ଼ିଥିଲା । ବାପା ଟଙ୍କାରେ ଝିଅ ଜୋଇଁ ବିଲାତରେ ଦୁଇ ବର୍ଷ ରହି ଫେରିଲେ । ଝିଅ ମଧ୍ୟ ଅଧିକ ପାଠ ପଢ଼ିଗଲା । ସେ ହେଲା ଆଧୁନିକା ଓ ଶିକ୍ଷିତା ।

କ'ଣ କରିବ ବୋଲି ଭାବି ଭାବି ଠିକ୍ କଲା ସେ ତାହାର ସ୍ୱାମୀକୁ ଛାଡ଼ିବ ଓ ଆଉ ଗୋଟିଏ ସ୍ୱାମୀ କରିବ ।

ବଡ଼ ଦୁଃଖର କଥା ଓ ଲାଜର କଥା । ଝିଅ ଆସି ମସୁଧା କରୁଥିଲା ଶୀଘ୍ର ଶୀଘ୍ର ଛାଡ଼ପତ୍ର କରାଇବା ପାଇଁ ।

—ଛିଃ, ପିଲା କଥା କ'ଣ ହେବ ?

—କାହିଁକି, ମୁଁ ଏତେଦିନ ସମ୍ଭାଳିଲି । ଏବେ ସେ···

—କ'ଣ ମିଳିବ ଏଇ ବାହାଘରକୁ ଭାଙ୍ଗିଲେ ?

—ବୁଝି ପାରିବ ନାହିଁ । ସ୍ତ୍ରୀ ହୋଇ ଜନ୍ମ ହୁଅ । ତାହାହେଲେ ସ୍ତ୍ରୀ'ର ମନ କଥା ବୁଝି ପାରିବ ।

—ନା, ମୁଁ ବଳ ନୁହେଁ ।

—ତାହାହେଲେ ଅନ୍ୟ ଲୋକ ଦେଖିବା । ସେ ଆମର ବାହା-ଘରକୁ ଭାଙ୍ଗି ଦେଇ ଆମକୁ ଅଲଗା କରିଦେବ ।

ବାହାଘର ଭାଙ୍ଗିଲା—ବାହାଘରର ଦଶ ବର୍ଷ ପରେ । କଚେରୀରେ ଲଗିଲା ଅଠତୃଳଶି ଦିନ ମାତ୍ର ।

ସ୍ୱାମୀ ବଦ୍ଧ ହେଲେ । ସ୍ତ୍ରୀ ମଧ୍ୟ ବଦ୍ଧ ହେଲେ ।

ଦୁଇ ପକ୍ଷ ଆପୋଷୀ ପରାମର୍ଶ ତାହାଙ୍କୁ ଧରିନେଲେ ଶତ୍ରୁପକ୍ଷ ବୋଲି । ତାଙ୍କର ବନ୍ଧୁଘର ସେମାନେ ଭାଙ୍ଗିବେ । ସେଥିରେ ବାହାର ଲୋକ କିଏ ? ଆଉ ବାହାର ଲୋକ ଅନ୍ୟ ଯେ ହେଉ, କରଣମାନେ ଏଥିରେ ଦେଖାଦେବେ କ'ଣ ପାଇଁ ?

ଉଚିତ କଥା । ପାଶ୍ଚାତ୍ୟ ସଭ୍ୟତା ହେଉ କି ନ ହେଉ କିଛି କିଛି ଶୁଦ୍ଧ ଅଶୁଦ୍ଧ ଇଂରାଜି ଜ୍ଞାନ ହେଇ ଯାଉଛି । ସେତେବେଳେ ପାଶ୍ଚାତ୍ୟ ସମାଜର ଅନୁକରଣରେ ବନ୍ଧୁଘରକୁ ଛାଡ଼ପତ୍ର ଦ୍ୱାରା ଭାଙ୍ଗିବା ଭୁଲ କାହିଁକି ହବ ?

ଯଦି ଛାଡ଼ପତ୍ର କରାଇବାକୁ ନୂଆ ଆଇନ ଅନୁସାରେ ସ୍ୱାମୀ ସ୍ତ୍ରୀ ଏକତ୍ର ଦରଖାସ୍ତ ଦେଇ ରାଜିନାମାରେ ଛାଡ଼ପତ୍ର ଦେବେ ତାହାହେଲେ ଏତେ ପ୍ରକାରେ ବୋହୂ ବନ୍ଧୁ ଓ ବୋହୂ ଖୋଜା ବନ୍ଦ ନ ହେବ କାହିଁକି ?

ପ୍ରତ୍ୟେକ ସବ୍‌ଜଜ୍ କୋର୍ଟ ମଫସଲରେ ଛାଡ଼ପତ୍ର ମକଦ୍ଦମା କିଛି କିଛି ଦେଖା ଦେଲାଣି । ଏହା ବଢ଼ିଲେ ପାରିବାରିକ ସୁଖ କିପରି ବଢ଼ୁଛି ଦେଖିବାକୁ ହେବ ।

ଠିକ୍ ମୋର ବୋହୂ ଅମିତାର ସମସ୍ୟା ମଧ୍ୟ ଉଠିଥିଲା ଆଉ ଗୋଟିଏ ବାହାଘରେ । ଉଭୟ ଉଚ୍ଚ ପଦସ୍ଥ ଲୋକ ଓ ଓଡ଼ିଶାର ମାଟି-କାଠରେ ଧନୀ ଲୋକ । ଉଭୟପକ୍ଷ ଶିକ୍ଷିତ ଲୋକ । ଦେବା ପାଇଁ ଓ ନେବା ପାଇଁ କାହାରି ଆପତ୍ତି ନଥିଲା । କିନ୍ତୁ ବାହାଘର ଦୁଇଟା ଗୋଟାଏ ବର୍ଷ ମଧ୍ୟ ଟାକିଲା ନାହିଁ । ସିଏ ବି କଟକ ସହରର କଥା ।

ସମସ୍ୟା ହେଲା—କିଏ କାହାଘରେ ପୋଷା ମାନିବ ? ବୋହୂ ଘରେ ପୁଅ ନା ପୁଅ ଘରେ ବୋହୂ ?

ଉଭୟ ପକ୍ଷ ପରସ୍ପର ଜିଦ୍‌ରେ ଅଟଳ ରହିଲେ । ଜିଦ୍ ଭାଙ୍ଗି-ବାକୁ କେହି କେହି ତନ୍ତ୍ର ମନ୍ତ୍ରର ଆଶ୍ରୟ ନେଲେ । ଋଷ ଓ ଆମେରିକାର ଆଣବିକ ଅସ୍ତ୍ରର ପ୍ରତିଯୋଗିତା ତାନ୍ତ୍ରିକଙ୍କ ହାରି କଲା ।

ଶେଷକୁ ଯିଏ ଯାହାଘରେ ରହି ନିଜର ବାଇଦାକୁ ପଠାଇ-ଦେଲେ ସବ୍‌ଜଜ୍ ପାଖକୁ । ସେ ସେମାନଙ୍କୁ ଅଲଗା କରିଦେବ ।

ସେଇ କଥା ଏବେ ଶ୍ରୀଯୁକ୍ତ ଇନକମ୍ପାରେବଲ୍ ବା ମ୍ୟାଚଲେସ ଦୈନିକ ତ୍ରିଗଣ୍ଡିବାଘ କାଗଜରେ ଦ୍ୱିତୀୟ ପୃଷ୍ଠାରେ ୧୨।୧୧।୮୪ରେ ଲେଖିଛନ୍ତି । ଓଡ଼ିଆ ହିନ୍ଦୁ ବିବାହର ପୂର୍ବାପର ଫଳ ବିସ୍ତାର କରି ତାଙ୍କର ଥିସିସ୍ ଦେଇଛନ୍ତି । ସାମାନ୍ୟ ବଢ଼ି ବା ଅତିରଞ୍ଜିତ କରି-ଦେଲେ ସମାଜ ବିଜ୍ଞାନ ବା ସୋସିଓଲୋଜିରେ ମୌଳିକ ଭିତ୍ତିଭୂମି ଯୋଗାଇବ । ଶସ୍ତା ଖୋଜୁଥିବା ଶସ୍ତା କରଣମାନଙ୍କ ପାଇଁ ଅତ୍ୟନ୍ତ ଶସ୍ତାରେ ପାଣ୍ଡିତ୍ୟପୂର୍ଣ୍ଣ ଚିନ୍ତାଧାରା ଯୋଗାଇବ ।

କରଣ ସମାଜ ହୋଇଯିବ ଦକ୍ଷିଣର ସମାଜ ପରି । ଯେଠି ମାତୁଳ କନ୍ୟାକୁ ବିଭା ହେବା ଜନ୍ମଗତ ସାମାଜିକ ଅଧିକାର ।

ନିଜର ଭାଇ ଓ ଭଉଣୀ ।

ଭାଇର ଝିଅକୁ ଭଉଣୀର ପୁଅ ଏବଂ ଭଉଣୀର ଝିଅକୁ ଭାଇ ମଧ୍ୟ ବିଭା ହୋଇ ପାରିବ । ଏହି ଦୁଇଟି ପରିବାର ମଧ୍ୟରେ ଯେତେ ରକମର ପୁଅ ଓ ଝିଅ ସମ୍ବନ୍ଧ ସ୍ଥାପନା ହୋଇପାରିବ ସେ ସବୁ କଚେରୀର ଓ ସାମାଜିକ ଆଇନ ଦ୍ୱାରା ସିଦ୍ଧ ।

ସେଠି ଆମର ମ୍ୟାଚଲେସ ବା ଅନୁପମ କରିଥିବା ସମୀକ୍ଷା ଦରକାର ପଡ଼େ ନାହିଁ । ଏଣେ ଯୌତୁକ ଯଥେଷ୍ଟ । ଅଥଚ ଯୌତୁକ ପାଇଁ ମକଦ୍ଦମା ନାହିଁ ।

ଯେଉଁଦିନ ନିର୍ବନ୍ଧ ହୁଏ ସେଇଦିନ ତାଙ୍କର ଲଗ୍ନପତ୍ରୀ ବା ବାହାଘର କାର୍ଡ ଛପା ହୁଏ । ଉଭୟ ପକ୍ଷର ପ୍ରତିନିଧି ରହନ୍ତି । ଭାଇ

ଭଉଣୀ ପରସ୍ପର ଅବସ୍ଥା ବୁଝୁଥିବାରୁ ସେଇ ଅନୁସାରେ ସୁନା ଓ ନଗଦର ଦେବା ନେବା ସ୍ଥିର ହୋଇଥାଏ ।

ତାକୁ କହନ୍ତି ତାମ୍‌ବୋଲ । (Thambul)

ବିଆ ନଥା ଆଗୁଆ ହୋଇଯାଏ । ଦ୍ୱିବର୍ଷ ଓ ବର୍ଷକରେ ଝିଅ ମରିଗଲେ ଯୌତୁକ ଫେରସ୍ତ ହୋଇଯାଏ କିମ୍ବା ଝିଅର ଭଉଣୀ ବିଭା ହୋଇଯାଏ ବିନା ଯୌତୁକରେ । ଠିକ୍ ସେମିତି ଅତି ସରଳ ବିବାହ କର୍ମ ପଦ୍ଧତିରେ ।

ଆମେ ଦୁଇ କୋଟିରୁ କମ୍ ଓଡ଼ିଆ । ଆଉ ଏହି ଦକ୍ଷିଣାଞ୍ଚଳରେ ଆମର ସାତଗୁଣ ଲୋକ । ବୋହୂପୋଡ଼ି ଅତ୍ୟନ୍ତ କମ୍ । ବିବାହ କାରଣରୁ ଅର୍ଥାତ୍ ଶାଶୁ ଅତ୍ୟାଚାରର ପାଇଁ ବୋହୂପୋଡ଼ି ହୁଏ ନାହିଁ । ନିଜର ଖିଆଲରେ ଏଠି ସେଠି ବୋହୂପୋଡ଼ି ଘଟିଥାଏ ।

ଆତ୍ମାହୂତି ଦକ୍ଷିଣ ଭାରତରେ ଯଥେଷ୍ଟ । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ମୃତ୍ୟୁରେ ପ୍ରାୟ ତିରିଶି ଚାଳିଶ ଲୋକ ଆତ୍ମାହୂତି ଦେଲେ । ଆନ୍ଧ୍ର ପ୍ରଦେଶକୁ ଚଞ୍ଚଳ କରାଇବାକୁ ଶ୍ରୀ ପୋଟି ରାମୁଲୁ ଆତ୍ମାହୂତି ଦେଇଥିଲେ ।

ଏବେ କେମିତି କେମିତି ଓଡ଼ିଶା ତାହାର ପୂର୍ବ ପରିଚିତ କନିଅର ମଞ୍ଜି ଗୁଣ୍ଡ ଓ ଅଫିମ ଏବଂ ଓରାରୁ ରସି କଥା ଛାଡ଼ିଦେଇ ନିଆଁରେ ପୋଡ଼ିହେବା କିମ୍ବା ନିଦ ଔଷଧ ଖାଇବାକୁ ପସନ୍ଦ କଲାଣି । ଠାଏ ଠାଏ ନିଶ୍ଚ ମଧ୍ୟ ବାଟ କଢ଼ାଇ ଡାକୁଛି ।

କିନ୍ତୁ ରହି ଯାଉଛି ଟିକିଏ—ସେଇଟା ହେଲା ଆତ୍ମହତ୍ୟା କରିବାର ଇଚ୍ଛା । ତା'ପରେ ଆସୁଛି ଆତ୍ମହତ୍ୟାକୁ ହତ୍ୟାର ରୂପ ଦେବା ପାଇଁ ମନ୍ଦା—ଦୋହଲ କ୍ରୋଧ । ମୋର ବୋହୂର ମୃତ୍ୟୁରେ ଏସବୁ ଦେଖା ଦେଇଥିଲା ।

କାରଣ ଓଡ଼ିଆ ଲୋକ ବୁଝେ ସେତିକି । ଓଡ଼ିଶା ପ୍ରଦେଶ ହେଲାବେଳେ ଓଡ଼ିଆ ଜାତି ଗଲା ହୋଇ ରହିଥିଲେ । ନିମନ୍ତ୍ରଣର

ମର୍ଯ୍ୟାଦାରେ ସାମାନ୍ୟ କମ୍ ବେଶି ହୋଇଗଲେ ଅନେକ ଲୋକ ଯେମିତି ଚାଳ ଲାଲ ହୋଇଯାନ୍ତି । ପ୍ରତ୍ୟେକ କଥାରେ ଓଡ଼ିଆ ରାଗିଯାଏ ।

ମୋର ବୋହୂଟିକୁ ନିଜ ଘରେ ଏପରି ସୁଶିକ୍ଷା ଦିଆ ହୋଇଥିଲା ଯେ ଯେଉଁ ଶବ୍ଦ ବା ବିଷୟ ଆକ୍ଷେପମୂଳକ ମନେ ହେବ ସେଥିରେ ତତ୍‌କ୍ଷଣାତ୍ ତାକୁ ପ୍ରତିବାଦ ଦେବାକୁ ପଡ଼ିବ ।

—କଲେ, ଅମିତା, ଏମିତି ଅଲଜକ୍ଷ୍ମୀ ପରି କ'ଣ କାନ୍ଦୁଛୁ, ଏଇ କଥାରେ ?

—କ'ଣ କହିଲ ? ମୁଁ ଅଲଜକ୍ଷ୍ମୀ ? ମୋର ବାପଘରେ ଲାଜ ଛଡ଼ା ଆଉ କିଛି ନଥାଏ ।

—ଆରେ, କି କଥାକୁ କ'ଣ କଲଣି ? ଆଣେ ଓଡ଼ିଆ ଅଭିଧାନ ।

ମୋ ବୋହୂ କାହିଁକି ଅଭିଧାନ ଆଣିବ ? କଥାଟା ବୁଝି ନ ପାରିଲେ ସିନା ଅଭିଧାନ ଲାଗିବ । ସେ ତ ସ୍ପଷ୍ଟ ବୁଝିଗଲାଣି ଯେ ଶାଶୁ ତାହାର ବାପଘରକୁ ନିନ୍ଦା ଦେଇ ସାରିଲେଣି ।

ତଥାପି ବୋହୂ ଅଭିଧାନ ଦେଖି ସାମାନ୍ୟ ଖୁସି ହେଲା ଯେ ବ୍ୟବହାର ଓ ଅଭିଧାନ ଅର୍ଥ ଏକା ହେଉ ନାହିଁ । ତାହାହେଲେ ଅଭି-ଧାନଗୁଡ଼ାକ ବାଜେ ବହି । ସେଥିପାଇଁ ଭୁବନେଶ୍ୱର ଘରେ ଅଭିଧାନ ରହେ ନାହିଁ ।

ଯାହାହେଉ କଥାଟା ସୁଧୁରିଗଲା । କିନ୍ତୁ କେତେଦିନ ? କୋଡ଼ିଏଟା ଦିନରେ ମେ ନିଜେ ଗ୍ରାଉଣ୍ଡବାଡ଼ି ହୋଇଗଲା ।

ମୋର ବୋହୂ କଥା ଯେତେବେଳେ ପ୍ରତିଦିନ ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାରେ ଛପା ଯାଉଥାଏ ସେତିକିବେଳେ ଗୋଟିଏ ବଙ୍ଗାଳି କିରାଣି ଘରେ ସେଇ ପ୍ରକାରର ପରିସ୍ଥିତି ହେଲା । ବୋହୂର ଲୁଗା କାନିରେ ଟିକିଏ ଚିରା ଦିଶୁଛି । ଶାଶୁ ତ ପୂରା ଲକ୍ଷ୍ୟ ରଖିଥାନ୍ତି ତାଙ୍କର ମାସକୁ ଦେଢ଼ହଜାର ଟଙ୍କା ଦରମା ପାଉଥିବା କିଟ ବୋହୂ ଉପରେ । ସେ ଗମ୍ଭୀର ହୋଇ କହିଲେ—

—ବଉ, ତୁମେ କ ଜାଣନା, ତୁମେ କାର ଘରେର ବଉ ? କାପଡ଼ ବଦଳେ ଫେଲ ।

ସେଇ ଧାଡ଼ିକରେ ବୋହୂର ବାପଘରର ଐତିହ୍ୟ, ପଦମର୍ଯ୍ୟାଦା, ଧନ ଦଉଲତ, ଆଭିଜାତ୍ୟର ଅଭ୍ୟାସ ସବୁ ଲୁହାଡ଼େଇଥିଲା । ବାହାଘର ମୋଟେ ବର୍ଷେ ।

ତୁମି କାଦେର ଘରେର ବଉ ଗୋ
କାଦେର ଘରେର ବଉ ?
ଯମୁନାୟ ଜଲ ଆନତେ ଯାଚ୍ଛ
ସଙ୍ଗେ ନେଇ କେଉ ?

ଇଏ ହେଲା କାର ଘରେର ବଉ ? କିନ୍ତୁ ଆତ୍ମହତ୍ୟା ହେଲା ନାହିଁ । ବୋହୂ ପଦେ ବି ଓଲଟି କହିଲା ନାହିଁ । ଶାଢ଼ୀଟା ବଦଳାଇ ପକାଇଲା ।

ଯେମିତି ରାଜସ୍ଥାନ ସ୍ତ୍ରୀ ଲୋକମାନେ ନରେଲା ଦୁଧ ଆଣିବାକୁ ଦୁଇ ରୁପାର ଓ ଏକୁଟିଆ କଣ୍ଠକର ସାଙ୍ଗେ ବସ୍ତିର ଗୁହାଳକୁ ସକାଳେ ସଞ୍ଜେ ଯାଆନ୍ତି ।

ଶାଶୁମାନେ କୈବଣ ତାଙ୍କୁ ପ୍ରତି ଘର ଆଠଦାନରେ ତାଗିଦ୍ କରନ୍ତି—ଇଜ୍ଜତ ଦେଇ୍ କେଉଁ ହୋତା ହାସୁ ?

ସେଇ ଧାଡ଼ିକରେ ଥାଏ ପୂର୍ବ ଜୀବନର ଗୋଟାଏ ଗ୍ରାଫିକ୍ ସାରାଂଶ ।

ବଙ୍ଗାଳୀ ବଉ ଓ ରାଜସ୍ଥାନୀ ବହୂ ଅତ୍ୟନ୍ତ ବାଧିଲେ ତୁମକୁ ମତେ ସିନା କହିବ କିନ୍ତୁ ପ୍ରାଣ ହାରିଦେବ ନାହିଁ । କିନ୍ତୁ ଓଡ଼ିଆ ବୋହୂ ସେତିକି ଶୁଣିଲେ କ'ଣ ଯେ କରିଦେବ ସେଇଟା କେବଳ ରୁଚିସ୍ ଉପରେ ନିର୍ଭର କରେ ।

ଜଣେ ଲୋକ ବାଇଗଣ ତରକାରୀ ଖାଇଲାବେଳେ ଖଣ୍ଡେ ବାଇଗଣ ଗୋଟା ତାହାର ପାକସ୍ଥଳୀରେ କେଉଁଠି ଲାଗିଗଲା । ପାଣି ପିଇଲାବେଳେ ପାଣି ଢୋକ ଘଣ୍ଟିକାରେ ଲାଗିଯିବା ମତ ।

ଗୃଳଲ ଡାକ୍ତରଖାନା—ରୋଗୀ ମରିବା ଉପରେ । ସେଠି ବି ଅପରେସନ ହୋଇଗଲା । ବାହାରିଲା ଖଣ୍ଡେ ବାଇଗଣ ଷ୍ଟ୍ରେପା । ଯ୍ୟା'କୁ କହିବ ଗୃନସ୍ ।

ଦିଲ୍ଲୀରେ ୟୁନିଅନ ପବଲିକ୍ ସର୍ଭିସ କମିସନକୁ ଗୋଟିଏ ଇଣ୍ଟର-ଭିଉରେ ଦକ୍ଷିଣ ଭାରତର ବାସିନ୍ଦା ଜଣେ କର୍ମପ୍ରାର୍ଥୀ ନିଜର ଦିଲ୍ଲୀ ଠିକଣା ନ ଦେଇ ଦକ୍ଷିଣ ଭାରତ ଘରର ଠିକଣା ଦେଇଥିଲା । ସେଥିପାଇଁ ମାସେ ଛୁଟି ମଧ୍ୟ ନେଇଥିଲା ।

ଇଣ୍ଟରଭିଉରେ ସେ ଗୃକରି ପାଇଗଲା ତାହାର ବନ୍ଧୁମାନେ ହାଇ-ଟି (High Tea) ମାଗିଲେ ।

ହାଇ-ଟି ଖାଇଲାବେଳେ ବାବୁଟି କହିଦେଲା ଯେ ତାକୁ ଖର୍ଚ୍ଚ ପଡ଼ିନାହିଁ । T. A ରୁ ସେ ଦେଉଛି । ଦିଲ୍ଲୀରେ ଥିଲେ ମଧ୍ୟ ସେ ତାମିଲନାଡ଼ୁ ରୁ ରେଳଭଡ଼ା ପାଇଥିଲା ।

ବାସ୍ ସେତିକି ?

ଜଣେ ଗେଷ୍ଟ ତାହାଁ ଆରବିନ ଉପରକୁ ବେନାମି ଚିଠିରେ ଜଣାଇଦେଲା । ଇନକ୍ୱାରୀ ହୋଇ ସେ ମିଛ ଟି. ଏ. ନେଇଛି ବୋଲି ଗୃକରିକୁ ହରେଇଲା । କିନ୍ତୁ ତାକୁ ଦୟାକରି ଆଉ ପୁଲିସ କେସ୍ କରା ହେଲା ନାହିଁ ।

ଯ୍ୟା'କୁ କହନ୍ତି ଗୃନସ୍ ।

ମୋର ଆଡ଼ଭୋକେଟ୍ କଟକ ସମ୍ମୁଖିଙ୍କର ଘରର ପଶ୍ଚିମରେ ସନ୍ ସାଇନ୍ ଫିଲଡ଼୍ । ତାହାର ପଶ୍ଚିମକୁ ଭଡ଼ାଘରେ ଓଡ଼ିଶା ଫରେଷ୍ଟ କର୍ପୋରେସନର ଆଞ୍ଚଳିକ ଅଫିସଟିଏ ।

ସେଠି ଜଣେ ଅତି ଭଦ୍ର ବ୍ରାହ୍ମଣ ଡ଼. ଏମ୍. ଓ. ଥିଲେ । ସେ ତାଙ୍କର ପ୍ରେଷ୍ଠ କୁକୁର ଛୁଆକୁ ତାଙ୍କର ମୁଣ୍ଡ ବାଳରେ ଗେଲ କରନ୍ତି । ଦିନେ ସେଇ ଛୁଆ ଅଫିସରଙ୍କର ମୁଣ୍ଡ ସାଙ୍ଗରେ ଖେଳୁ ଖେଳୁ କାନ ପାଖରେ ଦାନ୍ତ ବସାଇ ଦେଲା ।

ସେତିକି ।

ତା'ର ଆଠମାସରେ ତାଙ୍କୁ ଧରିଲା ଜଳାତଙ୍କ ରୋଗ । କଟକ ପରିସରର ସମସ୍ତ ଚିକିତ୍ସା ତାଙ୍କୁ ବଞ୍ଚାଇପାରିଲା ନାହିଁ । ସେ ମରିଗଲେ ।

ସ୍ୱା'ଙ୍କୁ କହନ୍ତି ଗ୍ଲୁନସ ।

କଟକ କଚେରୀ ପାଖ କାଳ ମନ୍ଦିରର ଜଣେ ପ୍ରଧାନ ତତ୍ତ୍ୱାବ-ଧାରକ ଥିଲେ କଟକର ଜଣେ ବଙ୍ଗାଳି କରଣ ସମାଜର ବରିଷ୍ଠ ଅଫିସର ।

ସେତେବେଳର ସାମାଜିକ ଚଳଣୀ ଅନୁସାରେ ପାଖ ବସ୍ତିରେ ଗୋଟିଏ ବେଶ୍ୟା ଘରକୁ ସେ ଯାଉଥିଲେ ।

ବେଶ୍ୟାଟିର ମୁଣ୍ଡ ଖରାପ ।

କିନ୍ତୁ ତାକୁ ଏଇ ବାବୁଙ୍କ ଛଡ଼ା ଆଉ କେହି ଆପ୍ୟାୟିତ କରିପାରନ୍ତି ନାହିଁ ।

ଥରେ ବେଶ୍ୟାଟି ତାଙ୍କୁ ତାଙ୍କର କୋଳରେ ଚୁମା ଦେଉ ଦେଉ ଦାନ୍ତ ବସାଇ ଦେଲା ।

ସେତିକି । କଟକର ସବୁ ପ୍ରକାରର ଚିକିତ୍ସା ଓ ଉପଚାରକୁ ହେୟ କରିଦେଇ ସେ ବାବୁ ଚାଲିଗଲେ ମରଣର ଫାଟକ ଦେଇ ।

ସ୍ୱା'ଙ୍କୁ କହନ୍ତି ଗ୍ଲୁନସ୍ ।

ମୋର ଜଣେ ମାଇଁଙ୍କର କଜିନ୍ ସାହିତ୍ୟିକ କାହ୍ନୁଚରଣ ମହାନ୍ତିଙ୍କର ସାନପୁଅ ମାଟ୍ରିକୁଲେସନ ପାସ କରିଥିଲେ ମଧ୍ୟ ବୋର୍ଡ଼ ନୋଟିସରେ ତାହାର ନାମ ନ ଥିଲା । ସେ ଫେଲ ହୋଇଗଲା ଓ ପଢ଼ୁ ନଥିଲା ବୋଲି ଘର ଲୋକେ ବିରକ୍ତ ହେଲେ । ସେ ଯାଇ ନିଜ ରୁମ୍‌ରେ ଦଉଡ଼ି ଲଗାଇ ଦେଲା । ପରେ ଜଣାଗଲା ଯେ ଆତ୍ମହତ୍ୟାଟା ଭୁଲରେ କରିପକାଇଲା । ସେ ପାସ୍ କରିଛି ।

ସ୍ୱା'ଙ୍କୁ କହନ୍ତି ଗ୍ଲୁନସ୍ ।

ନୋବେଲ ପୁରସ୍କାର ବିଜେତା ସାର୍ ସି. ଭି. ରମଣଙ୍କର ଅନେକ ବକ୍ତୃତାର ବିଷୟ ଥିଲା ଯେ ମଣିଷର ଜୀବନଟା ହେଉଛି ଗ୍ଲୁନସ୍‌ର ଖେଳ —ଗେମ୍ ଅଫ୍ ଗ୍ଲୁନସ୍ ।



ଗୃନସ୍ ପାଇଁ କପିଳଦେବ ଓ ଗାଭାସ୍କର । ଗୃନସ ପାଇଁ ଅନେକ ବଡ଼ସାନ ମଣିଷ । ସାନବଡ଼ ହେଉଛନ୍ତି । ବଡ଼ ମଧ୍ୟ ସାନ ହେଇ-ଯାଇଛନ୍ତି । ଗୃନସ୍ ଖେଳରେ ଅବା ଜୀବନର ଖେଳରେ ଗୃନସ୍ ପାଇଁ ।

ମୋର ବୋହୂ ଅମିତା ପୁରୀରୁ କଟକ ଆସିଥିଲ ବୋହୂ ହେଇ ସେ ଗୃନସ୍ ଉପରେ ।

ପୁଣି ସେ ଚାଲିଗଲ ଆତ୍ମହତ୍ୟା କରି ସେଇ ଗୃନସ୍ ପାଇଁ । କିନ୍ତୁ ତାକୁ ଗୃନସ୍ ଧରାଇବାକୁ ତାହାର ଘର ଲୋକେ ଚଣ୍ଡୀପାଠ ଓ ଠାକୁର ମାଜଣା କରାଇ ନାହାନ୍ତି ତ ? ଯା'ର ଉତ୍ତର ତାଙ୍କ ଘରେ—ତାଙ୍କ ପାଖରେ ।

ଜଣେ ବରିଷ୍ଠ କିରଣ ଓକିଲ ତାଙ୍କର ପିଲାକୁ ଖୁବ୍ ଭଲ ରେଜଲଟ୍ କରାଇବାକୁ ପ୍ରାପ୍ତ କୋଡ଼ିଏଟି ଚଣ୍ଡୀ କରାଇଥିଲେ । ପିଲା ମାଟ୍ରିକୁଲେସନ ସେକେଣ୍ଡ ଡ଼ିଭିଜନ୍‌ରେ ପାସ୍ କରି ଆଇ. ଏ. ପରୀକ୍ଷାରେ ପାଟନା ବିଶ୍ୱବିଦ୍ୟାଳୟରେ ପଞ୍ଚମ ହୋଇଗଲା ।

ସେ ବି. ଏ. ପଢ଼ିଲା ଅନର୍ସ ପାଇଲା ନାହିଁ । ଚାଲିତ ଗଲା—ବିଶେଷ କିଛି ହେଲା ନାହିଁ । କୌଣସି ସୁବିଧା ତାକୁ ଆଉ ସୁବିଧା ଅଣାଇ ପାରିଲା ନାହିଁ ।

ସମସ୍ତେ ବିଚାର କରି କହିଲେ ଯେ ମଣିଷ ତାହାର ଭାଗ୍ୟର ସମସ୍ତ ଫଳକୁ ଚଣ୍ଡୀ ବା ମନ୍ତ୍ରଦ୍ୱାରା ଟାଣିଆଣି ଠା'କରେ ଠୁଳ କରିଦେଇ ପାରିବ । ନିଜର ପ୍ରାପ୍ତିର ପ୍ରାପ୍ୟକୁ ଥରେ ଅଧେ ଅଧିକ କରିଦେଇ ପାରିବ । କିନ୍ତୁ ତାହାର ସାମଗ୍ରିକ ଭାଗ୍ୟର ଗ୍ରାଫ୍ ଭାଙ୍ଗିଯିବ । ତେଣୁ ଏଇ ମନ୍ତ୍ର ଯନ୍ତ୍ର କରି ଭାଗ୍ୟଦେବୀଙ୍କୁ ସୁପ୍ରସନ୍ନ କରାଇ ଖୁସି ହେବା ଉଚିତ ନୁହେଁ । ମୋର ସମ୍ମୁଖିମାନେ ଏତକ ବୁଝିଲେ ପାଞ୍ଚଟି ଭାଙ୍ଗିବା ପରେ ।

ସେଥିପାଇଁ ବୁଦ୍ଧଦେବ ତାଙ୍କର ଭକ୍ତମାନଙ୍କୁ ଯେଉଁ ପାଞ୍ଚଟି ମାର୍ଗ ଦେଖାଇଥିଲେ ସେଥିରୁ ଯୋଡ଼ିଏ ହେଲା—

ଯାହା ତୁମକୁ ମିଳୁନାହିଁ ସେପରି ଜିନଷ ନଅ ନାହିଁ । ···ତୁମର ସ୍ତ୍ରୀ ପ୍ରତି ସନ୍ତୁଷ୍ଟ ରହ । ଅର୍ଥାତ୍ ଏଣେତେଣେ ଗୃହିଁ ଟାଉକା ଧୁଅ ନାହିଁ ।

ସେଇ କଥା ରାମଧୁନ ଭଜନରେ ରହିଛି—ପରସ୍ତ୍ରିରୀ ଜନେ ନ ଗୃହେଁରେ ।

ମୋର ବୋହ, ଅମିତାର ମରଣ ସାଙ୍ଗରେ ସର୍ବୋତଭାବେ ସମାନ ଆଉ ଗୋଟିଏ ମରଣର ଦୃଶ୍ୟ ଘଟିଥିଲା କିଛିଦିନ ଆଗରେ ଗୋଟିଏ ବଙ୍ଗାଳି ପରିବାରରେ ।

ସେଠି ବାପା କଟକର ଜଣେ ବିଶିଷ୍ଟ ଆଡଭୋକେଟ୍ । ମାଆ ଜଣେ ପ୍ରିନସିପାଲ । ପୁଅଟି ମଧ୍ୟ ଗୋଟାଏ ଖୁବ୍ ଭଲ ପିଲା—ଏମ୍. ଏ. ପାସ୍ କରିଛି । ବାପ ମାଙ୍କ ପ୍ରତି ଖୁବ୍ ସ୍ନେହ ଓ ମୋହ ।

ପ୍ରତିଦିନ ମଟରନେଇ ଦିନ ତିନଟାବେଳକୁ ଯାଇ କଟକର ବାଦାମବାଡ଼ିରେ ବସିଥାନ୍ତି । ମାଆ ବସ୍‌ରୁ ଓହ୍ଲାଇଲେ ତାଙ୍କୁ ନେଇ ଘରକୁ ଆସିବେ । ବଡଲୋକ—ବାପ ମାଙ୍କର ସ୍ନେହ ଆଦର ମଧ୍ୟ ଯଥେଷ୍ଟ । ସେମାନେ ଓଡ଼ିଆ କରିଣ ନୁହନ୍ତି ଯେ ଚର୍ଚ୍ଚିଗିର ହେବେ ।

ସକାଳୁ ବାପାଙ୍କ ସାଙ୍ଗରେ ମର୍ଣିଙ୍ଗ୍ ଓ୍ୱାକ କରି ଫେରିଲେ ମାଆଙ୍କୁ ନେଇ କଟକ ବାଦାମବାଡ଼ିକୁ ମଟର ଯିବ ।

ପୁଅ କହୁଥିଲେ ଯେ ତାଙ୍କର ଜଣେ ସାଙ୍ଗ ଆତ୍ମହତ୍ୟା କରିବା ପରେ ଅନେକଥର ତାଙ୍କୁ ଡ଼ାକୁଛି । ବାପା ମାଆ ଏସବୁ କଥାକୁ ସେତେ ଗୁରୁତ୍ୱ ଦେଇ ନ ଥିଲେ । ସଂସାରର ଜଞ୍ଜାଳ ଭିତରେ ଏସବୁ ଭୂତ ପ୍ରେତର ଡ଼ାକରା ଓ ନିମନ୍ତ୍ରଣ ବୁଝିବାକୁ କାହାର ଅବା ଆଗ୍ରହ ଆସିବ ?

ସକାଳେ ବୁଲିଯିବାପାଇଁ ବାପପୁଅ ପୋଷାକ ପିନ୍ଧିଲେ । ପୁଅ ମଧ୍ୟ ତାହାର ନୂଆ ପୋଷାକ ଟାଇ ଓ ଯୋତା ମୋଜା ପିନ୍ଧି ବାପାଙ୍କୁ କହିଲା ଯେ ସେ ଆଗରେ ଗୃଲନ୍ତୁ । ସେ ଯାଇ ପହଞ୍ଚିବେ ।

ବାପା ବୁଲିବାକୁ ବାହାରିଗଲେ । ମାଆ ଚୁ' କରୁଛନ୍ତି—ଚୁ' ପିଇ ରେଡ଼ି ହେବେ ।

ପୁଅ ଯାଇ ଘର ଭିତରେ ବିଜୁଳି ପଙ୍ଖାରୁ ଦଉଡ଼ି ଓହଳାଇ ନିଜକୁ ଶେଷ କରିଦେଲେ । ପୋଷାକପତ୍ର ପିନ୍ଧି ଆନନ୍ଦରେ ବୁଲିଗଲା ପରି କଥା ଓ କାରବାର ।

ନିଜର ଜୀବନ ଦୀପ ଲିଭାଇ ଦେବା ଆଗରୁ ସେ ଥରକପାଇଁ ମାଆ କଥା ଭାବିଲେ ନାହିଁ । ବାପାଙ୍କ କଥା ମନେପକାଇଲେ ନାହିଁ । ନିଜର ସ୍ତ୍ରୀ ଯଶୋଧାରା କାଳେ ଉଠିପଡ଼ିବେ ବୋଲି ଅବତାର ବୁଦ୍ଧ ବାହାଘରର ଦଶବର୍ଷ ପରେ ନିଜର ପୁଅ ରାହୁଲ ଜନ୍ମ ହେବାପରେ ସ୍ତ୍ରୀ ଓ ପୁଅଙ୍କୁ ଥରେ ନ ଦେଖି ତାଙ୍କଠାରୁ ମେଲାଣି ନ ନେଇ, ନିଜର ଚୌରାଶି ହଜାର ନର୍ତ୍ତକୀଙ୍କ ମଧ୍ୟରୁ ଜଣକଠାରୁ ବି ମେଲାଣି ନ ମାଗି ଶାକ୍ୟମୁନି ଚାଲିଗଲେ ନିଜର ଜ୍ଞାନାଲୋକ ପାଇଁ ।

କିଏ କାହା ପାଇଁ କେତେବେଳେ ଯାଇ କାହାକୁ ଚାଳି ମାରିବ କି କାହାକୁ ଛାଡ଼ି ପଳାଇବ ଅବା ନିଜକୁ ପୋଛିଦେଇ ସଂସାର ଛାଡ଼ିବ ତାହାର ଉତ୍ତର କେହି ଦେଇପାରନ୍ତି ନାହିଁ । ଖାଲି କହୁଥାନ୍ତି ଯେ ଏକାଠି ରହିଲେ ଜଣେ ଆଉ ଜଣକର ପ୍ରିୟଜନ ହୁଏ । ପ୍ରିୟଜନର ପ୍ରୀତି ଓ ବନ୍ଧନ ହେଉଛି ଏଇ ଦଗ୍ଧଭରା ସମାଜ ଓ ସଂସାରରେ ଏକମାତ୍ର ସୁଖ ।

ସେମିତି ଚାଲିଯାଇଥିଲେ ସକାଳ ପହରରେ ଜଣେ ବିଶିଷ୍ଟ କରଣ ଲେଖିକା—ଭୁବନେଶ୍ୱର ଷ୍ଟେସନରେ ।

ସେ ସବୁବେଳେ ସମସ୍ତଙ୍କୁ କହୁଥିଲେ ପଣ୍ଡିଚେରୀ ଆଶ୍ରମ କଥା ଓ ଆଶ୍ରମର ମାଆଙ୍କ ବିଷୟରେ । ମାଆଙ୍କର ବିଦାୟ ପରେ ତାଙ୍କର ଶରୀର ସେମିତି ସତେଜ ରହିବ, ତମେ ଦେଖିବ ।

ମାଆ ଚାଲିଗଲେ ।

ତାଙ୍କର ଦେହ ନଷ୍ଟ ହେବାକୁ ଆରମ୍ଭ କଲା । ସମାଧି ଦିଆଗଲା । ଭାବ ପ୍ରବଣ ଲେଖିକା କହିବାକୁ ଆରମ୍ଭ କଲେ—ମୁଁ କାହାକୁ କେମିତି

ଆଜ ମୁଁହ ଦେଖାଇବ । ମୋର ଆଜ ମୁହଁ ନାହିଁ । ମୋର ଅଗାଧ ବିଶ୍ୱାସ ଭୁଶିଯାଇଛି ।

ପିଲାମାନେ ପହଞ୍ଚି ପଣ୍ଡିଚେରୀରେ । ସେମାନେ ଆସିଥିଲେ । ମାଆପାଇଁ ଭଲ ଶାଢ଼ୀଟିଏ ଆଣିଥିଲେ । ମାଆ ସେସବୁ ଉପହାର ପିନ୍ଧି ସକାଳୁ ଚାଲିଗଲେ ରେଳ ଇଞ୍ଜିନ ଆଗରେ ଠିଆ ହେବାକୁ । ସଂସାରର ଓ ନିଜର ବନ୍ଧନ ତାଙ୍କୁ ପଛକୁ ଟାଣିଲା ନାହିଁ ।

ଜଲି ଜନ୍ ଜଣେ । ବଡ ବିଚଳିତ ହୋଇଗଲେ ନିଜ ଉପରେ । ଚାଲିଗଲେ ଭୁବନେଶ୍ୱର । ସେଠି ଯାଇ ମନ୍ଦିରେ ଗୋଟାଏ ଜାଗାରେ ସେ ଡେଇଁପଡ଼ିଲେ ରେଳ ଇଞ୍ଜିନ ଆଗକୁ । କିନ୍ତୁ ଆତ୍ମହତ୍ୟା ହେଲେ ଅନାଥ ପିଲାମାନେ ସରକାରୀ ଅନୁଦାନ ପାଇ ନପାରିବେ ବୋଲି କୁହାଗଲା —ଦୁର୍ଘଟଣା ।

ବିଚକ୍ଷଣ ସାମ୍ବାଦିକ ଦେବାବାବୁ ତାଙ୍କର ଭଉଣୀଙ୍କ ବିଷୟରେ ଯେଉଁ ଅଭିଯୋଗ ପତ୍ର ତିଆରି କରି ବିଭିନ୍ନ ଭାଷାରେ ବିଭିନ୍ନ କେନ୍ଦ୍ରରେ ମୋର ବୋହୂର ଶବ ଆଙ୍କୁଛନ୍ତି ସେ କ'ଣ ଏତେ ଅନଭିଜ୍ଞ ଯେ ଭୁବନେଶ୍ୱରର ଏଇସବୁ ମୁକ୍ତ ଯାଗା ସହିତ ତାଙ୍କର ପରିଚୟ ନାହିଁ ?

ହୋଇପାରେ ସେ ଭାବୁଥିବେ ଯେ ଭୁବନେଶ୍ୱର ଓ ବାରଙ୍ଗରେ ରେଳ ଇଞ୍ଜିନମାନେ ବଳାବଳ ପରୀକ୍ଷା କରୁଥିଲେ ବିଶିଷ୍ଟ ଲୋକମାନଙ୍କ ଉପରେ ।

ଏଇ ଜୀବନକାଳ ମଧ୍ୟରେ ମାହାତ୍ମମାନେ ନିଜ ନିଜର ସ୍ୱାର୍ଥସିଦ୍ଧି ପାଇଁ କେତେବେଳେ ବ୍ରାହ୍ମଣ, କେତେବେଳେ ଅଣଓଡ଼ିଆ, କେତେବେଳେ ଅନ୍ୟ ପାଠକଙ୍କ ଉପରେ କେମିତି କ'ଣ କରନ୍ତି ମୁଁ ମଧ୍ୟ କିଛି କିଛି ଜାଣେ; କିନ୍ତୁ ନିଜର ଲୋକଙ୍କୁ କେନ୍ଦ୍ର କରି ମାହାତ୍ମମାନେ କପରି ମାହାତ୍ମଙ୍କୁ ଅପଦସ୍ଥ କରିଥାନ୍ତି ତାହାର ଗୋଟାଏ ପ୍ରାଣମୟ ଅନୁଶୀଳନୀ ଏବେ ମୋର ବୋହୂ ଅମିତାର ଅକାଳମୃତ୍ୟୁ ଗୁଡ଼ିଏ ଅକାଳକୁଷ୍ମାଣ୍ଡଙ୍କ ଦ୍ୱାରା କରି ଓ କରାଇ ଦେଖାଇଦେଲା ।

ଯେ ଜାତିଆଣ ପ୍ରୀତି ଜାତି ପ୍ରତି ବିପଦ । ଏଇ ଜାତିଆଣ-ପ୍ରେମୀ ସେନାବାହିନୀ ହେଉଛନ୍ତି ମଣିଷର ଶତ୍ରୁ ଓ ସମାଜର ଶତ୍ରୁ ।

ମୋର ବୋହୂ ନିଜକୁ ପୋଡ଼ି ପାରି ନ ଥିଲେ ନିଜେ ବଡ଼ ହଇରାଣ ହେଉଥାନ୍ତା । ଶେଷକୁ ନିଜ ଘରକୁ ଅବା ଶାଶୁ ଘରକୁ ଅବା ବାପ ଘରକୁ କ'ଣ ଅସୁବିଧାରେ ପକାଇଥାନ୍ତା କେଜାଣି ।

ତାହାର ଏଇ ଅକାଳ ମରଣ ପାଇଁ ଦୋଷୀ କ'ଣ ବାପଘର ? ବାପଘରର ଶୁଭାକାଂକ୍ଷୀମାନେ ।

ଏହାକୁ ବୁଝିବାକୁ ଏଇ ବହିରେ ଛପା ଯାଇଥିବା ଖବର-କାଗଜ ଓ ପତ୍ରିକାର ଛପା ଭୁଲ ଓ ନିର୍ଭୁଲ ତଥ୍ୟର ବିବରଣୀ ପଢ଼ିବା ଦରକାର । କିନ୍ତୁ ଏଇ ମାତ୍ର ଦୁଇଶହ ପୃଷ୍ଠାର ଛପାଇବା ଜାଗା ଭିତରେ ସେ ସବୁ ଯାଇ ପାରିଲା ନାହିଁ । ବହି ଲେଖିବା ଆଗରୁ ସମାଜରେ ଛପା ହୋଇଥିଲା ।

ସମାଜ ପୃଷ୍ଠା ୩ ତା ୧୬।୧୦।୮୪

ଜୀବନର ସନ୍ଧ୍ୟା

ଉପନ୍ୟାସ ତିମାଇ ଦୁଇଶହ ପୃଷ୍ଠା ବନ୍ଧାଇ ମୂଲ୍ୟ କୋଡ଼ିଏ ଟଙ୍କା । ଶିଶୁ ଦିବସ ୧୪।୧୧।୮୪ ମଧ୍ୟରେ କଟକରୁ ନେଲେ ଦଶ ଟଙ୍କା ଓ ଡାକରେ ନେଲେ ଅଧିକା ପାଞ୍ଚଟଙ୍କା ପଡ଼ିବ । ଅଗ୍ରୀମ ପଠାନ୍ତୁ । ୧୪।୧।୮୫ ସୁଦ୍ଧା ବହି ନ ପାଇଲେ ଅଗ୍ରୀମ ଟଙ୍କା MO ଦ୍ୱାରା ଫେରସ୍ତ ହେବ ।

R. K Patnaik, Cuttack-9

ଗୋଟିଏ କଲିଷଠା ପାର ହେଇଥିବା ମାହାନ୍ତି ଲେଖକର ନିବେଦନ ଜଣେ ବି ମାହାନ୍ତି ପାଠକ ପୃଷ୍ଠପୋଷକତା ନ କରି ଓଲଟି ମତେ ଏଠି ସେଠି ଅଭିନନ୍ଦନ କଲେ ଯେ ବୁଢ଼ାମାନେ ଲେଖନ୍ତି କ'ଣ ପାଇଁ ?

ଦୁଇ ଜଣ ଦଶ ଟଙ୍କା କରି ଦେଲେ । ସେ ଦୁଇ ଜଣ ହେଲେ କଟକର କୁମାର ଶ୍ରୀ ପ୍ରତାପ ଚନ୍ଦ୍ରଦେବ ଆଡ଼ଭୋକେଟ୍ ଓ ଶ୍ରୀ ଧ୍ରୁବ-

ଚରଣ ସାହୁ ଆଡ଼ଭୋକେଟ୍ । ଗୋଟିଏ ବି ମାହାନ୍ତ ଦେଖା ଦେଲେ ନାହିଁ । ଅଥଚ ଏମାନେ ଇନ୍‌କମ୍ ଟିକସ କେତେ ଦେଉଛନ୍ତି, ଘରଭଡ଼ା କେତେ ପାଉଛନ୍ତି ତାହାର ତଥ୍ୟ ଶୁଣାଇ ବଡ଼େ ଆପ୍ୟାୟିତ କରୁଥାନ୍ତି ।

ଇଏ ହେଲା ସବୁଗିଲା କରଣ ସମାଜର ସାହିତ୍ୟ ପ୍ରୀତି ଓ ସଂସ୍କୃତି ପ୍ରୀତି ।

ତଥାପି ଈଶ୍ୱର ଅଛନ୍ତି । ୨୨।୧୧।୮୪ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କ ଅଫିସରୁ ଖଣ୍ଡେ ଚିଠି ଆସି ପହଞ୍ଚିଲା ଯେ ଏଇ ଅକିଞ୍ଚନକୁ ତିନି ହଜାର ଟଙ୍କା ଦେଲେ ।

ଆଗରୁ ଡ଼ିସେମ୍ବର ତେୟାଅଶି ଓ ଜୁଲାଇ ଚଉରାଅଶିରେ ମୋର ଜରାଜୀର୍ଣ୍ଣ ଅଦରକାମୀ ଦେହର ଚିକିତ୍ସା ଖର୍ଚ୍ଚ ପାଇଁ ହଜାରେ ଟଙ୍କାକରି ଦୁଇ ହଜାର ଟଙ୍କା ଦେଇଥିଲେ । ମୋଟ ଦେଲେ ପାଞ୍ଚ ହଜାର ଟଙ୍କା । ଆଶା କରୁଛି ଯେ ସରକାରୀ କଳ ଏଇ ତିନି ହଜାର ଟଙ୍କା ଦେବାକୁ ମୋର ମରଣଯାଏ ଅପେକ୍ଷା କରିବ ନାହିଁ ।

ଦେଓ ଯାହାଦେଲେ ହରଷେ, ପାଉ ପାଉ ଗଲା ବରଷେ...

Office of the Chief Minister, Orissa
No 9483/CM dt 15.-11-84.

From

Shri D. N. Patnaik
Deputy Secretary To Chief Minister

To

Sri Rajkishore Patnaik
Writer
Telenga Bazar, Cuttack-753009

Sir,

Chief Minister has been pleased to sanction sum of Rupees three thousand in your favour from Chief Minister's Relief Fund General Admini-

stration Department is being requested to remit the amount quickly.

Yours faithfully
Sd/ D. N P.
Deputy Secretary to Chief Minister

ଚଉଦ ବର୍ଷ ତଳେ ଉତ୍କଳ ହରେକୃଷ୍ଣ ମହତାବ ତାଙ୍କର ୧୯୭୦ ଜନ୍ମଦିନ ଉତ୍ସବ ଜରିଆରେ ହଜାରେ ଟଙ୍କା ଓ ଖଣ୍ଡେ ମାନପତ୍ର ଦେଇଥିଲେ ।

କିନ୍ତୁ ଭୁବନେଶ୍ୱର, ସେଣ୍ଟ୍ରାଲ ଓ ଦିଲ୍ଲୀର ଓଡ଼ିଆ ସାହିତ୍ୟର କେନ୍ଦ୍ରମାନେ ଖଣ୍ଡେ ମାନପତ୍ର ବା ପ୍ରାଇଜ ଦେବାର ଯୋଗ୍ୟତା ମୋର ଚଉଷ ବର୍ଷର ଓଡ଼ିଆ ସାହିତ୍ୟିକ ଜୀବନରେ ଦେଖି ପାରିଲେ ନାହିଁ । ସେଥିଭିତରେ ଚେଷ୍ଟିତ କରଣ ଅଛନ୍ତି—ନିଜ ନିଜ ପାଇଁ ଚେଷ୍ଟାରେ ଝାଳମାଳ । ବିଚରା ଆଜି ଜଣେ ମାହାନ୍ତି ନାଳ ପାଖରେ ପଡ଼ି କାନ୍ଦୁଛି ।

ଶେଷକୁ ୧୯୮୩ରେ ନାସନାଲ ବୁକ୍ ଟ୍ରଷ୍ଟ କନଡ଼ର ଉପନ୍ୟାସ ମୁକ୍ତିକୁ ହିନ୍ଦୀରୁ ଓଡ଼ିଆ କରିବାକୁ ଛଅଶ ଶହ ଟଙ୍କାର ବରାଦ ଦେଇ ମୋ'ଠାରୁ ଓଡ଼ିଆ ଅନୁବାଦ ଲେଖାର ସ୍ପେସିମେନ୍ ମଗାଇଲେ ।

ନାହିଁ—ହିଁ—ହୋଇ ଦେଲି ।

ଆପ୍ରୁଭଡ଼ ଲେଖା ହୋଇ ଆସିଲା । ମୁଁ ଲେଖିଥିଲି "ହଏତ" । ତାକୁ ମୋର ପରୀକ୍ଷକ ଦୁଇଟା ଶବ୍ଦ କରିଦେଲେ ହଏ ଓ ତ । ।

ମୁଁ ଯାଇ ସାହିତ୍ୟିକମାନଙ୍କୁ ପଚାରିଲି । କିଏ କହିଲା ଇଏ ଗୋଟିଏ ଶବ୍ଦ । ଆଉ କିଏ କହିଲେ ଦୁଇଟି ଶବ୍ଦ ।

କିନ୍ତୁ ମତେ ଅନୁବାଦ କରିବା ଆଦେଶ ମିଳିଲା ନାହିଁ । କାରଣ ସେମାନେ (N.B T.) କହିଲେ ଲେଖାର ପରୀକ୍ଷା ଫିସ ମୋର ଛଅଶ ଶହରୁ କଟିବ କିନ୍ତୁ କେତେ କଟିବ କେହି କହି ପାରିବେ ନାହିଁ । ମୋର ବି ଜଣେ ମାଷ୍ଟର ଅଛନ୍ତି N.B.T.ରେ । ବଜାରରେ ଦେଖୁଛି

ମୋ'ଠାରୁ ବଡ଼ ବଡ଼ ସାହିତ୍ୟିକମାନେ N.B.T. ବହି ଓଡ଼ିଆରେ ଅନୁବାଦ କରିବାରେ ଲାଗି ପଡ଼ିଛନ୍ତି । ଏଣେ ଏଠି ସାହିତ୍ୟ ସଭାକୁ କଥାରେ କମ୍ପାଇ ଦେଉଛନ୍ତି ନିଜର ସ୍ୱାଧୀନତା କଥା କହି ବୁଝାଇ ।

କିନ୍ତୁ ଜଣେ ବୁଢ଼ା ମାହାନ୍ତି ଗୋଟିଏ ପ୍ରାଇଜ ବା ଗୋଟିଏ ଅନୁବାଦ ପାଇ ନିଜକୁ କୃତାର୍ଥ କରି ପାରିଲି ନାହିଁ ।

ଏସବୁ ଭାବି ମୁଁ ସ୍ଥିର କଲି ମୋର ବୋହୂ ଅମିତାର ବାଟ ଧରିବାକୁ ହେବ । କିନ୍ତୁ ଏଇ ଯୋଡ଼ାଯୋଡ଼ି କାମ ମୋର ମନକୁ ଯିବନେ ନାହିଁ ।

ମନ କଷ୍ଟରେ ବୁଲିଲାବେଳେ ହାଇକୋର୍ଟର ବନ୍ଧୁ ଶ୍ରୀ କୃଷ୍ଣଚନ୍ଦ୍ର ମାହାନ୍ତି (ବାଲିକୁଦା ଗଜରାଜପୁର ମଉଷା ଘର—ଖୋରଧା ବାଜପୁର ନୁହେଁ) ମତେ ପ୍ରବୋଧ ଦେଇ କହିଲେ ତାଙ୍କ ଗାଁର ମିଆଁ ପୁଅର ମହାଭାରତ ଶୁଣିବା କଥା ।

ମହାଭାରତରେ ଅନେକ ବଢ଼ିଆ କଥା ରହିଛି ବୋଲି ମିଆଁ ତାଙ୍କର ପୁଅକୁ ଗାଁ ଚଉପାଢ଼ୀକୁ ପଠାଇ ପୁଅକୁ ପୁରା ଅଠର ଖଣ୍ଡ ମହାଭାରତ ଶୁଣାଇ ଦେଲେ ?

ପଚାରିଲେ—ବେଟା, କ୍ୟା ହୁଆ ?

—କୁଛ୍, ଖାସ ବାତ ନେହିଁ ।

ଅନ୍ଧାକା ଶଉ ଔର ପଣ୍ଡୁଆକା ପାଞ୍ଚ

କାଲିଆକା ଲଟପଟ୍

ଥୋଡ଼ା ଜମିନ୍ କା ବାସ୍ତେ (ପାଇଁ)

ସେଇଆ ତ ।

ଅଖବାରେଁ (ଖବର କାଗଜମାନଙ୍କର) କା

ଲଟପଟ୍

ଥୋଡ଼ା ମଜାକ୍ (କୌତୁକ) କା ବାସ୍ତେ ।

ଓଡ଼ିଆ ସମାଜରେ ଗୋଟାଏ ଢଗ ଅଛି ଯେ ମହୁରିଆର ମଇଦାନ ଗଲାବେଳେ ପେଁକାଳି ବାଜେ ।

କରଣ ସମାଜରେ ସେହିପରି ସବୁ ପ୍ରକାରର ଅବସ୍ଥାରେ ବସ୍ତିଓ୍ୱାଲେ ଶ—ବେ—ଚୋ' ମା'କୁ—ଆଦି ବ୍ୟବହାର କଲା ପରି କରଣମାନେ ହାମେଷା ବୁଦ୍ଧିର କାରବାର ଦେଖାନ୍ତି ।

ଏମିତି ବ୍ୟବହାର ଥରେ ଜଣେ ହିନ୍ଦୁସ୍ଥାନୀ ରାଜାଙ୍କୁ ଦେଖାଇ ଥିଲା ସେଠିକାର ହିନ୍ଦୁସ୍ଥାନୀ କରଣ । ଗଳ୍ପଟି କହିଥିଲେ ସାହିତ୍ୟିକ ଓ ବିଶିଷ୍ଟ ଆଡ଼ଭୋକେଟ୍ ଶ୍ରୀ ଗୋପାଳ ପ୍ରସାଦ ଘୋଷ ।

ରାଜାଙ୍କର ଗହଣରେ ବଣ ଭିତରେ ଗଲାବେଳେ ହାତୀର ପାଦ ଚିହ୍ନ ଦେଖି ରାଜା ବହୁତ ଭକୁଆ ହୋଇଗଲେ—କି ପ୍ରକାରର ଜନ୍ତୁର ପାଦ ଚିହ୍ନ ?

କରଣ ହାଜରଗଲେ କଥା ଶେଷ । କରଣ ସରଦାର ନାଁ ଲାଲ୍ । ସେ ବୁଦ୍ଧି କାଢ଼ିଲା ।

ବୁଝ୍‌ଗୟା ବୁଝ୍‌ଗୟା
ଲାଲ ନ ବୁଝେ ତୋ' ଔର ବୁଝେ କୋଇ ?
ହରନା (ହରିଣ) ପାଓ୍ୱେର (ପାଦରେ) ଚକ ବାନ୍ଧକର
ଚଲ୍‌ଗୟି···ଚଲ୍‌ଗୟି ।

ସମସ୍ତଙ୍କୁ କଥାଟା ସ୍ପଷ୍ଟ ହୋଇଗଲା । ଏବେ ସ୍ପଷ୍ଟ ହେଲା ଯେ କଥା ଗଡ଼ି ଆସିଲାଣି ଦୁଇ ହଜାର ଅବା ତିନି ହଜାର ବର୍ଷ—ଅନେକ ଭାଷା ଉପର ଦେଇ ।

ହାଲକୁ କରଣ ସମାଜରେ ଗୋଟିଏ ମିଛ କୁରୁକ୍ଷେତ୍ର ଯୁଦ୍ଧ ଚାଲିଛି—ଶାଶୁ ବୋହୂ ନେଇ ।

ଧର୍ମକ୍ଷେତ୍ର କୁରୁକ୍ଷେତ୍ର······



ମୋ' କଥା--

ଊନେଇଶ ଶହ ଛତିଶି ମସିହାରେ ମୋର ଶଠି ଫାଇଲ ଛପା ଆରମ୍ଭ ହୋଇଥିଲା । ସେଗୁଡ଼ିକ କଟକର ଉତ୍କଳ ଷ୍ଟୋର୍ସ ପଞ୍ଜୁରୀ ପକ୍ଷୀ ନାମରେ ବହି କରିଥିଲେ । ସେଇଠୁ ଆଜିଯାଏ ମୋଟା ମୋଟି ପଚିଶ ବର୍ଷ ।

ଏଇ ପଚିଶ ବର୍ଷ ଭିତରେ ଗୋଟିଏ ଭଲ ଅନୁଭବ ଆସିଲା— ସେଇଟି ହେଲା ଯେ ମୋର ଲେଖା ଆରମ୍ଭ କଲାବେଳେ ଯେଉଁମାନେ ଜନ୍ମ ହେଉଥିଲେ ସେମାନଙ୍କର ଦରଦ ଭରା ସମ୍ବୋଧନ—ବୟୋଜ୍ୟେଷ୍ଠ ସାହିତ୍ୟିକ...... ।

ଏହି ସୁଶ୍ରାବ୍ୟ ସମ୍ବୋଧନ କେତେ ଥର ଶୁଣିଲା ପରେ ଆଉ ସାହିତ୍ୟ ସଭାକୁ ଯିବା ଆବଶ୍ୟକ ହୋଇ ନାହିଁ । କାରଣ ଓଡ଼ିଆ ସାହିତ୍ୟରେ ଏବେ ନୂତନ ପଦ୍ଧତିରେ ଗଣତନ୍ତ୍ରର ଶୈଳୀ ଦେଖା ଦେଇଛି ।

ସେଥିପାଇଁ ସାହିତ୍ୟିକ ମଣ୍ଡଳୀ ଠାରୁ ଦୂରରେ ରହିବା ଦରକାର ପଡ଼ୁଛି । କାରଣ ଶମ୍ଭୁ ରାଜ୍ୟରେ ଗଣତନ୍ତ୍ର ନ ଥାଏ ବୋଲି ପ୍ରତ୍ୟେକ ସଭ୍ୟ ଦେଶରେ ଧାରଣା ।

ସାହିତ୍ୟିକ ମଣ୍ଡଳୀ ମଧ୍ୟରେ ସାହିତ୍ୟର ନୂଆ ସଂଜ୍ଞା ଦେଖା-ଦେଇଛି । ସେଇଟି ହେଲା ସାହିତ୍ୟ ଓ କଳାକାର ସମାନ । କଳାକାର ଓ କଳାକୃତିର ବେପାରୀ ସମାନ ।

କଲମ ଧାଙ୍ଗରେ ଢୁଗିତବଲା ସମାନ । ମୁସାହିବ ଓ କବିତା ସମାନ । ସାମ୍ବାଦିକତା ଓ ଲେଖା ସମାନ । ଲେଖା ଓ ଲେଖାର ପ୍ରକାଶକ ସମାନ । ପ୍ରକାଶକ ଓ ପାଠକ ସମାନ । ପାଠକ ଓ ବହି ଖରିଦ ଦାର ସମାନ । ସବର୍ଣ୍ଣ ଓ ହରିଜନ ସମାନ ।

ଏଇ ସମତା ଭିତରେ ଲେଖାର ବହୁତ ପ୍ରକାରର ଉପାଦାନ ମିଳେ । ସେଇ ଉପାଦାନକୁ ବାଛି ବାଛିବଛିର କରି ସରକାର ଭଲ ଓ ମନ୍ଦ ସ୍ଥିର କରନ୍ତି । ସେଥିପାଇଁ ସାହିତ୍ୟର ସଙ୍ଗଠନମାନେ ରେଳଗାଡ଼ି

ଛାଡ଼ିବା ଆଗରୁ ହୁଇସିଲ ମାରିଲା ପରି ସାହିତ୍ୟରେ ବାରମ୍ବାର ହୁଇସିଲ ମାରୁଛନ୍ତି ।

ସେଇ ହୁଇସିଲ ଭିତରେ କଥା ଥାଏ—ପେଁ କାଳୀ ଭିତରେ କଥା ଶୁଭିଲା ପରି ।

ସେଇ କଥା ଗୁଡ଼ିକ ହେଲା ଉପଦେଶ—ସାହିତ୍ୟିକମାନେ, ଏମିତି ବିଷୟ ନେଇ ଲେଖ । ଏ ବିଷୟରେ ଏହି ପ୍ରକାରର ଛନ୍ଦ ଓ ରସ ଯୋଗ କର ।

ଶୁଣିଲେ ବଡ଼ ବ୍ୟସ୍ତ ଲାଗେ—କେମିତି କଣ ଲେଖିବାକୁ ହେବ ? ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟକୁ କ'ଣ କର୍ଣ୍ଣାଟକୀ ସଂଗୀତ ବା କଥାକଳୀ ନୃତ୍ୟର ଗୁରୁମାନେ ଉପଦେଶ ଦେଉଛନ୍ତି ?

ତେବେ ଓଡ଼ିଶାରେ ଓଡ଼ିଆ ରଚନା-ନାୟକମାନେ ନିଜେ ନ ଲେଖି ଖାଲି ଉପଦେଶ ଦେବାରେ ଲାଗି ପଡ଼ୁଛନ୍ତି କାହିଁକି ?

ଏଇ ଉପଦେଶର ପ୍ରାଦୁର୍ଭାବ ଲେଖକ ମନରେ ଶଙ୍କା ଆଣୁଛି । ଯେମିତି ପୁରୁଣା କାଳିଆ ବାଳ କଣ୍ଠା, ଲୁଗାପଟା ମଣିଷକୁ ଅପଦସ୍ଥ କରୁଛି ସେମିତି ନୂତନ ଭାବଧାରାକୁ ଉପଦେଶ ଛଳରେ ପୁରୁଣା ଲେଖକଙ୍କ ଉପରେ ଅଜାଡ଼ି ଦେଲେ ଗୋଟିଏ ପ୍ରକାରର ହୀନମନ୍ୟତା ଆସୁଛି ।

ଯେ, ମୁଁ ଆଉ ଲେଖିବି କାହିଁକି ? ନୂଆ ଭାବଧାରା ବନ୍ୟା ଛୁଟାଇ ଚାଲିଛି । ସେଥିରେ ମୂଲ୍ୟହୀନ ପୁରୁଣା ଭାବଧାରା କାହାର କି କାମରେ ଲାଗିବ ?

ଆଇଡ଼ିଆ ବାଜେ ବୋଲି ଯଦି ସାଂସ୍କୃତିକ ବିଭାଗମାନଙ୍କର ପିଅନ ଓ ଦପ୍ତରୀଙ୍କର ସ୍ତ୍ରୀ ବା ଝିଅ କହିଦେବେ ତେବେ ବହି ଗୁଡ଼ାକୁ ଆଉ କେହି ଚାହିଁବେ ନାହିଁ ।

ହିନ୍ଦୁ କଂସେଇ ଓ ମୁସଲମାନ କଂସେଇଙ୍କର ପଶୁଙ୍କୁ ମାରିବାର ପଦ୍ଧତି ଜଣକୁ ଆର ଜଣଙ୍କ ଠାରୁ ଅଲଗା କରିଦେଲା ପରି ।

ମୋ’ ମତରେ ଏବେ ସେଇ ସମସ୍ୟା ଆସି ପଡୁଅଛି । ଏଥିରେ ସାଂସ୍କୃତିକ ବିଭାଗ ମନ୍ତ୍ରୀଙ୍କର ଦୋଷ ନାହିଁ । ସେ ସିନା ମନ୍ତ୍ରୀ—ସେ ତ ଲେଖକ ନୁହନ୍ତି । ଲେଖୁଥିଲେ କେବେ ? ଯାହା ଲେଖିଥିଲେ ସେତକ ତାଙ୍କର ସ୍ଥିତି ଓ ସ୍ଥାନ ବଳରେ ନୂତନ ମୂଲ୍ୟ ନେଇ ଥାଇ ପାରେ । କିନ୍ତୁ ସେ ବି ସାହାଯ୍ୟ କରିବେ କିପରି ?

ସରକାର ବହି କିଣୁଛନ୍ତି । ସେ ଯେଉଁ ଲେଖକକୁ ପସନ୍ଦ ନ କରିବେ, ସେ ବିଚାରା ଗୋଠଚଡ଼ା ଗୋଧ ପରି ଖାଲି ହୁଁ—ହାଁ ହୋଇ ବୁଲୁଥିବ । ଯେଉଁ ବହିକୁ ଫେଲ କରିଦେବେ ସେ ବହି ଯାଇ ମୂଷା, ଝିଟିପିଟି ଓ ଉଇ ସାଙ୍ଗରେ ସାଙ୍ଗ ହେବ—ପେଡ଼ି ପୋରୁହାଁ ଲୁଗା ପରି ।

ରଫୁ ମାଷ୍ଟର ତାଙ୍କୁ ଖୋଜ ପାରେ । କିନ୍ତୁ ତାକୁ କେହି ପସନ୍ଦ କରିବେ ନାହିଁ । ତାକୁ ପିନ୍ଧି ଗଲେ ଭୋଜିରେ ଲୋକେ ବିରକ୍ତ ହେବେ । ଅଫିସରେ ଅମଲାମାନେ ନାକ ଟେକିବେ । ସ୍ତ୍ରୀମାନେ ମଧ୍ୟ ନାପସନ୍ଦ କରିବେ ।

ପୋଷାକ କପା, ସିଲକ୍ ଓ ସିନ୍ଥେଟିକ ମାଲରୁ ତିଆରି ହୁଏ । ତାହାର ଢାଞ୍ଚାଟି ହେଲା ସବୁ କଥା । ସେମିତି ଲେଖାଟି ମନର ଭାବ ଓ ବ୍ୟାକରଣ ସୂତ୍ରକୁ ଧରି ତିଆରି ହୁଏ । ତେଣୁ ପ୍ରଶ୍ନ ଉଠେ—ସାହିତ୍ୟରେ ଏଇ ଢାଞ୍ଚା ବା ଶୈଳୀର ସ୍ଥାନ କ’ଣ ?

ଏହାର ଉତ୍ତର ନିର୍ବିବାଦ ହୋଇ ପାରୁନାହିଁ । କାରଣ ପଢ଼ା-ପଢ଼ି ଅଭାବରେ ମସ୍ତିଷ୍କ ଏପରି ଭାବରେ ଶକ୍ତିହୀନ ହୋଇ ପଡ଼ିଲାଣି ଯେ ସାହିତ୍ୟ କଥା କହିଲେ ଆମେ ସମସ୍ତେ ବୁଝି ଗଲୁଣି ଯେ ଶ୍ରେଷ୍ଠ ସାହିତ୍ୟ ହେଲା ଖବର କାଗଜ ।

ଆଉ ଖବର କାଗଜର ବିଶେଷ ଜ୍ଞାନର ଆଧାର ରହିଲା—ଦୁର୍ଘଟଣା । ଅସ୍ୱାଭାବିକ ଘଟଣା ଓ ମନ ଗଢ଼ା କଥା । ତେଣୁ ନୂଆ ଭାବ-ଧାରା କହିଲେ କ’ଣ ବୁଝାଇବ ସେତକ ମଧ୍ୟ ବୁଝା ପଡ଼ୁ ନାହିଁ ।

ବହି ନ କିଣିଲେ ବହି ପଢ଼ିବା ପାଇଁ ସମସ୍ତଙ୍କୁ ସୁଯୋଗ ମିଳେ ନାହିଁ । କିନ୍ତୁ ବହି ଖଣ୍ଡେ କିଣିବା ମାନେ ନୁହେଁ ଯେ ଅବଶ୍ୟ ପଢ଼ିବାକୁ ହେବ ।

ବସ୍ତୁଟା ଯଦି ହାତବନ୍ଧା ଘଡ଼ି ହୋଇଥାନ୍ତା ଅର୍ଥାତ୍ ପ୍ରଯୋଜନୀୟ ବା ଅତ୍ୟାବଶ୍ୟକ ପଦାର୍ଥ ହୋଇଥାନ୍ତା ତାହାହେଲେ ତାହାର ଦାମ୍ ବଢ଼ନ୍ତା ।

କିନ୍ତୁ ବସ୍ତୁକୁ ପ୍ରଯୋଜନୀୟ ଦ୍ରବ୍ୟ ତାଲିକାକୁ ନେବାର ଚେଷ୍ଟା ହେଉଛି ସଂସ୍କୃତି ।

ଏଇ ସଂସ୍କୃତି ସଂସ୍କାର ସାଙ୍ଗରେ ଲାଗିଛି । ସଂସ୍କୃତି କେବେ ହେଲେ ଅଗୁରୁ ବିଦ୍ୟା ବା ଅଘୋର ଦୀକ୍ଷା ନୁହେଁ ।

ଅନୁମାନରେ ସଂସ୍କୃତି ଆସି ବସା ବାନ୍ଧି ଯିବ ଆମ ଭିତରେ ।

ତେଣୁ ଆପଣମାନଙ୍କ ପରି ବିବେକୀ ଲୋକଙ୍କୁ ଉପଦେଶ ମାଗୁଛି —କ'ଣ କରିବା ଉଚିତ ?

ରାଜକିଶୋର ପଟ୍ଟନାୟକ
୩୦।୧୧।୮୪

## ପଢ଼ିବା ବ୍ୟକ୍ତିଙ୍କର ମତାମତ ପୁରସ୍କାର (ଟ ୧୧,୦୦୦=୦୦)

ପାଠକ ଓ ପୁସ୍ତକମାନଙ୍କ ମଧ୍ୟରେ ଅଧିକ ଯୋଗାଯୋଗ ପାଇଁ କେତେ ଖଣ୍ଡ ବହି ଉପରେ ପାଞ୍ଚ ଧାଡ଼ିରୁ ପାଞ୍ଚଶହ ଧାଡ଼ି ପର୍ଯ୍ୟନ୍ତ "ପଢ଼ିବା ବ୍ୟକ୍ତିଙ୍କର ମତାମତ" ଉପରେ ନଗଦ ପୁରସ୍କାର ମନିଅର୍ଡ଼ରରେ ପ୍ରତ୍ୟେକ ସପ୍ତାହରେ ପଠା ଯାଉଛି । ଏହି ବହିଗୁଡ଼ିକ ହେଲା

(୧) ଜୀବନର ସନ୍ଧ୍ୟା (୧୯୮୪) (୨) ଗ୍ରସକେଲ (୧୯୮୩)
(୩) ଅଢ଼ୁଆ ସୂତା (୧୯୮୩) (୪) ଅଦିନ ଛତୁ (୧୯୮୪)
(୫) କାହ୍ନୁଚରଣଙ୍କର ମେଲାଣି ମାଗୁଣି (୧୯୮୪)
(୬) ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକଙ୍କର ଅଲଗା ଚିଠା

ଏହି ଛଅ ଖଣ୍ଡ ବହିରେ ପ୍ରତ୍ୟେକ ବହି ପାଇଁ ହଜାରେ ଟଙ୍କା ହିସାବରେ ଛଅ ହଜାର ଟଙ୍କା ଦିଆଯାଉଛି । ରଥଯାତ୍ରା ୩୦।୬।୮୪ରୁ ଆରମ୍ଭ ହୋଇ ୧୯୮୫ ରଥଯାତ୍ରା ଯାଏ ଚାଲିବ । ଟଙ୍କା ଶେଷ ନ ହେଲେ ସମୟ ବଢ଼ାଇ ଦିଆଯାଇପାରେ । ଭଲ ଲେଖା ଆସିଲେ ପୁରସ୍କାର ସଂଖ୍ୟା ମଧ୍ୟ ବଢ଼ା ଯିବ ।

ପ୍ରତ୍ୟେକ ବହି ପାଇଁ ହଜାରେ ଟଙ୍କାରୁ ସାତଶହ ଟଙ୍କା ହେଲା ମଧ୍ୟବର୍ତ୍ତୀ ବା ଇଣ୍ଟରିମ୍ ପୁରସ୍କାର । ପଇଁତିରିଶଟି ପୁରସ୍କାର ପ୍ରତ୍ୟେକ କୋଡ଼ିଏ ଟଙ୍କା । ଅବଶିଷ୍ଟ ତିନିଶହ ଟଙ୍କାରେ ଏକ ବା ଏକାଧିକ ସର୍ବୋତ୍କୃଷ୍ଟ ଚୂଡ଼ାନ୍ତ ବା ଫାଇନାଲ ପୁରସ୍କାର ।

ଜଣେ ପ୍ରତ୍ୟେକ ବହିରେ କୋଡ଼ିଏ ଟଙ୍କା ଓ ତିନିଶହ ଟଙ୍କା ପାଇ ପାରିବେ ।

* * *

ଏହାଛଡ଼ା ନଅ ଖଣ୍ଡ ଧର୍ମ ସମ୍ବନ୍ଧୀୟ ପୁସ୍ତକରେ ଉପରୋକ୍ତ ପ୍ରକାରରେ ପ୍ରତ୍ୟେକ ବହି ପାଇଁ ଚଉଦ ଟଙ୍କିଆ ପୁରସ୍କାର ପଇଁତିରିଶିଟି ରହିଛି । ପ୍ରତ୍ୟେକ ବହି ପାଇଁ ପୁରସ୍କାର ପାଞ୍ଚଶହ ପଚାଶ ଟଙ୍କା । ପ୍ରତ୍ୟେକ ବହି ଜେ. କୃଷ୍ଣମୂର୍ତ୍ତିଙ୍କର ଲେଖାର ଓଡ଼ିଆ ଅନୁବାଦ । ବହି ତାଲିକା ମଗାନ୍ତୁ । ମୋଟ ପୁରସ୍କାର ପାଞ୍ଚ ହଜାର ଟଙ୍କା ।

୨୦୮ ପୃଷ୍ଠା ଦେଖନ୍ତୁ
୩୦।୧୧।୮୪

ରାଜକିଶୋର ପଟ୍ଟନାୟକ
ତେଲେଙ୍ଗା ବଜାର, କଟକ-୯

ଶ୍ରୀ ଜେ. କୃଷ୍ଣମୂର୍ତ୍ତିଙ୍କର ନଅଗୋଟି ଅନୁବାଦିତ ପୁସ୍ତକ :—

(୧) ଆଗାମୀ ଜୀବନ ଡମାଇ ପୃ୩୫୨ସ୍ଥା ମୂଲ୍ୟ : ଅବନ୍ଧା ଟ୧୨-୦୦
(Life Ahead) ଛପା ୧୯୮୦ ବନ୍ଧାଇ ଟ୧୫-୦୦

(୨) ଧ୍ୟାନ ୧୯୬୯ କ୍ରାଉନ ପୃ ୮୫
(Meditations 1969) ଛପା ୧୯୮୦
ମନଗହ୍ୱରର ଉନ୍‌ମୋଚନ
(Inward Flowering)
ମନର ଏକ ସଂଳାପ (ଏକତ୍ର ତିନଖଣ୍ଡ) ଅବନ୍ଧା—ଟ୨-୨୫
(A Dialogue with oneself) ବନ୍ଧାଇ ଟ୩-୨୫

(୩) ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ ଡମାଇ ୧୬୩ପୃ:ଅବନ୍ଧା—୫-୦୦
ଛପା ୧୯୮୧ ବନ୍ଧାଇ—ଟ୬-୦୦
(Education and the Significance of life)

(୪) ପରିବର୍ତ୍ତନ ଏକାନ୍ତ ଜରୁରୀ
ଡମାଇ ପୃ୨୫୦ସ୍ଥା ଛପା ୧୯୮୧ ଅବନ୍ଧା—ଟ୧୧-୦୦
(The Urgency of Change) ବନ୍ଧାଇ—ଟ୧୩-୦୦

(୫) ପରିଚିତରୁ ମୁକ୍ତି ଡମାଇ ପୃ ୧୭୨ ଅବନ୍ଧା—ଟ୧୦-୦୦
ଛପା ୧୯୮୧ ବନ୍ଧାଇ—ଟ୧୨-୦୦
(Freedom from the Known)

(୬) ଧ୍ୟାନ ଡମାଇ ପୃ ୭୪ ଅବନ୍ଧା—ଟ୪-୦୦
(Meditations) ଛପା ୧୯୮୨ ବନ୍ଧାଇ—ଟ୬-୦୦

(୭) ଏଇ ଯେ ସଂସ୍କୃତି ଡମାଇ ପୃ ୪୦୮
(This Matter of Culture) ଛପା ୧୯୮୩ ବନ୍ଧାଇ—ଟ୨୦-୦୦

(୮) ଏକ ହିଁ ବିପ୍ଳବ ଡମାଇ ପୃ: ୨୯୮ ବନ୍ଧାଇ—ଟ୨୦-୦୦
(The Only Revolution) ଛପା ୧୯୮୪

(୯) କୃଷ୍ଣମୂର୍ତ୍ତି ଦିନଲିପି ଅନୁମାନିକ ମୂଲ୍ୟ—ଟ୧୨-୦୦
(Krishnomurti Journal) ଛପାରେ